# ହଜିଗଲା ରାଜାଙ୍କ ମଜା ମଜା କଥା



ବିଷ୍ଣୁଚରଣ ମହାନ୍ତି

# ହଜିଗଲା ରାଜାଙ୍କ ମଜାମଜା କଥା

*ଇତିହାସର ସ୍ମୃତିଚାରଣ*

*ଲେଖକ :*
**ବିଷ୍ଣୁଚରଣ ମହାନ୍ତି (ସଂକଳକ)**
୪୫୮, ସହିଦ ନଗର, ଭୁବନେଶ୍ୱର
ଫୋନ୍ : ୦୬୭୪-୨୫୪୭୪୪୮

*ପ୍ରକାଶକ :*
**ଡଃ ରାଧାନାଥ ବେହେରା**
ପୂର୍ବତନ ଅଧ୍ୟକ୍ଷ, ଉପଦେଷ୍ଟା,
ନବଜାଗରଣ ସାହିତ୍ୟ ସଂସଦ
ନବରଙ୍ଗପୁର-୭୬୪୦୫୯
କେ.ବି.କେ. ଅଞ୍ଚଳ

ପ୍ରଥମ ସଂସ୍କରଣ : କାର୍ତ୍ତିକପୂର୍ଣ୍ଣିମା -୨୦୧୩

*ମୁଦ୍ରଣ :*
**ଜଗନ୍ନାଥ ଗ୍ରାଫିକ୍ସ**
୩୯୩, ସହିଦନଗର, ଭୁବନେଶ୍ୱର
ଫୋନ୍-୯୪୩୭୧୧୯୯୧୧

ମୂଲ୍ୟ - ଟ. ୯୫/-

**HAJIGALA RAJANKA**
**MAJA MAJA KATHA**
*Reminiscenes of Princely Days*

*Writer :*
**Bishnu Charan Mohanty**
458, Sahid Nagar, BBSR,
Ph : 0674-2547448

*Publisher :*
**Dr. Radhanath Behera**
Retd. Principal, Advisor
Naba Jagarana Sahitya Sansad
Navarangapur-764059
K.B.K. Area

*Printing :*
**Jagannath Graphics**
393, Sahid Nagar, Bhubaneswar
Ph. : 9437119911

Price : ₹ 95.00

# ଉତ୍ସର୍ଗ

ଜଣେ ବୁଦ୍ଧିଜୀବୀର ପରିଣତ ବୟସରେ ମାନସିକ ଓ ବୌଦ୍ଧିକ ସୁସ୍ଥତା ନିମିତ୍ତ ଦୈନିକ କିଛି ଲେଖା ପଢ଼ା କରିବାକୁ ପରାମର୍ଶ ସହିତ ଯେ ସମୟ ବ୍ୟବଧାନରେ ଏହାର ଅଗ୍ରଗତି ଜାଣିବାକୁ ଓ ସମୁଚିତ ଦିଗ୍‌ଦର୍ଶନ ଦେବାକୁ ସର୍ବଦା ତତ୍‌ପର ଥିଲେ ସେହି ଅନୁକୋପମ କଥାକାର ସେବାନିବୃତ୍ତ ମୁଖ୍ୟଯନ୍ତ୍ରୀ



ଇଂ. ନିମାଇଁ ଚରଣ ପାଣି

(୧୯୨୫-୨୦୧୨)

ଙ୍କ ଅଶ୍ଳୀଳ ସ୍ମୃତିରେ....

ବିଷ୍ଣୁଭାଇ

# ନିଜକଥା

ଏ ଦେଶରୁ ରାଜା ମହାରାଜା, ନବାବ ଓ ନିଜାମ ବିଦା ହୋଇଯିବା ୬୦ ବର୍ଷରୁ ଅଧିକ ହେଲାଣି, ସେମାନଙ୍କର କୃତି, କୀର୍ତ୍ତି ଓ ଅପକୀର୍ତ୍ତି ପରବର୍ତ୍ତୀ ପିଢ଼ିର ଲୋକେ ଶୁଣୁଥିଲେ। ଆଜି ଆଉ ସେମାନଙ୍କର ଶାସନର ସୁଗୁଣ-ଦୁର୍ଗୁଣ, ଅନ୍ୟାୟ, ଅତ୍ୟାଚାର, ଅନୀତି ଓ ଅଶିକ୍ଷା ଫଳରେ ମୂର୍ଖତା କଥା ଶୁଣା ଯାଉନାହିଁ।

ସେମାନଙ୍କ ମଧ୍ୟରୁ କେତେ ଜଣଙ୍କର କୀର୍ତ୍ତି ଓ ଦୃଷ୍କର୍ମ କ୍ଷମତା ହସ୍ତାନ୍ତର ସମୟରେ ଓ ପରେ କେତେକଙ୍କର ନିନ୍ଦନୀୟ ଆଚରଣ ଏହି ଜୀବନୀ ମାନଙ୍କରୁ ମିଳିବ। ଏତଦ ବ୍ୟତୀତ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଦ୍ୱାରା ୨୦୦୬ ମସିହାରେ ଆମ୍ଭ ଲିଖିତ ସ୍ମୃତିବାସୀ ପୁସ୍ତକରେ ପଶ୍ଚିମ ଓଡ଼ିଶାର ବାମଣ୍ଡା, ସୋନପୁର, ପାଟଣା ଓ କଳାହାଣ୍ଡି ରାଜା ମହାରାଜାଙ୍କର ଚରିତ ବିଶଦ ବର୍ଣ୍ଣିତ। ରୁଲିଂଚିଫ୍ ଓ ରାଜ୍ୟର ରାଜା ନଥାଇ ବ୍ରିଟିଶ ସରକାରର ସମ୍ମାନସୂଚକ ରାଜା ମହାରାଜା ଉପାଧି ପାଇଥିବା ଓଡ଼ିଶାର ବଡ଼ ବଡ଼ ଜମିଦାର ମାନଙ୍କୁ ଏଥିରୁ ବାଦ ଦିଆଯାଇଛି। ଏଇ ପିଢ଼ିର ଯୁବ ପାଠକଙ୍କ କୌତୁହଳ ଓ ମନୋରଞ୍ଜନ ପାଇଁ ଏହା ଉଦ୍ଦିଷ୍ଟ ।

ବିଶିଷ୍ଟ ବ୍ରିଟିଶ ଚିନ୍ତକ କାରଲାଇଲ (ଖ୍ରୀ ୧୭୯୫-୧୮୮୧) କହିଥିଲେ ଇତିହାସ ଅସଂଖ୍ୟ ଜୀବନ ଚରିତର ସାରାଂଶ ମାତ୍ର। ଏହି ଜୀବନୀ ଦେଶୀୟ ରାଜାମାନଙ୍କର ସମକାଳୀନ ଇତିହାସର ଏକ ସୂଚନା।

**ସଂକଳକ**

# ସୂଚୀପତ୍ର

# ଓଡ଼ିଶାରେ ଗଡ଼ଜାତର ସୃଷ୍ଟି

ବ୍ରିଟିଶ ଅମଳରେ ଓଡ଼ିଶାରେ ୨୬ ଗୋଟି ଦେଶୀୟ ରାଜ୍ୟରେ ରାଜାମାନଙ୍କ ଶାସନ ଥିଲା । ଏହି ଅଞ୍ଚଳକୁ ଗଡ଼ଜାତ ବୋଲି କୁହାଯାଉଥିଲା । ଇଂରେଜ ଶାସିତ ଅଞ୍ଚଳ ତୁଳନାରେ ଏସବୁ ଅନୁନ୍ନତ ଥିଲା । ଉତ୍କଳର ହିନ୍ଦୁ ସ୍ୱାଧିନତା ଯୁଗରେ ଏହି ଗଡ଼ଜାତଗୁଡ଼ିକ ଉତ୍କଳ ସମ୍ରାଟଙ୍କର ଗୋଟିଏ ଗୋଟିଏ ସାମନ୍ତ ରାଜ୍ୟ ଥିଲେ । ସେମାନେ ସମ୍ରାଟଙ୍କୁ ଯୁଦ୍ଧ ବିଗ୍ରହ ସମୟରେ ଆବଶ୍ୟକ ସୈନ୍ୟସାମନ୍ତ ଯୋଗାଉଥିଲେ । ସମ୍ରାଟଙ୍କର ଦରବାରରେ ସେମାନେ ବହୁବିଧ ସମ୍ମାନସୂଚକ କାର୍ଯ୍ୟ କରୁଥିଲେ । ସୁନିଆଁ ଦିନ ଏମାନେ ନିଜର ଆନୁଗତ୍ୟ ଜଣାଇବାକୁ ସମ୍ରାଟଙ୍କୁ କିଛି ଭେଟି ଦେଉଥିଲେ । ଏମାନଙ୍କର ସଂଖ୍ୟା ଭିନ୍ନ ଭିନ୍ନ ସମୟରେ ଅଲଗା ଥିଲା । ହିନ୍ଦୁ ରାଜତ୍ୱ ଶେଷରେ ପଠାଣ, ମୋଗଲ, ମରହଟ୍ଟାମାନେ ଓଡ଼ିଶାର ସର୍ବେ ସର୍ବା ହେଲେ ହେଁ ଗଡ଼ଜାତ ରାଜାମାନଙ୍କ ସହିତ ଏମାନଙ୍କର ସମ୍ପର୍କରେ ବିଶେଷ ପରିବର୍ତ୍ତନ ଘଟି ନଥିଲା । ବେଳେବେଳେ ଏହି ରାଜାମାନେ ସାର୍ବଭୌମ ଶକ୍ତି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରୁଥିଲେ ମାତ୍ର ଶେଷରେ ବଶତା ସ୍ୱୀକାର କରୁଥିଲେ । ଇଂରେଜମାନେ ୧୮୦୩ ମସିହାରେ ମରହଟ୍ଟାମାନଙ୍କ ଠାରୁ ଓଡ଼ିଶା ଜୟ କରିନେଲେ । ୧୦ଗୋଟି ଦେଶୀୟ ରାଜ୍ୟର ରାଜାମାନେ ପ୍ରଥମେ ଇଂରେଜମାନଙ୍କର ବଶତା ସ୍ୱୀକାର କରି ସନ୍ଧି ସନନ୍ଦ ଗ୍ରହଣ କଲେ । ମରହଟ୍ଟାମାନେ ରାଜ୍ୟ ରକ୍ଷା କରିବାକୁ ଅକ୍ଷମ ଥାଇ ପରାଜିତ ହୋଇ ଇତସ୍ତତଃ ପଳାୟନ କଲେ । ଏହି ଦେଶୀୟ ରାଜାମାନେ ପୂର୍ବରୁ ନିଜ ନିଜ ମଧ୍ୟରେ ଯୁଦ୍ଧ କରି ନିଜ ରାଜ୍ୟର ସୀମା ବଦଳାଇ ଦେଉଥିଲେ । ମାତ୍ର ଇଂରେଜମାନଙ୍କର ବଶତା ପରେ ଏମାନଙ୍କର ରାଜ୍ୟ ସୀମା ଅପରିବର୍ତ୍ତିତ ରହିଲା । ୧୮୪୦ ମସିହାରେ ବାଙ୍କି ରାଜା ନିଜ ପୁରୋହିତଙ୍କୁ ହତ୍ୟା କରିଥିବା ଅଭିଯୋଗରେ ବିତାଡ଼ିତ ହେଲେ ଓ ରାଜ୍ୟ ଇଂରେଜ ଶାସନ ଅନ୍ତର୍ଭୁକ୍ତ ହେଲା । ଖୋରଧା ରାଜା ବିଦ୍ରୋହ କଲେ । ନିଜ ରାଜ୍ୟ ହରାଇଲେ ଓ ଏହା ମଧ୍ୟ ଇଂରେଜ ଦଖଲକୁ ଆସିଲା । ଅନୁଗୁଳ ରାଜା କନ୍ଧ ବିଦ୍ରୋହୀମାନଙ୍କୁ ଇଂରେଜ ସରକାର ବିରୁଦ୍ଧରେ ସାହାଯ୍ୟ କରୁଥିବାରୁ ଓ କନ୍ଧମାନଙ୍କର ମେରିଆ ବଳି ପ୍ରଥା ବନ୍ଦ କରିବାକୁ ଅକ୍ଷମ ହେଲାରୁ ତାଙ୍କୁ ମଧ୍ୟ ରାଜ୍ୟରୁ ବେଦଖଲ

କରାଗଲା। ରାଜ୍ୟ ଖାସ ଇଂରେଜ ଶାସନ ଅଧିନକୁ ଆସିଲା। କନ୍ଧମାଳ ଅଞ୍ଚଳ ବୌଦ ରାଜାଙ୍କୁ ନାମମାତ୍ର ଆନୁଗତ୍ୟ ଦେଖାଉଥିଲେ। ବୌଦ ରାଜା ଇଂରେଜ ମାନଙ୍କର ବଶତା ସ୍ୱୀକାର କରି ଏହି ଆଇନ ଶୃଙ୍ଖଳା ଶୂନ୍ୟ ଅଞ୍ଚଳକୁ ସେମାନଙ୍କୁ ଦେଇଦେଲେ। ଏହା ମଧ୍ୟ ଖାସ ହେଲା। ଆଠମଲ୍ଲିକ ରାଜା ବୌଦ ରାଜାଙ୍କର ସାମନ୍ତ ରାଜା ଥିଲେ। କେନ୍ଦୁଝର ରାଜାଙ୍କର ସାମନ୍ତରାଜ୍ୟ ପାଲଲହଡ଼ା ଥିଲା। ସେମାନଙ୍କୁ ପରବର୍ତ୍ତୀ କାଳରେ ୧୮୭୪ ଖ୍ରୀଷ୍ଟାବ୍ଦରେ ଦେଶୀୟ ରାଜ୍ୟ ସନନ୍ଦ ଦେଇ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଦିଆଗଲା। ସେଠାର ଶାସକମାନଙ୍କୁ ପୁରୁଷାନୁକ୍ରମେ ରାଜା ଉପାଧି ଦେବାକୁ ଇଂରେଜ ସରକାର ମଧ୍ୟ ରାଜି ହେଲେ। ସରକାର ବଡ଼ ବଡ଼ ଜମିଦାର ବିଶିଷ୍ଟ ଲୋକଙ୍କୁ ମଧ୍ୟ ରାଜା ମହାରାଜା ଉପାଧି ଦେଉଥିଲେ। ଏମାନଙ୍କୁ ରାଜା ଓ ରୁଲିଙ୍ଗ ଚିଫ କୁହାଗଲା । ଏହିପରି ଭାବରେ ଓଡ଼ିଶାରେ ୧୭ ଗୋଟି କରଦ ରାଜ୍ୟ ରହିଲା। ସେମାନେ ହେଲେ ଆଠଗଡ଼, ବଡ଼ମ୍ବା, ଢେ଼ଙ୍କାନାଳ, ହିନ୍ଦୋଳ, ଖଣ୍ଡପଡ଼ା, ନରସିଂହପୁର, ନୟାଗଡ଼, ନୀଳଗିରି, ରଣପୁର, ତାଳଚେର, ତିଗିରିଆ, ବୌଦ, ଦଶପଲ୍ଲା, ଆଠମଲ୍ଲିକ, ପାଲଲହଡ଼ା, ମୟୂରଭଞ୍ଜ ଓ କେନ୍ଦୁଝର।

ମରହଟ୍ଟାମାନେ ଏହି ସବୁ ଦେଶୀୟ ରାଜ୍ୟକୁ ଇଂରେଜମାନଙ୍କୁ ଦେଇଦେଲେ ବୋଲି ଧରାଯାଇ ବଶତାର ନିଦର୍ଶନ ସ୍ୱରୂପ ଏହି ରାଜାମାନେ ଇଂରେଜ ସରକାରଙ୍କୁ ଭିନ୍ନ ଭିନ୍ନ ପରିମାଣର ପେସକିସ୍ ଦେଉଥିଲେ। ୧୮୦୩ ମସିହାରୁ ସେମାନଙ୍କର ଇଂରେଜ ମାନଙ୍କ ସହିତ ସମ୍ପର୍କ ରହିଲା। ପରେ ଆଉ ୭ ଗୋଟି ଓଡ଼ିଆ ରାଜ୍ୟ ପାଟଣା, କଳାହାଣ୍ଡି, ବାମଣ୍ଡା, ସୋନପୁର, ଗାଙ୍ଗପୁର, ବଣେଇ, ରେଢ଼ାଖୋଲ ମଧ୍ୟପ୍ରଦେଶରୁ ଓଡ଼ିଶା ଶାସନକୁ ଆସିଲା। ଏମିତି ମୋଟରେ ୨୪ ଗୋଟି ଗଡ଼ଜାତ ରହିଲା। ଓଡ଼ିଶା ଡିଭିଜନର କମିଶନର ପ୍ରଥମେ ଏହି ଗଡ଼ଜାତ ରାଜ୍ୟମାନଙ୍କର ସୁପରିଟେଣ୍ଡେଣ୍ଟ କାର୍ଯ୍ୟ କରୁଥିଲେ। ଏହି କରଦରାଜମାନଙ୍କର ଗୁରୁତ୍ୱ ବଢ଼ିବାରୁ ପରବର୍ତ୍ତୀ କାଳରେ ବିହାର-ଓଡ଼ିଶା ଲାଟଙ୍କ ଅଧିନରେ ଜଣେ ପଲଟିକାଲ୍ ଏଜେଣ୍ଟଙ୍କ ପାଖରେ ଏହିମାନେ ସୁଶାସନ ପାଇଁ ଦାୟୀ ରହିଲେ। ୧୯୨୨ ମସିହାରୁ କମିଶନରଙ୍କ କ୍ଷମତା ଲୋପ ପାଇଲା। ଓଡ଼ିଶା ଓ ମଧ୍ୟପ୍ରଦେଶର କିଛି ରାଜ୍ୟ ପାଇଁ ସମ୍ବଲପୁରରେ ଜଣେ ପଲଟିକାଲ୍ ଏଜେଣ୍ଟ ରହିଲେ। ରାଜାମାନଙ୍କୁ ମଧ୍ୟ କରଦରାଜ୍ୟ ନ କହି ସାମନ୍ତ ରାଜ୍ୟ କୁହାଗଲା। ପ୍ରାଦେଶିକ ଶାସନ ସହିତ ଏମାନଙ୍କର ସମ୍ପର୍କ ରହିଲା ନାହିଁ। ଏହି ରାଜ୍ୟମାନେ ଭାରତ ସରକାରଙ୍କର ଖାସ ତତ୍ତ୍ୱାବଧାନରେ ରହିଲେ। ପୂର୍ବେ ରାଜାମାନଙ୍କ କ୍ଷମତାରେ ତାରତମ୍ୟ ଥିଲା। କେତେକ ରାଜା ଫାଶୀ ଦେବା ଅଧିକାର ପାଇଥିଲେ। କେତେକ ପ୍ରଥମ ଆଉ କେତେକ ଦ୍ୱିତୀୟ

ଶ୍ରେଣୀ ମାଜିଷ୍ଟ୍ରେଟ୍ କ୍ଷମତା ପ୍ରୟୋଗ କରୁଥିଲେ। ମାତ୍ର ନରସିଂହପୁରର ଜଣେ ରାଜା ମୃତ୍ୟୁଦଣ୍ଡରେ ଦଣ୍ଡିତ ଆସାମୀକୁ ଢିଙ୍କିରେ କୁଟି ନିର୍ଦ୍ଦୟ ଭାବରେ ହତ୍ୟା କରିଥିବାରୁ ଏହି କ୍ଷମତା କାଢ଼ି ନେଇ ଶାସନର ଗୁରୁତ୍ୱ ଦେଖି ଏମାନଙ୍କର 'କ' ଓ 'ଖ' ଶ୍ରେଣୀରେ ବିଭାଗ କରାଗଲା। ପରିଶେଷରେ ଏମାନଙ୍କୁ 'କ', 'ଖ' ଓ 'ଗ' ଏମିତି ତିନି ଶ୍ରେଣୀରେ ବିଭକ୍ତ କରାଯାଇଥିଲା। ଏହି ରାଜ୍ୟମାନଙ୍କର ୧୯୪୭ ମସିହାରେ ସ୍ୱାଧୀନ ଭାରତରେ ମିଶ୍ରଣ ହେଲା। ସେତେବେଳକୁ ସରେଇକଳା ଓ ଖରସୁଆଁକୁ ମିଶାଇ ମୋଟରେ ୨୬ଟି ଦେଶୀୟ ରାଜ୍ୟ ଥିଲା। ଏମାନଙ୍କ ମଧ୍ୟରୁ ୧୧ଗୋଟି 'କ' ଶ୍ରେଣୀ ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ, ପାଟଣା, ଗାଙ୍ଗପୁର, କଳାହାଣ୍ଡି, ବୌଦ୍ଧ, ବାମଣ୍ଡା, ନୟାଗଡ଼। ପାଞ୍ଚ ଗୋଟି 'ଗ' ଶ୍ରେଣୀ ହେଲା ତିଗିରିଆ, ସୋନପୁର, ତାଳଚେର, ବଡ଼ମ୍ବା, ନରସିଂହପୁର। ବାକି ସବୁ ରାଜ୍ୟଗୁଡ଼ିକ 'ଖ' ଶ୍ରେଣୀର ଥିଲେ । ସବୁଠାରୁ ବଡ଼ ରାଜ୍ୟ ମୟୂରଭଞ୍ଜର ଆୟତନ ପ୍ରାୟ ୪ ହଜାର ବର୍ଗ ମାଇଲ। ଲୋକସଂଖ୍ୟା ୧୦ ଲକ୍ଷ ଥିବା ସ୍ଥଳେ କ୍ଷୁଦ୍ରତମ ଦେଶୀୟ ରାଜ୍ୟ ତିଗିରିଆର ଆୟତନ ୪୬ ବର୍ଗ ମାଇଲ ଓ ଲୋକସଂଖ୍ୟା ମାତ୍ର ୨୦ ହଜାର ଥିଲା। ମୋଗଲବନ୍ଦୀ ପ୍ରଜାମାନଙ୍କ ତୁଳନାରେ ଗଡ଼ଜାତ ପ୍ରଜାମାନେ ଅସ୍ୱଚ୍ଛଳ ଥିଲେ । ଗୋଟିଏ ଢଗ ପ୍ରଚଳିତ ଥିଲା -

"ଖାଇବ ସହଳ
ପିନ୍ଧିବ ମହଳ
ଦାଣ୍ଡଘର ଖଣ୍ଡି ଅଛୁଆଁ କର
ଅଧେ ଆପଣା ଅଧେ ପର
ତେବେ ଗଡ଼ଜାତରେ କରିବ ଘର।"

ପ୍ରଜାର ଆର୍ଥିକ ସ୍ୱଚ୍ଛଳତା ରାଜକୋପ ଦୃଷ୍ଟି ଆକର୍ଷଣ କରୁଥିଲା। ଗଡ଼ଜାତ ପ୍ରଜା ଅନୁସନ୍ଧାନ କମିଟି ସେମାନଙ୍କର ରିପୋର୍ଟରେ ଦର୍ଶାଇଥିଲେ ଯେ, ଜଣେ ପ୍ରଜା ବର୍ଷକୁ ହାରାହାରି ଶହେ ଦିନରୁ ଅଧିକ ରାଜଦରବାର ବା ତାଙ୍କ କର୍ମଚାରୀମାନଙ୍କ ପାଇଁ ବେଠି ଖଟୁଥିଲା ଦିନରାତି ଯେତେବେଳେ ତାକୁ ଡକରା ପଡୁଥିଲା। ସେ ନିଜର ବୁଣାବୁଣି ଧାନକଟା ନିଜ ଜମିରେ ଛାଡ଼ି ରାଜାଘରେ କାମ କରିବାକୁ ଯାଉଥିଲା। ତାର ନିଜ କାମ ସେ ପର୍ଯ୍ୟନ୍ତ ଅପେକ୍ଷା କରୁଥିଲା ।



# 'ଦରବାର'ରେ ରାଜାମାନେ

କବିବର ରାଧାନାଥ ରାୟ (୧୮୪୮-୧୯୦୮) 'ଦରବାର' କାବ୍ୟ ୧୮୯୭ ମସିହାରେ ଲେଖିଥିଲେ। ତା'ର ଅଳ୍ପଦିନ ଆଗରୁ ଓଡ଼ିଶାର କମିଶନର କରଦରାଜ୍ୟ ମାନଙ୍କର ସୁପରିଟେଣ୍ଡେଣ୍ଟ ଭାବରେ ରାଜାମାନଙ୍କୁ ଖେତାବ ବାଣ୍ଟିଥିଲେ। ରାଜାମାନେ ନିଜ ପଦ ପଦବୀ ଗର୍ବରେ ଏଠାରେ ଉପସ୍ଥିତ ରହି ନିଜ ବଡ଼ପଣ ଜାହିର କରିଥିଲେ। ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଶିକ୍ଷିତ ଓ ବୃଥାଗର୍ବୀ ଥିଲେ। ଏମାନଙ୍କୁ ଲକ୍ଷ୍ୟ କରି କବିବର ଲେଖିଥିଲେ :-

ଆହେ ମାନଦଣ୍ଡ ଭୂପାଳ ମଣ୍ଡଳି,
ଦେଇଛ କି କୁଳଧର୍ମେ ଜଳାଞ୍ଜଳି।
ବୃଥା କିମ୍ପା ହେଉଅଛ ହୀନମାନ
ସିଂହାସନ କର ସ୍ୱର୍ଗର ସୋପାନ ॥
ଜନ୍ମ ଫଳେ ଲଭି ଅଛ ଅପ୍ରମିତ
ଶକ୍ତି, ସାଧିବାକୁ ସଂସାରର ହିତ ॥
ଜନ୍ମ ଫଳେ ଲଭି ସମ୍ପଦ ଅମାପ,
ଭୋଗିନାହିଁ କେବେ ଅଭାବର ତାପ ॥
ଜମା ଅନୁରୂପ ବ୍ୟୟ ଲାଗି ଦାୟୀ ହେବ,
ଏହା ଦିନେ ମନେ କଲ ନାହିଁ ॥
ଏ ଯୋଗ ଜଗତେ ପାଆନ୍ତି କେତେ ଜଣ
ଏହା ପାଇଁ ତୁମ୍ଭେ ହେଲ ଅଭାଜନ ॥
ବୁଡ଼ିଣ ରହିଲ ଆମୋଦେ ଆବାଲ୍ୟ
ବିଦ୍ୟାକୁ ମଣିଲ ଶିବ ନିରମାଲ୍ୟ ॥

(ଶିବ ନିର୍ମାଲ୍ୟ ଅବ୍ୟବହୃତ)

ରକ୍ଷଣ, ପାଳନ, ଭୋଗ ଏ ଧରାର
ତିନି କାର୍ଯ୍ୟେ କଲ ତୃତୀୟକୁ ସାର,
ରାଜଧର୍ମ ହେଲା ପ୍ରଜା ଧନ ବୁହା
ମନ୍ତ୍ରୀ ହେଲେ ଖଳ, ଖଣ୍ଡ, କାନ-କୁହା।
ପର ସେବା ଲାଗି ତୁମ୍ଭର ଜନମ
ଆତ୍ମସେବା କଲ କୌଳିକ ଧରମ ॥
କାଷ୍ଠ କଣ୍ଠିରବ (କାଠ ତିଆରି ସିଂହ) ମାତ୍ର ଜଣେ ଜଣେ।
ପ୍ରଧାନ ମନୁଷ୍ୟ ଅମନୁଷ୍ୟ ପଣେ ॥

xxx

ପୁଣି ଅନ୍ୟତ୍ର

ବେଳ ଥାଉ ଥାଉ ଅରଜି ଧରମ
ଜନ୍ମ ଅନୁରୂପେ ଦେଖାଅ କରମ।
ଜନ୍ମ ଫଳେ ଭବେ ବଡ଼ପଣ ପାଇ
ଧର୍ମଫଳେ ତାକୁ କର ଚିରସ୍ଥାୟୀ।

xxx

ବଡ଼ପଣ ଭାଇ ଏକାସିନା ସେହି
ଛଡ଼ାଇ କେହି ଯା' ନ ପାରଇ ନେଇ।
ବଡ଼ପଣ ସିନା ସେହି ତାକୁ ଗଣି
ଯେଉଁ ବଡ଼ପଣ ଦ୍ୱିଲୋକ ସାଧନୀ ॥
ସେହି ବଡ଼ପଣେ ବଳାଅ ମତିକି
କାଳ ପଶି ନପାରିବ ଯା କତିକି।
ହେଳା କରନାହିଁ ପାଇ ଏ ସୁବିଧା
ଲଭିବାକୁ ସେହି ବଡ଼ ପଣ ନିଦା ।

xxx

ରାଜଧର୍ମେ ଆତ୍ମତତ୍ତ୍ୱେ ଦେଇ ମତି
ଉଚ୍ଚ ହୋଇ ଲଭ ଉଚ୍ଚତର ଗତି।





*ଶେଷ ରାଜା ଶ୍ରୀ ଶ୍ରୀ ସୁଦର୍ଶନ କ୍ଷତ୍ରୀୟ ବୀରବର ଚମ୍ପତି ସିଂହ ମହାପାତ୍ର*

# ତିଗିରିଆ ରାଜା

## ବୀରବର ବନମାଳୀ ଚମ୍ପତିସିଂହ ମହାପାତ୍ର

ଓଡ଼ିଶାର ଛବିଶଟି ଗଡ଼ଜାତ ମଧ୍ୟରେ କ୍ଷୁଦ୍ରତମ ଥିଲା ତିଗିରିଆ। ଏହାର କ୍ଷେତ୍ରଫଳ ୪୬ ବର୍ଗ ମାଇଲ। ଲୋକସଂଖ୍ୟା ୧୯୩୧ରେ ପଚିଶ ହଜାର। ରାଜା ଇଂରେଜ ସରକାରଙ୍କୁ ८८୨ ଟଙ୍କା ପେସ୍‌କିସ୍ ଦେଇଥିଲେ। ତାଙ୍କର ଆୟ ଷାଠିଏ ହଜାର। ରାଜ୍ୟର ଦୀର୍ଘ ଯେଉଁ ଆଡ଼କୁ ଗଲେ କେବଳ ୬/୭ ମାଇଲ୍। ରାଜ୍ୟ କ୍ଷୁଦ୍ର ହେଲେ ମଧ୍ୟ ଏଠାରେ ଅନେକ ଗୁଣୀଲୋକ ବାସ କରୁଥିଲେ। ପ୍ରସିଦ୍ଧ ଆୟୁର୍ବେଦ ଚିକିତ୍ସକ, ଜ୍ୟୋତିଷ ଓ ପଣ୍ଡିତ ମାନଙ୍କର ଏହା ବାସସ୍ଥଳୀ ଥିଲା। ପ୍ରସିଦ୍ଧ ସଂସ୍କୃତଜ୍ଞ କବି ଭୁବନେଶ୍ୱର ବଡ଼ ପଣ୍ଡାଙ୍କ ବାସସ୍ଥାନ ଏହିଠାରେ। ରାଜ୍ୟର ଗୋଟିଏ ସମୃଦ୍ଧିଶାଳୀ ଗ୍ରାମ ଥିଲା ନୂଆପାଟଣା। ଏହି ଗ୍ରାମରେ ଥଟାରି ଓ ତନ୍ତୀଙ୍କର ତିଆରି କଂସା ବାସନ, ମାଣିଆବନ୍ଧୀ ଓ ପାଟଲୁଗା ଓଡ଼ିଶାରେ ପ୍ରସିଦ୍ଧ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ (୧୯୯୮-୧୯୭୬) ବଡ଼ମ୍ୟାର ଲୋକ। ସେ ବାଙ୍କିରେ ପଢୁ ଥାଆନ୍ତି। ଛୁଟିଦିନରେ ବଡ଼ମ୍ବା ଓ ତିଗିରିଆ ଯାଆନ୍ତି। ତାଙ୍କ ବାପା ବଡ଼ମ୍ବା ଦେଓ୍ୱାନ ଥିଲେ। ବାପାଙ୍କ ମାମୁଁ ପୁଅ ଭାଇ ରାମକୃଷ୍ଣ ପଟ୍ଟନାୟକ ତିଗିରିଆର ଦିଆନ। ତାଙ୍କ ଘରକୁ ସେ ଯାଆନ୍ତି। ପିଲାଦିନେ କାଳୀବାବୁ ଭଲ ଗୀତ ବୋଲୁଥିଲେ। ଗଡ଼ରେ ରାଜାଙ୍କର ଜଣେ ସାଆନ୍ତ ଭାଇ ଥାଆନ୍ତି। ତାଙ୍କୁ ଲୋକେ ନଣ୍ଡା ସାମନ୍ତ ଡ଼ାକୁଥିଲେ। ସେ ଭଲ ବେହେଲା ବଜାଉଥିଲେ। କାଳୀ ଚରଣ ସେ ବେହେଲା ବଜାଇବା ବେଳେ ଗୀତ ବୋଲିବାରୁ ସାଆନ୍ତ ତାକୁ ଭାରି ସୁଖ ପାଉଥିଲେ। ସେତେବେଳେ ତିଗିରିଆ ଗଡ଼ ଦାଣ୍ଡ ଗୋଟାଏ ଗୋହରୀ ଭଳି ଦିଶୁଥାଏ। ଖାଲ ଢିପ ରାସ୍ତା। ବଡ଼ ଅପରିଷ୍କାର ମଧ୍ୟ। ଗଡ଼ଟି ସେମିତି ବଡ଼ ନୁହେଁ। ଗଡ଼ ମୁଣ୍ଡରେ ଜେଲ୍‌ଖାନା ଝାଟିମାଟି ବାଡ଼ ଘେରା ବଡ଼ ବାଡ଼ିଟିଏ। ଗୋଟିଏ କଡ଼ରେ କେଇ ବଖରା ନାଆ ଚାଳିଆ ଘର। କାଠ ରେଲିଂଦିଆ ସଦର ଫାଟକ ବାଟେ ଭିତରୁ ସବୁ ଦିଶୁଥାଏ। ଜେଲ୍‌ଖାନା ଖାଲି ପଲଟିକାଲ୍ ଏଜେଣ୍ଟ କହିବାରୁ ଥାଏ। ଅତି ଅଳ୍ପ ଲୋକଙ୍କୁ ଜେଲ୍ ଦଣ୍ଡ ମିଳେ। ଜାତି ମାରା ହେବ ବୋଲି ସେମାନେ ତାଙ୍କ ହାତରେ ରାନ୍ଧିବାଢ଼ି ଖାଆନ୍ତି। ଘରୁ ସେମାନଙ୍କର ଡାଲି ଚାଉଳ ଯାଏ। ଘରେ ପିଲାଙ୍କ ବାହା ବ୍ରତ ପଡ଼ିଲେ ଛୁଟି ନେଇ ଯା' ଆସ କରନ୍ତି। ଜେଲ୍‌ଖାନା ସେପଟେ ବୁଦୁବୁଦିଆ ଲଟା। ସେଇଟା ଗଡୁଆଙ୍କର ବାଡ଼ି ଟାଟି (ପାଇଖାନା)।

ତିଗିରିଆ ରାଜାଙ୍କର କିଏ ପାଖଲୋକ କାଳୀଚରଣଙ୍କ ଗୀତ ଶୁଣି ରାଜାଙ୍କୁ ଜଣାଇଲେ। ସେ ଦିଆନଙ୍କ ହାତରେ ତାଙ୍କ ପୁତୁରାକୁ ଡକାଇଲେ। ତାଙ୍କ ଦିଆନ ଦାଦା କାଳୀଚରଣଙ୍କୁ ରାଜଦର୍ଶନ ବିଧି ବତାଇ ଦେଲେ। ସେ ଆଗରୁ ବଡ଼ମ୍ବାର ରାଜାଙ୍କୁ ଦେଖିଥାନ୍ତି। ତାଙ୍କ ପାଖରେ ସେ ଘର ପରି ଚଳି ଆସିଥାଆନ୍ତି। ଦାଦା କହିଲେ 'ରାଜା ତୋତେ ଡ଼ାକିଛନ୍ତି।' ରାତିକି ପୁରାଣ ପଢ଼ାବେଳେ ବୈଠକକୁ ଯିବୁ। ଏ ରାଜା ବନମାଳୀ ଚମ୍ପତିସିଂହ ତମ ବଡ଼ମ୍ବା ରଜାଙ୍କ ପରି ନୁହଁନ୍ତି; ଭାରି ମରହଟିଆ। ଖୁବ ଖୁଣ୍ଟ ଖୁଣିଆ ଲୋକ। କୁଞ୍ଚ ଘୋଷାରି ଲୁଗା ପିନ୍ଧିଲେ ସେ ନାକ ଟେକନ୍ତି। କାଇଦା ଜଗି ବସ ଉଠ କରିବୁ। ମୋ ସାଙ୍ଗରେ ଯିବୁ। ରାଜାଙ୍କୁ ମୁଣ୍ଡ ନୁଆଇଁ ଜୁହାର କରିବୁ। କିଏ ପାଖଲୋକ ତାଙ୍କୁ କହିଛି ତୁ ଭଲ ଗୀତ ଗାଉ ବୋଲି। ସେ ତୋ ଗୀତ ଶୁଣିବାକୁ ଡ଼ାକିଛନ୍ତି। ଯାହା ମନ ହେବ ଗୋଟାଏ ଗୀତ ଗାଇଦେବୁ। ସେ ଟିକେ ଭକ୍ତି ଅଂଶିଆ ଲୋକ। ନିତିଦିନ ତାଙ୍କର ହବିଷ। ଅଗାଧୁଆରେ ଉଷୁନା ଦଉଡ଼ି, ଗାଧୁଆରେ ଉଆ ଦଉଡ଼ିରେ କୂଅରୁ ପାଣି କଢ଼ାଯାଏ। ଗାଧୋଇ ସାରି ଜଗନ୍ନାଥ ଦେଉଳରେ ଗରୁଡ଼ ପଛରେ ହାତଯୋଡ଼ି ୨/୪

ଘଣ୍ଟା ଯାଏ ଠିଆ ହୁଅନ୍ତି । ଛାନ୍ଦ ଜଣାଣରେ ତାଙ୍କର ଭାରି ସରାଗ । ଜଣାଥିଲେ, ସେଥିରୁ ଗୋଟାଏ ଗାଇ ଦେବୁ । ବୁଢ଼ା ଖୁସି ହୋଇଯିବେ । ସଞ୍ଜବେଳେ ରାଜଦର୍ଶନକୁ ଗଲାବେଳେ କାଳୀଚରଣ କୁଞ୍ଚ ଖୋସି, କାନ୍ଧରେ ଚାଦର ପକାଇ, ମୁଣ୍ଡକୁ ଆଣ୍ଠୁ ଯାଏ ନୁଆଁଇ ଜୁହାର କଲେ । ଛାମୁଙ୍କ କଜଳମଖା ଆଖି ଘଡ଼ିଏ ଯାଏ ନିଶ୍ଚଳ ହୋଇ ତାଙ୍କ ଉପରେ ରହିଲା । ହସ ହସ ମୁହଁରେ ଦିଆନଙ୍କୁ କହିଲେ, ପନ୍ନାହାକେ, ଏଇ ତମ ପୁତୁରା ? ବଡ଼ମ୍ଭା ନିମାଇଁ ପନ୍ନାହାକଙ୍କ ନାତି ପରା ? 'ମଣିମା' । ପୁଣି କହିଲେ 'ଚାଟଘର ପୁଅ ଚାଟ' । ଦେଖ ତାଙ୍କ ଭବ୍ୟ ପଣିଆଁ । ଲୁଗା ପିନ୍ଧା ଜୁହାରିବା ରୀତି । ରାଜଦୁଆରେ ଚଳି ଆସିଛନ୍ତି - ପୁରୁଷାନୁକ୍ରମେ । ପିଲାହେଲେ କ'ଣ ହେବ । କାଳୀଚରଣଙ୍କୁ କହିଲେ 'ଟିକି ପନ୍ନାହକେ' ବସ, ବସ । ସେ ମାତ୍ର ଠିଆ ହୋଇ ରହିବାରୁ ଜଣେ ଅଧେ ଛାମୁଆଁ କହିଲେ 'ବସ, ବାପା, ଛାମୁରୁ ତ ଶ୍ରୀମୁଖ ଆଜ୍ଞା ହେଲାଣି ଆଉ କଣ ? ବସ' । ଚକାମାଲି ପକାଇ ସେ ବସିଲେ । କଣେଇ କଣେଇ ସେ ରାଜାଙ୍କୁ ଦେଖୁଥାନ୍ତି । ହଳଦୀ ଲଗେଇଛନ୍ତି, କଜ୍ଜଳ ଘେନିଛନ୍ତି । ପିନ୍ଧିଛନ୍ତି କଳାମନ୍ଦାର ଧଡ଼ିଆ ନୂଆପାଟଣା କି ମାଣିଆଁ ବନ୍ଦୀ ଧୋତି, ବାହୁରେ ବାହୁଟି, ସୁନା ଖଡୁ ପିନ୍ଧିଛନ୍ତି । ପୁରାଣ ପାଠ ପାଇଁ ବ୍ୟାସାସନରେ ପୋଥି ପିଲିସଜ ପାଣିଝରି ଓ ଅଁଳାଇ ଫୁଲ ସଜଡ଼ା ହୋଇ ରଖା ହୋଇଛି । ଦରହସି ରାଜା ଆଜ୍ଞା ଦେଲେ; ଆଗ ଟିକି ପନ୍ନାହକଙ୍କ ଠାରୁ ଜଣାଣଟିଏ ଶୁଣିବା । ଆମେ ଶୁଣିଛୁ ସେ କୁଆଡ଼େ ଭଲ ଗାଇ ପାରନ୍ତି । 'ମଣିମା ମତେ କି ଗୀତ ଆସେ ଛାମୁଙ୍କୁ ଶୁଣାଇବି ।' ଏହି ଉତ୍ତର ଶୁଣି ରାଜା କହିଲେ, ଜଣାଣଟିଏ ତ ଶୁଣିବା । ବାଳୁତ କଣ୍ଠ ମଧୁର ହୋଇଥିବ । ଭଲମନ୍ଦ ବିଚାର ସେଠି କଅଣ ? ଭଜନ ଜଣାଣ ଜଗନ୍ନାଥଙ୍କ କଥା । ତୁଳସୀ ପତ୍ରରେ ସାନବଡ଼ କଣ ବିଚାରଥାଏ । ଯାହା ଗାଇବ ସେ ଅମୃତ । ଏହା କହି ମଥା ଉପରକୁ ହାତ ଟେକିଲେ । ଛାମୁଁଆ ଦି' ଚାରିଟା ଟାକି କରି ସତେ ଯେମିତି ବସିଥିଲେ । ଆଖି ପିଛୁଳାକେ ଉଛୁର ରହିଲା ନାହିଁ । ସଙ୍ଗେ ସଙ୍ଗେ ଆପଣା ହାତ ଉପରକୁ ଟେକି କହିଲେ, ଆହା ହା, ନାହିଁ ନ ଥିଲା ଭଗତ, ଗାଆ ଗାଆ, ବୋଲ ବାବୁ, କାନରେ 'କୃଷ୍ଣନାମ ଅମୃତ ବରଷୁ' । କାଳୀଚରଣ ଏମିତି ଅପୂର୍ବ ଅଭିନୟ କେବେ ଦେଖି ନଥିଲେ । ଗାଇଲେ ଗୀତ 'ରାଧାକାନ୍ତ ରାଧା ମୋହନ ଗୋବିନ୍ଦ, ଲବେ ଦୟା ନାହିଁ ତ' ଏଇଟି ସେ ବଡ଼ମ୍ଭା ଉଆସରେ ଗ୍ରାମଫୋନ୍ ରେକର୍ଡ଼ରେ ଶୁଣିଥିଲେ । ରାଜା ଆଖି ଖୋଲି ନାହାଁନ୍ତି 'ଆହା ହା' କରିବାରେ ଲାଗିଲେ । ଆଖି ପାଣିରେ କଜ୍ଜଳ ଧୋଇ ହୋଇଗଲା । ଗୀତ ସରିଲା, ହେଲେ ତାଙ୍କର ଆଖି ଫିଟି ନଥାଏ । ଜଣେ ଶ୍ରୀଅଙ୍ଗ - ଲଗା ପାଖଲୋକ ପୋଛାଟିଏ ଧରି ତାଙ୍କ କଡ଼ପଟେ ଠିଆ

ହୋଇଗଲା। ଆଖି ଫିଟିଲା ବେଳକୁ ନାଲ ଦିଶୁଥାଏ। ପାଖଲୋକ ଗାଲ ପୋଛି ଦେଲା, ପୋଛାରେ। ମଣିମା କହି ଆଜ୍ଞା କଲେ କି ଆଜି ଆମର କି ଯୋଗରେ ରାତି ପାହିଥିଲା କାନରେ ଅମୃତବର୍ଷା ହେଲା, ଯେଉଁ ଗୀତରେ କୃଷ୍ଣରସ ନାହିଁ ସେ କଣ ଗୀତ। ସେ ଗୁଡ଼ାକ ଫୀତ। ବାଳୁତ କଣ୍ଠରେ କୃଷ୍ଣରସ ରସାବଳୀ ପରି ଲାଗିଲା। ଦିଆନ ବାବୁ ଏ ଟିକି ପନ୍ନାହାକେ କେତେଦିନ ହେଲା ଆଇଲେଣି ତମ ଘରକୁ। ଏ ଯାଏ ଆମକୁ ଟିକେ ଖବର ଦେଲନାହିଁ। କେବେ ଯିବେ ? ଦିଆନ କହିଲେ ସେ ତ ଚର୍ଚ୍ଚିକା ସ୍କୁଲରେ ପଢୁଛି। ସେ ଛୁଟିରେ ଆସିଛି। ସ୍କୁଲ ଫିଟିବ, ସେ କାଲି ଯିବ। ରାଜା ଟିକେ ଦୁଃଖ କଲେ। କହିଲେ 'ତେବେ ଆମ ଜଗନ୍ନାଥ ଧୂପ ଉଠିଲେ ଉପର ଓଳିଆ ହୋଇଯିବେ। ହାତୀ ଯିବ ଛାଡ଼ି ଦେଇ ଆସିବ। ବାଟ କେତେ କି ? ତିନି ଚାରି କୋଶ ହେବ। ମଝିରେ ମହାନଦୀଟା ସିନା। ସକାଳେ ଦେବାର୍ଚ୍ଚନା ବେଳକୁ ଦେଉଳକୁ ଆସିବେ। ଜଗନ୍ନାଥଙ୍କ ଶ୍ରୀଛାମୁରେ ଭଜନଟିଏ ଶୁଣାଇ ଦେଇ ଯିବେ।' ଛାମୁଁଆମାନେ ହଁ ମାରିଲେ। ପୂର୍ବ ପରି ଅଣ୍ଟା ନୁଆଇଁ ଜୁହାର କରି କାଳୀଚରଣ ବିଦାୟ ନେଲେ। ତାଙ୍କ ଦାଦା ଭାରି ଖୁସ୍। ଘରକୁ ଯାଇ ସମସ୍ତଙ୍କ ଆଗରେ ଘରେ ପ୍ରଶଂସା ଶଗଡ଼ ଅଜାଡ଼ି ପକାଇଲେ। ଗଡ଼ ବୋଇଲେ ତ ଚାଖଣ୍ଡେ। ସେଥିରେ ପୁଣି ରାଜା ଘର ଖବର। ସକାଳୁ ସକାଳୁ ଘରେ ରାଷ୍ଟ୍ର ହୋଇଗଲା। ଗୀତ ଶୁଣାଇବା କଥା। ଦାଦା ଡ଼ାକି କରି ତାଙ୍କୁ କହିଲେ ଜଲଦି ଜଲଦି ଗାଧୋଇ ପଡ଼। ଦେଉଳକୁ ଯିବୁ। ଛାମୁରୁ ବିଜେ ହୋଇ ପଡ଼ିବେ। ତାଙ୍କ ଆଗରୁ ତୁ ଦେଉଳରେ ପହଞ୍ଚିଥିବୁ। ଗାଧୋଇ ଦାଦାଙ୍କ ସାଙ୍ଗରେ କାଳୀଚରଣ ଦେଉଳକୁ ବାହାରିଲେ। ତାଙ୍କୁ ଦେଉଳରେ ଛାଡ଼ି ଦିଆନ ନଅରକୁ ଗଲେ। ନଅର ପାଖରେ ଦେଉଳ। ଠାକୁରଙ୍କ ସେବା ପୂଜା ଓ ପଣ୍ଡିତମାନଙ୍କ ସହିତ ଶାସ୍ତ୍ରାଳାପ ପରେ ରାଜାଙ୍କ ସମୟ ସେଇଠି କଟେ। କାଳୀଚରଣ ସିଂହଦ୍ୱାର ପହଞ୍ଚିଲା ବେଳକୁ ନଅର ଭିତରକୁ କାହାଳି ଶୁଭିଲା। ରାଜା ଦେଉଳକୁ ବିଜେ କରୁଛନ୍ତି। ନଅର ବୋଇଲେ ମାଟି ଘର। ଭିତରେ କେଜାଣି ଅବା କୋଠା ଘର ଥିବ। ବାହାରଟା ମଉଡ଼ ମରା ଚାଳ । ଘୋଷରା ପାହାଚ। ପାହାଚରୁ ଟିକିଏ ଦୂରଛଡ଼ା ହୋଇ କେତେକ ଲୋକ ଧାଡ଼ି ହୋଇ ଠିଆ ହୋଇଥିଲେ। ସମସ୍ତେ ସାବଧାନ ହୋଇଗଲେ। ଏମାନେ ସମସ୍ତେ ଥିଲେ ଗୁହାରିଆ। କାହାର କ'ଣ ଓଜର ଆପତ୍ତି ରାଜାଙ୍କ ପାଖରେ ଜଣା କରିବାକୁ ଆସିଛନ୍ତି। ଯାଉ ଯାଉ ଏଇଟା ହେଲା କଚେରୀ ବା ବିଚାରାଳୟ। ଗୁହାରି ତୁଣ୍ଡେ ତୁଣ୍ଡେ। କୋଟ ଫିସ୍ ଲାଗୁନାହିଁ। କଚେରୀ ଯିବାକୁ ପଡୁନାହିଁ। ଫଏସଲା ତୁରନ୍ତ – ତୁଣ୍ଡେ ତୁଣ୍ଡେ। ଜୋରିମାନା ଚାରିଅଣା ଠାରୁ ପାଞ୍ଚ ସିଉକା ଯାଏ। କେହି ଜଣେ

କର୍ମଚାରୀ ଟିପି ନେଲେ। ଏହି ଅର୍ଥ ରାଜକୋଷକୁ ଯିବ ନାହିଁ। ଜଗନ୍ନାଥଙ୍କର ଅମୃତ ମଣୋହି ସେବାରେ ଖର୍ଚ୍ଚ ହେବ। ପ୍ରଜା ସନ୍ତୋଷ, ରାଜା ମଧ ସନ୍ତୋଷ। ଏବେ ଭାବିବାକୁ ପଡୁଛି କାହିଁ ସେ ରାଜା ପ୍ରଜା ବିଚାର ଓ ଫଏସଲା। କେତେକ ଗଡ଼ଜାତରେ କେବଳ ହି ଅର୍ଥଦଣ୍ଡ ଦ୍ୱାରା ରାଜକୋଷ ପୂର୍ଣ୍ଣ ହୁଏ ମାତ୍ର ଏହି କ୍ଷୁଦ୍ରତମ ରାଜ୍ୟରେ ପ୍ରଜାଙ୍କ ପ୍ରତି ଅର୍ଥ ପୀଡ଼ା ନାହିଁ। ଆଜିକାଲି ବିଶେଷତଃ ଇଂରେଜ ଅମଳରେ ସୃଷ୍ଟ ବିଚାର ପ୍ରଣାଳୀ ନାନା ଦୋଷରେ କଳୁଷିତ। କ୍ୱଚିତ୍ ନ୍ୟାୟ ବିଚାର ହୁଏ। କେବଳ ଅର୍ଥ ବ୍ୟୟ କାଳକ୍ଷେପଣ ଓ ନାନା ପ୍ରକାର ଦୁରାଚାର ଦୋଷରେ ପକ୍ଷଗଣ ନିଷ୍ପେସିତ। ଆଇନ୍ ଅଦାଲତ ଏକ ଲାଭଜନକ ବ୍ୟବସାୟ କ୍ଷେତ୍ର ପାଲଟିଛି, ଯାହାର ସଂସ୍କାର ଅତ୍ୟାବଶ୍ୟକ।

ଆଗୁଳା, ରାଜଦରବାରରେ ବଡ଼ ଦଣ୍ଡ ଥିଲା। ଆସାମୀ ମାନଙ୍କୁ କାହା ପ୍ରତି ପନ୍ଦର ଦିନ କାହା ପ୍ରତି ମାସେ ଆଗୁଳା ଦଣ୍ଡ। ଅର୍ଥ ରାଜଦର୍ଶନ ମନା। ଯେଉଁ ସମୟରୁ ଏ ଦଣ୍ଡ ହେଲା ସେଇ କାଳ ମଧରେ ଅପରାଧୀମାନେ କେହି ନଅରକୁ ଛାମୁ ଦର୍ଶନକୁ ଆସିପାରିବେ ନାହିଁ। ଏ ବିଚାର ପଛରେ ପ୍ରଜାମାନଙ୍କର ଥିଲା ରାଜାଙ୍କ ପ୍ରତି ପ୍ରଗାଢ଼ ଭକ୍ତି।

କାଳୀଚରଣ ଛାମୁଙ୍କୁ ଜୁହାର କରି ତାଙ୍କ ପଛେ ପଛେ ଛାମୁ ଗହଣରେ ଦେଉଳକୁ ଗଲେ। ଦେଉଳ ବେଢ଼ା କୂଅରୁ ଦଉଡ଼ିରେ ପାଣି କଢ଼ା ହୋଇ ଛାମୁଙ୍କ ପାଦ ଧୋ-ପୋଛ ହେଲା ଓ ସେ ମଧ ଗୋଡ଼ ହାତ ଧୋଇଲେ। ରାଜାଙ୍କ ଦେଖାଦେଖି ସେ ଗରୁଡ଼ ସ୍ତମ୍ଭ ପଛରେ ଆଖି ମୁଦିଲେ। ରାଜା ସ୍ତୋତ୍ର ପାଠ କଲେ ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ - ପୁରା ସ୍ତୋତ୍ରଟି ପଢ଼ିଲେ। ଯେତେବେଳେ ତାଙ୍କ ପାଳି ପଡ଼ିଲା। ଆଦେଶ ପାଇ ଗାଇଲେ ସେ କୃପାସିନ୍ଧୁ ବଦନ ଇତ୍ୟାଦି ଆର୍ତ୍ତତ୍ରାଣ ଚଉତିଶାରୁ। ଜଣାଣରୁ ଯେତିକି ମନେ ଥିଲା ଗାଇଲେ। ଜଗନ୍ନାଥଙ୍କୁ ମୁଣ୍ଡିଆ ମାରି ଘରକୁ ଫେରିବାର 'ମୁଣ୍ଡହଲା' ନିର୍ଦ୍ଦେଶ ପାଇ ନିସ୍ତାର ପାଇଲେ। ରାଜାଙ୍କ ଆଖି ଭରା ଲୁହ ମନେ ରହିଲା। କେଡ଼େ ସରଳ କେତେ ନିଷ୍ପାପର। ରାଗ ଅଭିମାନ ସେଇଠି ଟିକେ ନାହିଁ। ଘରକୁ ଫେରି ଦେଖିଲେ ଗୋଟିଏ ରଙ୍ଗ ପାଟ ଯୋଡ଼ ଓ ନଗଦ ଦଶଟି ଟଙ୍କା ଗୋଟିଏ ରୂପା ଥାଳିଆରେ ଆସିଛି। ନଅରରୁ ବିଦା-କି। ଦିନ ବାରଟା ଗୋଟାଏ ବେଳକୁ ଦିଅଁଙ୍କ କ୍ଷୀରି ଖେଚେଡ଼ି ୧୦/୧୫ ଜଣ ଖାଇଲା ପରି ଆସି ପହଞ୍ଚିଲା। ଉପରବେଳା ଅମାରି କଣି ହାତୀଆଳ ହାତୀରେ ଆସି ଦାଦାଙ୍କ ଦୁଆରରେ ହାଜର। କହନ୍ତି 'ଏକ ମହାନଦୀ ସହସ୍ର କୋଶ। ନଦୀକୁ ହାତୀରେ ବସି ତିନିକୋଶ ବାଟ ପାର ହୋଇ ବାଙ୍କିରେ ପହଞ୍ଚିବା ବେଳକୁ ଚର୍ଚ୍ଚିକା ସଞ୍ଜ ଆଳତୀ ବେଳର ଯୋଡ଼ି ମହୁରୀ ଶୁଭୁଥାଏ।

ଏହି ଘଟଣାର କେତେ ବର୍ଷ ପରର ଘଟଣା । ୧୯୨୦ ସାଲ ହେବ । ରାଜା ବନମାଳୀ ରାୟ ଅପୁତ୍ରିକ ଥିଲେ । ତାଙ୍କର ପୋଷ୍ୟପୁତ୍ର ସୁଦର୍ଶନ ରାୟ । ଭାରତ ଚନ୍ଦ୍ର ନାୟକ ଜଣେ ଡେପୁଟି କଲେକ୍ଟର । ପଲଟିକାଲ୍ ଏଜେଣ୍ଟଙ୍କ ବ୍ୟବସ୍ଥା ଅନୁସାରେ ରାଜପୁତ୍ରମାନେ ସମ୍ବଲପୁରର ଡେପୁଟି କମିଶନରଙ୍କ ତତ୍ତ୍ୱାବଧାନରେ ଶାସନ କାର୍ଯ୍ୟରେ ତାଲିମ ପାଉଥିଲେ । ତିଗିରିଆ ଯୁବରାଜ ଏହି ତାଲିମ ପାଇବାବେଳେ ଭାରତଚନ୍ଦ୍ରଙ୍କୁ ଜାଣିଥିଲେ । ସେତେବେଳେ ଭାରତଚନ୍ଦ୍ର ଢେଙ୍କାନାଳର ସହକାରୀ ମେନେଜର ଥିଲେ । ତିଗିରିଆ ଯୁବରାଜ ତାଙ୍କୁ ଚମ୍ପକ ଦ୍ୱାଦଶୀ (ରୁକ୍ମଣୀ ବିବାହ)ଦିନ ଗଡ଼କୁ ଆସିବାକୁ ନିମନ୍ତ୍ରଣ କଲେ । ଏହା ରାଜ୍ୟର ବଡ଼ ପର୍ବ । ମହାସମାରୋହରେ ପାଳିତ ହୁଏ । ଢେଙ୍କାନାଳର ସୀମା ଅଞ୍ଚଳକୁ ଗସ୍ତରେ ଯାଇ ଭାରତଚନ୍ଦ୍ର ଏକାଦଶୀ ଦିନ ସନ୍ଧ୍ୟାରେ ତିଗିରିଆ ଗଡ଼ରେ ପହଞ୍ଚିଲେ । ଖବର ପାଇ ତାଙ୍କର ଓ ଅନୁଚରମାନଙ୍କ ପାଇ ପ୍ରଚୁର ଆହାର୍ଯ୍ୟ ଦ୍ରବ୍ୟ ଆସିଲା । ଦ୍ୱାଦଶୀ ସକାଳେ ରାଜବାଟିକୁ ଗଲେ । ସିଂହଦ୍ୱାରରୁ ଯୁବରାଜ ସାଦର ଅଭିବାଦନ କରି ନେଲେ । ଗୋଟିଏ ଉଚ୍ଚବେଦୀରେ ବସି ବୃଦ୍ଧରାଜା ଫୁଲମାଳ ଗୁନ୍ଥୁ ଥାଆନ୍ତି । ଅନ୍ୟ କେତେକ ଲୋକ ମଧ । ଭାରତଚନ୍ଦ୍ରଙ୍କ ପରିଚୟ ପାଇ ଓ ସେ ବ୍ରାହ୍ମଣ ଜାଣି ରାଜା ପ୍ରଣାମ କଲେ । ଭାରତଚନ୍ଦ୍ର ରାଜ ଆଶୀର୍ବାଦ ଉଚ୍ଚାରଣ କଲେ । ଚମ୍ପକ ଦ୍ୱାଦଶୀ ପାଇଁ ଠାକୁରଙ୍କ ବିବାହ ଉପଲକ୍ଷେ ଫୁଲ ଗୁନ୍ଥିବାକୁ ରାଜା କହିଲେ । ସେ ଗୁନ୍ଥି ବସିଲେ । ପରେ ଯୁବରାଜ ତାଙ୍କୁ ଯାତ୍ରା ପଡ଼ିଆକୁ ଘେନିଗଲେ । ସେଠାରେ ପ୍ରଭୂତ ଜନ ସମାଗମ, ନାନା ପ୍ରକାର ବାଦ୍ୟ ସହିତ ନୃତ୍ୟ ଗୀତ ହେଉଥାଏ । ବିମାନରେ ପରିକ୍ରମା କରି ଠାକୁର ମଣ୍ଡପରେ ବିଜେ କରି ଥାଆନ୍ତି । ରାଜା ଆସିଲେ, ଲୋକମାନେ ତାଙ୍କୁ ପାଦତଳେ ପ୍ରଣାମ କଲେ । କେଉଁଠି ଘୋଡ଼ା ନାଚ, ସୁସଜ୍ଜିତ ବାଳକମାନଙ୍କର ବାଡ଼ିଖେଳ । ଦେଖୁ ଦେଖୁ ଅପରାହ୍ନ ହୋଇଗଲା । ତିଗିରିଆ ବାଣ ପାଇଁ ପ୍ରସିଦ୍ଧ, ରାତିରେ ବାଣ କାରିଗରୀ କୌଶଳ ପ୍ରଦର୍ଶନ ହେଲା ।

ଆଉ ଗୋଟିଏ ଘଟଣା । ତିଗିରିଆର ଦେଓ୍ୱାନ ରାଜ-ତହବିଲ ତୋସରଫ ଅପରାଧରେ ଅଭିଯୁକ୍ତ ହୋଇଥିଲେ । ରାଜା ତାଙ୍କ ପ୍ରତି ଦଣ୍ଡ ବିଧାନ ପରିବର୍ତ୍ତେ କ୍ଷମା କରିଥିଲେ । ଅସନ୍ତୁଷ୍ଟ ଯୁବରାଜ ଏକଥା ପଲଟିକାଲ ଏଜେଣ୍ଟକୁ ଜଣାଇଥିଲେ ଓ ସେ ଢେଙ୍କାନାଳ ଆସିଥିବାବେଳେ ଉଭୟଙ୍କୁ ଡକାଇଥିଲେ । ରାଜା ଓ ଯୁବରାଜ ଉଭୟ ଇଂରେଜୀ ଜାଣି ନଥିବାରୁ ଭାରତଚନ୍ଦ୍ରଙ୍କୁ ସେମାନଙ୍କର ଦୋଭାଷୀ କାର୍ଯ୍ୟ କରିବାକୁ ରାମସେ ସାହେବ ଲଗାଇଥିଲେ । ସାହେବ କୋଠରୀରୁ ଆସି ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାଙ୍କୁ କରମର୍ଦ୍ଦନ ନିମିତ୍ତ ହାତ ବଢ଼େଇଲେ । ରାଜା "ହାଁ ହାଁ ସାହେବ, ଆପଣ

ମ୍ଳେଚ୍ଛ, ଆପଣଙ୍କୁ ଛୁଇଁଲେ ଆମ୍ଭଙ୍କୁ ସ୍ନାନ ଓ ପଞ୍ଚଗବ୍ୟ ପାନ କରିବାକୁ ହେବ।" କହି ଚାରି ପାଞ୍ଚ ହାତ ପଛଘୁଞ୍ଚା ଦେଲେ। ସାହେବ ଅବାକ ହୋଇ ଭାରତଚନ୍ଦ୍ରଙ୍କୁ ଚାହିଁବାରୁ ସେ ବୁଝାଇ ଦେଲେ 'ରାଜା ଅତ୍ୟନ୍ତ ରକ୍ଷଣଶୀଳ, ପୂଜା ଆଦି କରନ୍ତି। ଆପଣ ଖ୍ରୀଷ୍ଟିୟାନ। ତେଣୁ ଆପଣଙ୍କୁ ଛୁଇଁବାକୁ ଚାହୁଁ ନାହାନ୍ତି।' ସାହେବ ମୃଦୁହାସ୍ୟ କରି ବସି ପଡ଼ିଲେ। ରାଜାଙ୍କୁ ସେ ରାଜ-ତହବିଲ ତୋସରଫ ପରି ଗୁରୁତର ଅପରାଧରେ ଅଭିଯୁକ୍ତ ଆସାମୀ ବିରୁଦ୍ଧରେ ମୋକଦ୍ଦମା କରିବାକୁ କହିଲେ। ରାଜା ଉତ୍ତରରେ କହିଲେ "ସାହେବ, ସରକାର ଆମ୍ଭଙ୍କୁ ଦେଇଥିବା ସନନ୍ଦ ଅନୁସାରେ ଇଂରେଜ ସରକାରଙ୍କ ସହିତ ଆମର ଯେତିକି ସମ୍ପର୍କ ସେତିକି ରକ୍ଷା ହେଉଛି କି ନା ଦେଖିବା ଆପଣଙ୍କ କର୍ତ୍ତବ୍ୟ। ରାଜ୍ୟର ଆଭ୍ୟନ୍ତରୀଣ ଶାସନର କୌଣସି ବିଷୟ ଆପଣଙ୍କର ଅଧିକାରଭୁକ୍ତ ନୁହେଁ। ଆମେ ଅପରାଧି ଦେଓ୍ୱାନଙ୍କୁ କ୍ଷମା କରିବାରେ ଆପଣ ହସ୍ତକ୍ଷେପ କରିପାରିବେନାହିଁ। ସାହେବ ହଁ, କହି କିଛି ସମୟ ପରେ ରାଜାଙ୍କୁ ବିଦାୟ ଦେଲେ। ଏମିତି ସ୍ୱାଭିମାନୀ ଥିଲେ ଜଣେ କ୍ଷୁଦ୍ର ରାଜ୍ୟର ରାଜା।





ଶେଷ ରାଜା ଶ୍ରୀ ଶ୍ରୀ ନାରାୟଣ ଚନ୍ଦ୍ରବୀରବର ମଙ୍ଗରାଜ ମହାପାତ୍ର

# ବଡ଼ମ୍ବା ରାଜା

## ଶ୍ରୀ ଶ୍ରୀ ବିଶ୍ୱମ୍ଭର ମଙ୍ଗରାଜ ବୀରବର ମହାପାତ୍ର

ବଡ଼ମ୍ବା ଆଉ ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା। କ୍ଷେତ୍ରଫଳ ୧୪୨ ବର୍ଗ ମାଇଲ ଲୋକସଂଖ୍ୟା ୪୭, ୦୦୦। ରାଜ୍ୟର ଆୟ ଥିଲା ପ୍ରାୟ ଦେଢ଼ ଲକ୍ଷ ଟଙ୍କା। ରାଜ୍ୟର ପେସକିସ୍ ଥିଲା ୧୩୯୮ ଟଙ୍କା। କବିଚନ୍ଦ୍ର କାଳୀଚରଣ ଏହି ରାଜ୍ୟର ଲୋକ ଥିଲେ। ତାଙ୍କ ପରିବାରରୁ ରାଜାଙ୍କ ଦେୱାନ ଥିଲେ। ରାଜା ଥାଆନ୍ତି ବିଶ୍ୱମ୍ଭର ମଙ୍ଗରାଜ। ବଡ଼ମ୍ବା ଗଡ଼ରେ ରାମ ନବମୀ ଗୋଟିଏ ବଡ଼ ପର୍ବ ଥିଲା। ନଅଦିନ ଧରି ଏହା ପାଳିତ ହେଉଥିଲା। ବଡ଼ମ୍ବା ରାଜବାଟି ସିଂହଦ୍ୱାରର ଟିକିଏ ଆଗକୁ ଘାଟବନ୍ଧା ବଡ଼ ପୋଖରୀଟିଏ। ପୋଖରୀର ପାଣି କାଚକେନ୍ଦୁ ପରି ନିର୍ମଳ। ସବୁବେଳେ ସେଠାରେ କେତୋଟି ନାଲି କଇଁ ଫୁଟିଥାଏ। ଧଳା କଳା ଚିତା ରଙ୍ଗର ପାତିହଂସ ପହଁରୁଥାନ୍ତି। ସଞ୍ଜ ହେଲେ ପଚାଶ କି ଷାଠିଏ ହଂସ ନଅର ମଧ୍ୟକୁ ମନ୍ଦ ମନ୍ଥର ଗତିର ଅପୂର୍ବ ସ୍ୱନ କରି ଯାଆନ୍ତି। ହଂସ ପାଳିବା ରାଜାଙ୍କ

ସଉକ ଥିଲା। ପୋଖରୀର ବନ୍ଧ ପଟେ ନଅର ଦୁଆର ଆଗରେ ବେଶ ଲମ୍ବା ଚଉଡ଼ା ହାତୀଶାଳ ପରି ଡେଙ୍ଗା ଛଣ ଘର। ତାହାରି ତଳେ ରାମ ନବମୀ ପାଇଁ ନଅଦିନ ଯାତ୍ରା ହୁଏ। ଅନଙ୍ଗ ଭଣତି ରାମାୟଣ ବୋଲା। ବ୍ୟାସାସନରେ ଥୁଆ ହୁଏ ପୋଥି। ପାଠ ଆଗରୁ ପୋଥି ପୂଜା ହୁଏ। ପାଖରେ ଜଳୁଥାଏ ପିତଳର ପଞ୍ଚମୁହାଁ ପିଲିସଜ ଦୀପ। ପାଠକ ପୁରାଣ ପଣ୍ଡା ଶୁଦ୍ଧପୂତ ଭାବରେ ବୋଲନ୍ତି ରାମାୟଣ ଗୀତି। ପଂଝାଏ ପାଳିଆ, ଗିନି ମର୍ଦ୍ଦଳ ବଜାଇ ଗୀତର ପାଳି ଧରନ୍ତି। ଏବେର ଯୁଗପରି ହାରମୋନିୟମ, ବଂଶୀ, ସୀତାର କିଛି ନଥାଏ ଅଥଚ ସାମାନ୍ୟ ବାଜା। ବାଜାରେ ଯାତ୍ରା ବେଶ୍ ଜମି ରହେ। ଯେଉଁମାନେ ରାମ ସୀତା ଆଦି କୌଣସି ଅଭିନୟ କରୁଥିଲେ - ସେମାନେ ଯାତ୍ରା ଦିନତକ ହବିଷ୍ୟ ଖାଉଥିଲେ। ନିଜେ ରାଜା ଅନୁକୂଳ ଦିନ ସଂକଳ୍ପ କରି ପୁରାଣ ପଣ୍ଡାଙ୍କୁ ଗୁଆ ଅରୁଆ ଚାଉଳ ଟେକି ଦିଅନ୍ତି। ବର୍ଷକର ଘଟଣା କାଳୀଚରଣ ଲେଖିଛନ୍ତି।

ରାମ ନବମୀର ପହିଲି ଦିନ ଉପର ଓଳି ବେଳ ରତ ରତ ହୋଇ ଆସୁଥାଏ। ରାଜା ପୁରୋହିତଙ୍କୁ ଗୁଆ ଟେକି ଦେଇ ସାରିଛନ୍ତି। ଠିକ୍ ଏହି ସମୟରେ ନଅରର ଦୁଆରୀ ଛାମୁରେ ଜଣାଇଲା 'ମଣିମା'ଜଣେ ବ୍ରାହ୍ମଣ ଦର୍ଶନକୁ ଆସି କେତେବେଳୁ ସିଂହଦ୍ୱାରରେ ଅପେକ୍ଷା କରିଛନ୍ତି। ରାଜା ତାଙ୍କ ପରିଚୟ ପଚାରିଲେ। ଦୁଆରୀ କହିଲା ଭାରି ଗରିବ ପରି ଦିଶୁଛନ୍ତି। ମତେ ଛାମୁରେ ଜଣାଇବାକୁ କହିଲେ। ଆଜ୍ଞା ହେଲା 'ଆଚ୍ଛା ହେଉ ଡ଼ାକି ଆଣ।' ବ୍ରାହ୍ମଣ ଉପସ୍ଥିତ ହେଲେ। କାନ୍ଧ ଉପରେ ଚଉତି କରି ପକାଇଥିବା ମଳି ମହଳ ଗାମୁଛାରେ ଲମ୍ବ ହୋଇ ସାଇତା ହୋଇଥିବା କିଛି ପଦାର୍ଥ ତଳେ ଥୋଇ ରାଜାଙ୍କୁ ଆଶୀର୍ବାଦ କଲେ। ତାଙ୍କ ଗାମୁଛାରେ ଭାରି ଯତ୍ନରେ ଚାରି ଛଅ ପରସ୍ତ ଗୁରିଆ ଯାଇଥିବା ଦରବଟି ବାହାରିଲା। ଦେଖାଗଲା ଦିବ୍ୟ ହଳଦୀ ରଙ୍ଗର ପ୍ରାୟ ହାତେ ଲମ୍ବ ହେବ ଏକ ପାଚିଲା ଆମ୍ବପତ୍ର। ସେଇଠି ଥିବା ଅନ୍ୟମାନେ ହସି ପକାଇଲେ ମାତ୍ର ରାଜା ଅତି ଆଦରରେ ତାକୁ ନେଲେ। ତାଙ୍କୁ ଘରର ଦୁଃଖ ସୁଖ ପଚାରିଲେ ଯେମିତି ଅନେକ ଦିନର ଚିହ୍ନା ଜଣା କେହି ଭାଇବନ୍ଧୁ କୁଟୁମ୍ବ। ରାଜା ପ୍ରଜାଙ୍କ ଭିତରେ ସେ ଯୁଗର କି ଆତ୍ମୀୟତା। ନିଜ ଘର କଥା ଅତି ସ୍ୱଚ୍ଛଳରେ ଅତି ଆପଣାର ଲୋକଙ୍କୁ କହିବା ପରି ବ୍ରାହ୍ମଣ ଗଡ଼ ଗଡ଼ ଗାଇ ଯାଉଥାଆନ୍ତି। ରାଜା ସମବେଦନା ପ୍ରକାଶ କରୁଥାଆନ୍ତି। ଧୀର ସ୍ଥିର ଭାବରେ ସବୁ କଥା ଶୁଣିଗଲେ। କହିଲେ ବସ, ସଞ୍ଜ ଦିଆହେଉଛି। ଆଜି ରାମ ନବମୀ ଆରମ୍ଭ। ଦେଖି କରି କାଲି ଗାଁକୁ ଯିବ। ଆଜ୍ଞା ବ୍ରାହ୍ମଣ କେମିତି ହେଣ୍ଡିଦେବେ ? ସେଥିପାଇଁ ଏଣିକି ତେଣିକି ହେବା ପରି ଲାଗିଲେ। ରାଜା କଥା ଠଉରାଇ ନେଲେ।

କହିଲେ ଘରେ ରାତିଏ ରହିବାକୁ ପିଲାଙ୍କୁ କହି ଆସିନାହିଁ ପରା। ହଉ ଜଗନ୍ନାଥଙ୍କ ସଞ୍ଜ ଧୂପ ଉଠୁ। ଖାଲି ହାତୁଟାରେ ଘରକୁ କେମିତି ଯିବ ? ଯାଅ ବଡ଼ ପୋଖରୀରେ ମୁହଁ ହାତ ଧୋଇ ଆସ। ସନ୍ଧ୍ୟା କର। ଘର ବାଟ କେତେ କି ? ପଳାସି ଗଲେ ରାତି ଘଡ଼ିକୁ ଘରେ ଗୋଡ଼ ଦେବ। ବ୍ରାହ୍ମଣ ବିଚାରା କଣ ମନରେ ଭାବିଲେ କେଜାଣି ମୁହଁକୁ ଆମ୍ବିଲେଇ ଉଠିଗଲେ। ରାଜା ଡ଼ାକିଲେ ଗନ୍ତେଇତଙ୍କୁ। ସେ 'ମଣିମା' ବୋଲି ଭିତରଆଡୁ ଆସି ଛାମୁରେ ତୁଣ୍ଡରେ ହାତ ଦେଇ ଛିଡ଼ା ହେଲେ। ଆଜ୍ଞା ହେଲା ବ୍ରାହ୍ମଣଙ୍କୁ ପଚାଶ ଟଙ୍କା ଦେବ। ସଞ୍ଜ ଧୂପର ବିଶ୍ୱମ୍ଭର ବଲ୍ଲଭ ଖଜା ବଡ଼ ଥାଳିଟି ଦେବ। ପିଲାଏ ତାଙ୍କର ଚାହିଁ ବସିଥିବେ। ନନା ଗଡ଼ରୁ କଣ ଆଣିଛନ୍ତି ବୋଲି। ଏ ଆମ୍ବପତ୍ରଟିକୁ ବୈଠକ ଖାନାରେ ଥୋଇ ଦେଇଥା"। କାଳୀଚରଣ ପଚାରିଲେ 'ଛାମୁ ପାଚିଲା ଆମ୍ବପତ୍ରଟି କାହିଁକି ଆଣିଥିଲେ ସେ ? ଛାମୁ ତ କଣ ଭାରି ପ୍ରଶଂସା କଲେ।' ରାଜା କହିଲେ - ପୁଅ ତୁ ଜାଣିନାହୁଁ, ତୁଚ୍ଛା ହାତରେ ରାଜଦ୍ୱାରକୁ ଆସିବାଟା ଅବିଧି। ସେ ତ ଗରିବ ବ୍ରାହ୍ମଣ ତାଙ୍କୁ ଆଉ କ'ଣ ମିଳନ୍ତା। ଯୋଗକୁ ପାଇଲେ ଏହି ପାଚିଲା ଆମ୍ବ ପତ୍ରଟି। ଦେଖିଛୁ କେତେ ବଡ଼ କି ସୁନ୍ଦର ହଳଦୀ ରଙ୍ଗ ଦିଶୁଛି। ସହଜରେ ଏତେ ଲମ୍ବା ପତ୍ର ମିଳେ କି ? ତୁ କଣ ଭାବୁଛୁରେ ଛାର ଆମ୍ବପତ୍ରଟିଏ ଆଣିଥିଲେ ବୋଲି। ନାଇଁ, ତାଙ୍କ ଶ୍ରଦ୍ଧା ସେ ଭେଟିଛନ୍ତି। ଏ ଟଙ୍କା ଶ୍ରଦ୍ଧାର ସାମାନ୍ୟ ମୂଲ୍ୟ। ଶ୍ରଦ୍ଧାର ମୂଲ୍ୟ କେହି ଦେଇପାରିବେ ନାହିଁ। ବିଚାରା, ଗରିବ ଲୋକ ବୋଲି ତାଙ୍କୁ କିଛି ଦିଆଗଲା।

ରାତ୍ରି ଘଡ଼ିକ ପରେ ଯାତ୍ରା ଆରମ୍ଭ ହେଲା। ନାଟୁଆ ମାନେ ତାଳରେ ନାଚି ନାଚି ଟିକିଏ ଟିକିଏ ଅଭିନୟ ଦେଖାଇଲେ। ଦେଖଣାହାରିଏ ବିଷୟ ଅନୁସାରେ ହସିଲେ, କାନ୍ଦିଲେ ହା ହା କଲେ। ସଭିଙ୍କ ମନ ସ୍ୱନ ଯେପରି ଏକାଠେଇଁ। ହୋଇପାରେ ଏହା ଏକ ଅସଂସ୍କୃତ ରୀତି Crude form ତଥାପି ତାହାରି ଭିତରେ ଥିଲା, ଏବେ ମଧ୍ୟ ଅଛି ଆମର ସଂସ୍କୃତି, ଆଦିମ ସଂସ୍କୃତି। ଅନ୍ୟ ଦେଶର ଚାଲିଚଳଣରୁ ନିଆରା। ସେ ରାଜା କେତେକାଳୁ ଗଲେଣି। ଆଜିର ବଡ଼ମ୍ବାର ରାଜା ତାଙ୍କର ନାତି ହେବେ। ସେ ଯାତ୍ରା କେତେକାଳୁ ବନ୍ଦ ହେଲାଣି।





*ଶେଷ ରାଜା ହରିହର ସିଂ ମର୍ଦ୍ଦରାଜ ଭ୍ରମରବର ରାୟ*

# ଖଣ୍ଡପଡ଼ା ରାଜା

## ଶ୍ରୀ ଶ୍ରୀ ରାମଚନ୍ଦ୍ର ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ

ରାଜ୍ୟର ଆୟତନ ୨୨୪ ବର୍ଗମାଇଲ। ସେତେବେଳର ଲୋକସଂଖ୍ୟା ପ୍ରାୟ ୭୮ ହଜାର । ଆୟ ପ୍ରାୟ ଦେଢ଼ ଲକ୍ଷ ଟଙ୍କା। ରାଜା ୪୨୧୨ ଟଙ୍କା ପେସ୍‌କିସ୍ ଦିଅନ୍ତି। ମହାନଦୀ କୂଳରେ କଣ୍ଟିଲୋରେ ପ୍ରସିଦ୍ଧ ନୀଳମାଧବଙ୍କ ମନ୍ଦିର। ଉତ୍ତମ କଂସା ବାସନ ନିମିତ୍ତ ଗ୍ରାମର ପ୍ରସିଦ୍ଧି ଅଛି।

କବିଚନ୍ଦ୍ର କାଳୀଚରଣ ଖଣ୍ଡପଡ଼ା ରାଜାଙ୍କ କଥା ପ୍ରସଙ୍ଗରେ ଲେଖିଛନ୍ତି - ସେ ତାଙ୍କ ବାପା ମଲା ପରେ ଚାକିରୀ ଖୋଜୁଥାନ୍ତି। ପଲିଟିକାଲ୍ ଏଜେଣ୍ଟଙ୍କୁ ସାକ୍ଷାତ କଲେ। ସେ ସାହାଯ୍ୟ କରିବାକୁ କହିଲେ। କାଳୀଚରଣ ନୀଳମାଧବ ଦର୍ଶନକୁ ଯାଇଥିଲେ, ମହାନଦୀରେ ବୁଡ଼ଟାଏ ମାରିଦେଇ ଶୁଦ୍ଧପୂତ ହୋଇ ଦର୍ଶନକୁ ଗଲାବେଳକୁ ଦିଅଁଙ୍କ ଧୂପ

ବଢୁଥାଏ। ମନ୍ଦିରରେ ଦର୍ଶନାର୍ଥୀ କୁହା କୁହି ହେଉଥାନ୍ତି ଆଜି ସହଳ ଦିଅଁଙ୍କ ଧୂପ ବଢୁଛି। ଛାମୁ ବିଜେ ହୋଇଛନ୍ତି। ଦିଅଁଙ୍କ ଧୂପ ସାରିଲେ ପରା ଛାମୁଙ୍କ ମଣୋହି ବଢିବ। ସେଇଥିପାଇଁ ଡାକୁଆ, ସୁଆର, କାହାଳିଆ, ବଡ଼ ପଣ୍ଡା ସଭିଏଁ ଜାଗତିଆର। ଏହା ୧୯୧୯ ମସିହାର ଘଟଣା। ରାଜା କଣ୍ଟିଲୋକୁ ଆସିଥିବା ଜାଣି ନିଜେ ରାଜା ରାଇଜରେ ଲୋକ ବୋଲି, ମନ ହେଲା ଟିକିଏ ରାଜଦର୍ଶନ କରନ୍ତି। ହେଲେ ଏଥିପାଇଁ ବିଧି ତ ଅଛି। ବଡ଼ମ୍ବା ଗଡ଼ର ପରିଛା ପଟ୍ଟନାୟକ ଦିଆନ ପଟ୍ଟନାୟକ ଇତ୍ୟାଦି ବୁଢ଼ାବୁଢ଼ୀ କହନ୍ତି ମୁକ୍ତ ହସ୍ତରେ ରାଜଦର୍ଶନ ଅବିଧି। ଶୁଣି ଥାଆନ୍ତି ଖଣ୍ଡପଡ଼ା ରାଜା କିଛି ଟୋକା ଟାକଳିଆ ନୁହଁନ୍ତି; ବେଶ ପାଚିଲା ବେଲ। ସେ ଶୁଣି ଥାଆନ୍ତି । ତିଗିରିଆ ବୁଢ଼ାରାଜାଙ୍କ କଥା ତାଙ୍କର ହେତୁ ହେଲା। ବୁଝା ବୁଝି କରି ଜାଣିଲେ ଖଣ୍ଡପଡ଼ା ରାଜା ଜଣେ ଛାନ୍ଦ ଚୌପଦୀ ରସିକ। କେତେଜଣ ପଣ୍ଡିତ ତାଙ୍କ ପାଖେ ପାଖେ ଥାଆନ୍ତି। ତାଙ୍କ ପୂର୍ବ ରାଜା ନଟବର ଭ୍ରମରବର ଥିଲେ ଜଣେ ଜଗନ୍ନାଥ ଭକ୍ତ ଓ ଦୋର୍ଦ୍ଦଣ୍ଡ ପ୍ରତାପୀ ରାଜା । ପଡ଼ୋଶୀ ବଡ଼ମ୍ବା ରାଜ୍ୟରେ ଲୋକେ ତାଙ୍କ କୀର୍ତ୍ତି କୁହାକୁହି ହୁଅନ୍ତି। ଜଗନ୍ନାଥଙ୍କ ଦର୍ଶନ କଲାବେଳେ କୌଣସି ନୀତି ଖିଲାପ ହୋଇଥିଲେ ସେ କୁଆଡ଼େ ସଙ୍ଗେ ସଙ୍ଗେ ଜାଣିପକାନ୍ତି। ଶ୍ରୀ ଜୀଉଙ୍କ ମୁଖ ମଣ୍ଡଳ ମଳିନ ହୋଇଥିବାରୁ ସେ ବାରି ନିଅନ୍ତି। ରାଜ୍ୟ ଆମ୍ବ ତୋଟାରୁ ଆମ୍ବ ପାଚି ଝଡ଼ିଲେ ଯେ ଯେତେ ଗୋଟାଇ ନେବ ମନା ନାହିଁ। ମାତ୍ର ଡେମ୍ଫ ଭାଙ୍ଗି କେହି ତୋଳି ନେଲେ ତା'ର ଆଙ୍ଗୁଠିରେ ଦଣ୍ଡ ତା ଦିହକଯାକ ମନେ ରଖିଥିବ। ଏହା ସହିତ ସେ ପ୍ରବୀଣ ସଙ୍ଗୀତଜ୍ଞ ଓ ସଙ୍ଗୀତ ରସିକ ଥିଲେ। ତାଙ୍କ ଅମଳରେ ଆର୍ତ୍ତ ମାର୍ଥା ବୁଢ଼ା ବେଶ ଯୋଡ଼ ତୋଡ଼ରେ ସୀତାର ବଜାଉଥିଲେ। ଗାୟକ ଗୁଣ୍ଡ ନିଜେ ଦିଲ୍ଲୀ ବନାରସ ପ୍ରଭୃତି ବହୁତ ଆଡ଼େ ବୁଲି ନାଁ କମେଇ ଥିଲେ। ଆହୁରି ବି ଅନେକ ଗାୟକ ସେଠାରେ ଥିଲେ। ରାଜାଙ୍କ ଦେହାନ୍ତ ହୋଇଛି ସିନା। କର୍ପୂର ଗଲେ ମଧ କନାରୁ ବାସନା ଯାଇନାହିଁ । ଓଡ଼ିଶୀ ଗୀତ ବାଦ୍ୟର ଗୋଟିଏ ବିଶିଷ୍ଟ ସ୍ଥଳୀ ବୋଲି ଖଣ୍ଡପଡ଼ା ଖ୍ୟାତି ଅର୍ଜିଥାଏ। ମାଟିର ଗୁଣ ଅଛି । ପୃଥିବୀ ବିଖ୍ୟାତ ପଠାଣୀ ସାମନ୍ତ ଥିଲେ ସେହି ଖଣ୍ଡପଡ଼ାର। ଗୀତି ଲେଖକ ଅନେକ ଅଛନ୍ତି। କାଳୀଚରଣ ଗଜା ବୟସ ଟୋକା। ଶୀଳ ଶୀଳପରା ଗଗନେ ଉଡୁଛନ୍ତି ଯେଉଁଠି ସେଇଠି ସେ କଣ ଲେଖିବେ ? ତଥାପି ମାଆଙ୍କୁ ସୁମରି ଗୀତଟିଏ ଲେଖି ଛାମୁରେ ଭେଟି ଦେଇ ଦର୍ଶନ କରିବାକୁ ଗଲେ। ଅଚିହ୍ନା ଲୋକ। ବାପାଙ୍କ କାଳ ହେବା ଟାଙ୍ଗରା ମୁଣ୍ଡରେ କେଶ ପୁରା ଠିକ୍ ହୋଇନାହିଁ। ରାଜାଙ୍କ ପାଖଲୋକ ଜଣେ ଦି'ଜଣଙ୍କୁ ବଡ଼ମ୍ବା ରାଜ୍ୟର ବୋଲି ପରିଚୟ ଦେଲେ। ତାଙ୍କ ଜେଜେବାପା, ନିମାଇଁ ଚରଣ ପଟ୍ଟନାୟକ ସେତେବେଳେ

ଆଖପାଖ କେତେଖଣ୍ଡ ରାଜ୍ୟର ବଡ଼ ଜଣାଶୁଣା ଲୋକ ଥିଲେ । ତାଙ୍କର କାଳ ହୋଇଥିଲେ ମଧ୍ୟ ବଂଶ ପରିଚୟ କାମ ଦେଲା । ପାଖଲୋକ ଜଣକ ତାଙ୍କ ରୂପ କଥା ଓ ମିଠା ବ୍ୟବହାରରେ ତାଙ୍କ ଆଡ଼କୁ ଟିକିଏ ଢ଼ଳିଗଲା । ସେ ଯାଇ ଛାମୁରେ ବଂଶ ପରିଚୟ ସହ ଏତାଲା କଲା । ତହୁଁ ଶ୍ରୀମୁଖରୁ ଆଜ୍ଞା ହେଲା, ଇସୁ ଏତା ହେଲା ଗଲା - ଉନ୍ତାରୁ ଚାଟ ଘର ପୁଅ ଚାଟ୍ ଭାଟ ଘର ପୁଅ ଭାଟ୍ । ଟୋକା ହେଲେ କଣ ହେଲା । ଗଲା ଉନ୍ତାରୁ ଜାଗଁଲି ବ୍ରହ୍ମା ଆପଣେ ସାନ ସାପର - ଇସୁ ଏତା ହେଲା ଗଲା - ଉନ୍ତାରୁ ବିଷ କଣ ନଥାଏ କି ? ଡାକ ତାଙ୍କୁ ଆସନ୍ତୁ । ଲୋକ ବାତିନି ଦେଲା ଭିତରକୁ ଯିବାକୁ । ଲେଖିଥିବା ଗୀତଟି ସେ ନେଇ ଛାମୁରୁ ଭେଟି ଦେଇ ଜୁହାରିଲେ । କୁଞ୍ଚ ଖୋଷିବାଟା ପାଶୋରି ନ ଥିଲେ । ଭେଟି ରକମ ହାତରେ ଥାଇ ଜୁହାରିବା ନିଷିଦ୍ଧ । ଏସବୁ କାଇଦା କଟକଣା ତ ତାଙ୍କର ଦେହର ମଳି । ଆଜ୍ଞା ହେଲାକି "ଇସୁ ଏତା ହେଲା, ଗଲାଉନ୍ତାରୁ 'ଗଲାଉନ୍ତାରୁ ତମର ରଚନା' ।"

'ମଣିମା' ହଉ ବସ, ବସ । ସାଙ୍ଗେ ସାଙ୍ଗେ ପାଖଲୋକ ଲେଖାଟିକୁ ଶ୍ରୀହସ୍ତକୁ ଟେକିଦେବାକୁ ବାହାରିଲା ବେଳେ ଆଜ୍ଞା ହେଲା, 'ବ୍ରହ୍ମା ଆପଣେ' ଠାରରେ ଜଣାଇ ଦିଆଗଲା, ପଢ଼ନ୍ତୁ ବୋଲି । ରାଜା ଶ୍ରୀରାମଚନ୍ଦ୍ର ଭ୍ରମରବରଙ୍କ ବର୍ଣ୍ଣ ଗୋରା ଆଡ଼କୁ ଚାରିପଣ କି ଛଅପଣ ବାକି ଶ୍ୟାମଳା । ଉଚ୍ଚତା ପାଞ୍ଚ ଫୁଟରୁ ସାମାନ୍ୟ ବହକିବ । ଶରୀର ପୃଥୁଳୁ କୁହା ନ ଗଲେ ବି ପତଳା କୁହାଯାଇପାରିବ ନାହିଁ । ବୟସ ନାଗପାଟ ସତୁରୀ ହେବ । ମୁଣ୍ଡରେ ଅଧାଗଣ୍ଠି ପକା ଗଙ୍ଗା ଯମୁନା ବାଳ । ଦାଢ଼ି ବୀରକେଶ (ନିଶ) ବେଶ ଲମ୍ବା । କର୍ଣ୍ଣରେ କୁଣ୍ଡଳ । ଗଳାରେ ସାତ ଲହରୀ ପଦକ ହୀରା । ତଥି ଉପରେ ଧାନୁଆଁ ହରଡ଼ ଫାଳ ସୋରିଷିଆ ଇତ୍ୟାଦି ହାର ଲମ୍ବମାନ । ବାହୁରେ ବାହୁଟିଆ ବା କଙ୍କଣ, ଦଳା ଗଣ୍ଠିରେ ପିଟା ସୁନା ଖଡୁ, ଆଙ୍ଗୁଠିମାନଙ୍କରେ ବିବିଧ ପ୍ରକାରର ରତ୍ନ ମୁଦ୍ରିକା, ଅଣ୍ଟାରେ ସୁବର୍ଣ୍ଣର ଅଣ୍ଟା ସୂତା । ପହରଣ ଖଣ୍ଡପଢ଼ା ତନ୍ତ ବୁଣା, କଳା ମନ୍ଦାର ଧଡ଼ି ପିନ୍ଧା ଓ ଦୋସଡ଼ା ଓ ପାଟିଲା ଗାମୁଛା । ଆଖିରେ କଜଳ । କପାଳରେ ପଇସା ଆକାର ଚିନି ସିନ୍ଦୂର ଟୋପା ଉପରେ ଗୋରଚନା ଟୋପି । ପ୍ରତି କଥା କୁହା ପ୍ରାରମ୍ଭରେ "ଇସୁ ଏତାହେଲା ଗଲାଉନ୍ତାରୁ" ବାକ୍ୟ ଖଣ୍ଡର ପ୍ରୟୋଗ ।

ଶ୍ରୀ ଛାମୁଙ୍କ ମନୋଗତ ସମୁଝି ଶୁକ୍ଳକେଶ ବେଦାନ୍ତି ବ୍ରହ୍ମା ଆପଣେ ଗୀତର ପାଠ ଆରମ୍ଭ କଲେ । ମଧ୍ୟେ ମଧ୍ୟେ ଶ୍ରୀ ଛାମୁ ସ୍ଥଳ ବିଶେଷରେ ରଚନାରେ ମୁଗ୍ଧ ହୋଇ ତାଙ୍କ ସୁଚିରାଭ୍ୟାସ ଗୌର ଚନ୍ଦ୍ରିକା ସଂଯୋଗ ପୂର୍ବକ ଆଉ ଥରେ ଆଉ ଥରେ ବୋଲି ମୃଦୁ ମଧୁର ସ୍ମିତାନନରେ ଆଦେଶ କରୁଥାଆନ୍ତି ଓ ଲେଖକଙ୍କ ଆଡ଼କୁ ସପ୍ରଶଂସ ନୟନ ଯୁଗଳ

ଢ଼ାଳି ଅନାଉ ଥାଆନ୍ତି । ଭାବ ଭଙ୍ଗୀରୁ ମନେ ହେଲା ଶ୍ରୀଛାମୁ ଗୀତ ରଚନାରେ ତୃପ୍ତ। ତାଙ୍କୁ ଅଧିକରେ ବୁଝୁଥିବା ତାଙ୍କ ହାଇମରାକୁ ଫୁଟୁକିମରା, ପଣ୍ଡିତ, ଅଧା ପଣ୍ଡିତ, ଅପଣ୍ଡିତ ଯେତେ ଥିଲେ ତାଙ୍କ ତୁଣ୍ଡରୁ 'ଆହା ଆହା' ଅଜାଡ଼ି ହୋଇ ପଡ଼ିଲା । ଗୀତକାର ଶୁଣାଇଲେ ମଣିମା ଆଜ୍ଞା ହେଲେ ଗୀତକୁ ଗାଇ କରି ଛାମୁରେ ଶୁଣାଇ ଦିଅନ୍ତି । ଏଥର ଉଚ୍ଛୁଳା ହସରେ କୁହାଗଲା 'ଏଁ ଗଲାଉନ୍ତାରୁ ତମେ ଗାଇ ଜାଣ' । ଉତ୍ତର ଟିକିଏ ଟିକିଏ । ବ୍ରହ୍ମା କହିଲେ 'ମଣିମା' ଯାହା ଆଜ୍ଞା ହୋଇଥିଲେ । ଆମ ବଡ଼ମ୍ଭା ପନ୍ନହାକେ ସେଇତା । ରାଜା ପରା ସର୍ବଜ୍ଞ, ଗୀତର ବସତି ଯାହା ହୋଇଛି ନାହିଁ ନଥିବ । ସେଥିରେ ସୁକଣ୍ଠରେ ଗାୟନ କରାଗଲେ ସୁବର୍ଣ୍ଣ ଚମ୍ପକରେ ସୁବାସ ଚହଟିଲା ପରି ହେବ । ହଇ ହଇ ଗାଆନ୍ତୁ ।" କାଳୀଚରଣ ଗୀତଟି ଗାଇଲେ । ବ୍ରହ୍ମାଏ ଗୀତର ଭଣତି ପଦଟି ପଢ଼ିବା ପୂର୍ବରୁ ଏ କଥାବାର୍ତ୍ତା କରୁଥାଆନ୍ତି । ଗୀତ ଗାଇ ଶୁଣାଗଲା । ଭଣତି ପଦ ଥିଲା :-

ସ୍ୱପ୍ନେ ଜାଗରଣେ ହୋଇ ବଣା
କ୍ଷଣେ କ୍ଷଣେ ଦିଶୁ ବିଚକ୍ଷଣା
କିଣାଠାରୁ ମୁଁ ଅଧିକେ କିଣା
ରାମଚନ୍ଦ୍ର ନୃପ ଭାଷେ
ମନେ ଥିବ ବନ୍ଧୁ
ସୁଧା ସିନ୍ଧୁରେ କାହିଁ ଲୁଚାଇଲ
ଧନ ପୂର୍ଣ୍ଣ ମୁଖ ଇନ୍ଦୁ ॥

ଗୀତ ଶେଷରେ ଆନନ୍ଦ ପ୍ରଶଂସା ଓ ସନ୍ତୋଷରେ ହସ କୂଳ ଭାଙ୍ଗିଲା । ଭଣତି ପଦକ ସେଦିନ ସେତେବେଳେ ଦୋହରାଇ ଦୋହରାଇ ଗାଇ ଶୁଣାଇବାକୁ ଆଦେଶ ହେଲା । ତା ପରେ ଆଉ ପାଖଛଡ଼ା ନ କରି ସମସ୍ତ ପରିଚୟ ଯୋଗ୍ୟତା ଇତ୍ୟାଦି ଗୋଟି ଗୋଟି ପଚାରି ସେଦିନ ଘର ବାହୁଡ଼ାକୁ ଅନୁମତି ଦେଲେ ନାହିଁ । ହାତୀ ବଡ଼ମ୍ଭା ବାହୁଡ଼ି ଗଲା । ବସା ସଞ୍ଜା ସବୁ ବିଧିମତେ ବରାଦ ହୋଇଗଲା । କଣ୍ଢିଲୋରେ ଦିନକ ରହଣି ପରେ ତାଙ୍କୁ ଛାମୁଙ୍କ ଗହଣରେ ଖଣ୍ଡପଡ଼ା ଯିବାକୁ ହୁକୁମ ହେଲା । ଗଡ଼ର ଶେଷ ମୁଣ୍ଡରେ ଡାକ ବଙ୍ଗଳା । ଲମ୍ବା ଚଉଡ଼ା ଉଚ୍ଚ ମଉଡ଼ ମରା ଚାଳଘର । ସେଇଠି ପଦ୍ମଫୁଟା ପୋଖରୀ ଆଡ଼କୁ ଚାରି ପାଞ୍ଚ ବଖରା ଝାଟିମାଟି କାନ୍ଥ ଦିଆ ଛୋଟ ଛୋଟ ଚାଳ ଘର ଭିତରୁ ଶେଷ ଘରଟିରେ କାଳୀଚରଣଙ୍କୁ ବସା ମିଳିଲା । ରାଜାଘର, ସିଧା, ସଞ୍ଜା, ପୂଝାରୀ ଓ ଚାକର ଖଞ୍ଜି ଦେଲେ । ଦି ତିନି ଦିନ ପରେ ଦିନେ ସଞ୍ଜବେଳେ ରାଜାଙ୍କ ବୈଠକରେ ଛାନ୍ଦ ଚର୍ଚ୍ଚା

ହେଉଥାଏ ଦିଆନେ ଆସି ପହଞ୍ଚିଲେ। ରାଜା ଚିହ୍ନା କରାଇଦେଲେ । ଦିଆନଙ୍କୁ କହିଲେ 'ଇସ୍ସୁ ଏତାହେଲା, ପନ୍ନାହକେଙ୍କୁ ଆମ ଏଠି ରଖିଲେ ଭଲ ହୁଅନ୍ତା। ଦିଆନେ କାଳୀଚରଣଙ୍କର ପରିଚୟ ପଚାରି ବୁଝିଲେ। ବଡ଼ମ୍ବାର ଲୋକ। ସିରସ୍ତାଦାର ଥିଲେ ସେଇଠି ଜାନକୀ ବଲ୍ଲଭ ମହାନ୍ତି। କାଳୀଚରଣଙ୍କ ବାପାଙ୍କର ସେ ଥିଲେ ବଡ଼ ବନ୍ଧୁ। ଖଣ୍ଡପଡ଼ା ଦିଆନେ ଭଗତବଲ୍ଲଭ ଦାସ ତାଙ୍କ ଜୋଇଁ। ତାଙ୍କ ବାପା ରାଜମଣି ଦାସ ମଧ୍ୟ ଖଣ୍ଡପଡ଼ା ଦିଆନ ଥିଲେ । ଜାନକୀବାବୁଙ୍କୁ ଦାଦା ବୋଲି ଡାକୁଥିବା କାଳୀଚରଣ ଭଗତବାବୁଙ୍କର ବଡ଼ବନ୍ଧୁ ହେଲେ। ଦିଆନଙ୍କ ବଙ୍ଗଳା କାଳୀଚରଣଙ୍କର ବସା ଘର ପାଖରେ ଅଳ୍ପ ଛଡାରେ। ଆରଦିନ ସକାଳୁ ଦିଆନ ଡକାଇ ପଠାଇଲେ। କହିଲେ 'ରାଜା ତମକୁ ରସି କରି ଖଣ୍ଡପଡ଼ାରେ ରହିବାକୁ କଣ କହୁଥିଲେ। ତମେ ତ ଗୋଟାଏ ଜନ୍ତୁ। ପଲିଟିକାଲ ଏଜେଣ୍ଟ ଆମକୁ ପଚାରିଛନ୍ତି ସୁବିଧା ହେଲେ ତମକୁ ଏଇଠି ଚାକିରିଟିଏ ଦେବାକୁ ହେଇଟି ଚିଠି ଦେଖ। ଏଇମିତି ଚିଠି ସାହେବ ଆଉ କେତେ ଜାଗାକୁ ଲେଖିଛନ୍ତି। ତମର ଆଉ କେଉଁଠିକି ଯିବା ଦରକାର ନାହିଁ। ଏଇନେ ଆମର ଏଇଠି ସ୍କୁଲ ବିଭାଗ ସବ-ଇନସ୍ପେକ୍ଟର ପଦ ଖାଲି ଅଛି। ରହିଯାଅ ପରେ ଦେଖିବା। ଭବିଷ୍ୟତକୁ ତମ ମାନିଆଁ କାମର ବ୍ୟବସ୍ଥା ହେବ। ମୁଁ ଏଇନେ ଛାମୁକୁ ବାହାରିଛି। ସବୁ କଥା, କହି ଆସିବି।'

କାଳୀଚରଣ ରହିଲେ ଖଣ୍ଡପଡ଼ାରେ ସେଇ ଚାକିରିରେ, ସେଇ ବସାରେ। ନୂଆ ହୋଇ ଖଣ୍ଡପଡ଼ାରେ ଖଣ୍ଡେ ଫୋର୍ଡ଼ ଗାଡ଼ି କିଣା ହୋଇଥାଏ। ଦିଆନ ଦିନେ ସାଥିରେ ଧରି ତାଙ୍କୁ ସେଇ ଗାଡ଼ିରେ ଉଆସକୁ ନେଲେ । ରାଜାଙ୍କୁ ସବୁକଥା କହିଲେ। ରାଜାଙ୍କ ଆନନ୍ଦ କହିଲେ ନ ସରେ। ଦି'ଚାରିଦିନ ଗଲା । ଦିନେ ସଞ୍ଜବେଳେ କାଳୀଚରଣ ଛାମୁରେ ଜଣା କଲେ ମୁଁ ଛାମୁଙ୍କ ହୁକୁମରେ ଏଇଠି ରହିଲି। ବଡ଼ମ୍ବାରେ କି ବାଙ୍କିରେ କେହି ମୋ କଥା ଜାଣିଲେ ନାହିଁ। ମୋ ବୋଉ ବଡ଼ ବ୍ୟସ୍ତ ହୋଇଥିବ। ହୁକୁମ ହେଲେ ମୁଁ ଦି'ଦିନ ପାଇ ବାଙ୍କି ଯାଆନ୍ତି। ରାଜା ହଁ ଭରିଲେ । ତହିଁ ଆରଦିନ ଦିୱାନଙ୍କ ପାଖକୁ ସେ ନିଜେ ଖବର ପଠାଇଲେ। ପଦ୍ମାବତୀ ବାଟେ ସେ ବାଙ୍କି ଯିବେ। ସାଙ୍ଗରେ ଅଜିଜ୍ ଜମାଦାର ଓ ଦି'ଜଣ ବରକଲାନ୍ଦ ଯିବେ। ଖାଲି ହାତରେ ଗଲେ ରାଜାଙ୍କୁ ଅପମାନ। ତେଣୁ ଦେଉଳରୁ ଖଜା ପିଠା ଆଉ ତୋଟାରୁ ଭଲ ଭଲ ଆମ୍ବ, ପଣସ ଭାରେ ଯିବ। ନଗଦ ପଚାଶ ଟଙ୍କା ଦେବାକୁ କୋଠକରଣଙ୍କୁ ବରାଦ ଦେଲା। ଦି'ଦିନ ଛୁଟି ମିଳିଲା। ହାତୀ ତାଙ୍କୁ ନେଇ ଯିବାକୁ ବରାଦ ହେଲା। ଘରେ ପହଞ୍ଚିଲେ। ବାଟରେ ପଦ୍ମାବତୀ ଗାଆଁ । ଜଣେ ଲୁଗା

ମହାଜନଠାରୁ ବୋଉ ଖୁଡ଼ି କୋଠିଆ ସାରଥିଆ ଭୋଇ ଇତ୍ୟାଦିଙ୍କ ପାଇଁ ଲୁଗା କିଣି କାଳୀଚରଣ ନେଲେ। ଗାଁରେ ପହଞ୍ଚିବା ବେଳକୁ ବେଳବୁଡ଼େ ମନ୍ଦିରରେ ସିଙ୍ଗା ମହୁରୀ ବାଜୁଥାଏ। ଗାଁର ପୁରୁଣା ଲୋକମାନେ ଖୁସିରେ କହିଲେ ତାଙ୍କ ବାପାଙ୍କ ଧରମରୁ ଏକଥା ହୋଇଛି।

ଏମିତି ଜଣେ ଥିଲେ ଖଣ୍ଡପଡ଼ା ରାଜା। ତାଙ୍କ ପୁଅ ରାଜା ହରିହର ମର୍ଦ୍ଦରାଜ ମିଶ୍ରଣ ବେଳେ ରାଜା ଥିଲେ। ପରେ ବିଧାୟକ ଓ ମନ୍ତ୍ରୀ ହୋଇଥିଲେ।





ଶେଷ ରାଜା ଶ୍ରୀକରଣ ଶ୍ରୀ ରାଧାନାଥ ବେବର୍ତ୍ତା ପଟ୍ଟନାୟକ

# ଆଠଗଡ଼ ରାଜା
## ଶ୍ରୀ କରଣ ଶ୍ରୀ ବିଶ୍ୱନାଥ ଦେବବର୍ମା
## ବେବର୍ତ୍ତା ପଟ୍ଟନାୟକ

ଆଠଗଡ଼ ରାଜ୍ୟର କ୍ଷେତ୍ରଫଳ ୧୬୮ ବର୍ଗ ମାଇଲ। ସେତେବେଳର ଲୋକସଂଖ୍ୟା ପ୍ରାୟ ୫୦ ହଜାର। ବାର୍ଷିକ ଆୟ ଏକ ଲକ୍ଷ ଏକସ୍ତରି ହଜାର। ପେସ୍‌କିସ୍ ଦେଉଥିଲେ ୨୮୦୦ ଟଙ୍କା। ରାଜବଂଶ ଜାତିରେ କରଣ। ପୁରୀ ଗଜପତି ମହାରାଜାଙ୍କ ଠାରୁ ଶ୍ରୀକରଣ ବେବର୍ତ୍ତା ପଟ୍ଟନାୟକ ପଦ ପାଇଥିଲେ। ଉତ୍କଳ ପ୍ରସିଦ୍ଧ ଧବଳେଶ୍ୱର ମନ୍ଦିର ଏହି ରାଜ୍ୟରେ ଅବସ୍ଥିତ।

ଥରେ ଆଠଗଡ଼ ରାଜା ବିଶ୍ୱନାଥ ସାମନ୍ତ ତାଙ୍କ ଅଗ୍ରଜ ରଘୁନାଥଙ୍କ ସହିତ ମନୋମାଳିନ୍ୟ ହେତୁ କଟକରେ ବସା କରି ରହୁଥାନ୍ତି। କଟକରେ କବିବର ରାଧାନାଥଙ୍କ ସହିତ ତାଙ୍କର ପରିଚୟ ହେଲା। ସେତେବେଳକୁ ଗୈରିକବସନ ପ୍ରସ୍ତୁତ କରାଇ ବୃନ୍ଦାବନ

ଯାତ୍ରା ଉଦ୍‌ଯୋଗରେ ଥିଲେ। ରାଧାନାଥ ୩/୪ ଦିନ ଧରି ତାଙ୍କୁ ବୁଝାଇ ପରାମର୍ଶ ଦେଇ ସେଥିରୁ ତାଙ୍କୁ ନିବୃତ୍ତ କରାଇଲେ। ସାମନ୍ତ ବିଶ୍ୱନାଥଙ୍କର ସଂସ୍କୃତ ସାହିତ୍ୟରେ ପାଣ୍ଡିତ୍ୟ ଦେଖି ରାଧାନାଥ ପ୍ରାୟ ପ୍ରତ୍ୟହ କଚେରୀ ଫେରାଣି ତାହାଙ୍କର ଚାନ୍ଦିନୀଚୌକସ୍ଥ ବସାକୁ ଯାଇ ଶାସ୍ତ୍ରାଳାପ ଓ ସାହିତ୍ୟ ଆଲୋଚନା କରୁଥିଲେ। ସେ ମଧ୍ୟ ଅଧିକାଂଶ ସନ୍ଧ୍ୟାରେ ରାଧାନାଥଙ୍କ ଗୃହକୁ ଯାଉଥିଲେ। ରାଧାନାଥ ମଧ୍ୟ ମିଷ୍ଟାନ୍ନ ଆଦି ପ୍ରସ୍ତୁତ କରି ସାମନ୍ତଙ୍କ ବ୍ୟବହାର ପାଇଁ ପଠାଉଥିଲେ। ପ୍ରତି ମାସରେ ସାମନ୍ତଙ୍କ ବସା ଖର୍ଚ୍ଚ ପାଇଁ ରାଧାନାଥ ୨୦/୨୫ ଟଙ୍କା ଲେଖା ବ୍ୟୟ କରୁଥିଲେ। ଆଠଗଡ଼ର ରାଜାଙ୍କ ତିରୋଧାନ ଉତ୍ତାରେ ପାଟମହାଦେଈଙ୍କ ଆଦେଶ ଅନୁସାରେ କୌଳିକ ପ୍ରଥା ଅନୁଯାୟୀ ୧୮୯୬ ମସିହା ଜାନୁୟାରୀ ମାସ ୨୫ ତାରିଖରେ ବିଶ୍ୱନାଥ ସିଂହାସନ ଆରୋହଣ କଲେ। ରାଜା ବିଶ୍ୱନାଥ ବେବର୍ତ୍ତା ପଟ୍ଟନାୟକ ଓ ରାଣୀ ରାଧାପ୍ରିୟା ପଣ୍ଡିତ ମଣ୍ଡଳୀ ମଣ୍ଡିତ ହୋଇ ଆଠଗଡ଼ରେ ଲେଖିଥିଲେ ଶରଦରାସ। ରାଜା ପରମ ରାଧାକୃଷ୍ଣ ଭକ୍ତ ଓ ବଡ଼ ସାହିତ୍ୟ ରସିକ ଥିଲେ। ଜାନୁୟାରୀ ୧୮୯୬ ମସିହାରେ ରାଜଗାଦି ପାଇ ସେପ୍ଟେମ୍ବର ମାସରେ କବିବର ରାଧାନାଥଙ୍କୁ ସେ ଏକ ପତ୍ରରେ ଲେଖିଲେ - ରାଜା ଆଠଗଡ଼ରେ ଆମ୍ଭେ ଗୋଟିଏ ବ୍ରାହ୍ମଣ ଶାସନ ସ୍ଥାପନ କରିବାକୁ ଇଚ୍ଛା କରୁଛୁ। ତହିଁରେ ସକୁଟମ୍ବେ ସଂସ୍କୃତ ବ୍ରାହ୍ମଣ ଦଶ ଘର ରଖିବୁ। ପ୍ରତ୍ୟେକ ପରିବାରକୁ ଚବିଶ ଦସ୍ତି ପଦିକାରେ ଦଶମାଣ ଲେଖାଏଁ ଜମି ଦାନ କରିବୁ। ବିଜ୍ଞାପନ ପ୍ରକାଶ କରି ପ୍ରାର୍ଥୀ ବାଛିଲେ ବହୁତ ଦରଖାସ୍ତ ଆସିବ। ଆମ୍ଭେ ସମସ୍ତଙ୍କୁ ଗ୍ରହଣ କରିପାରିବୁନାହିଁ। ରାଧାନାଥଙ୍କୁ ଆଠଜଣ ବ୍ରାହ୍ମଣ ମନୋନୀତ କରି ପଠାଇବାକୁ ସେ ଲେଖିଲେ। ସେଥିରୁ ତିନିଜଣ କାବ୍ୟ ତୀର୍ଥ ଉପାଧିଧାରୀ, ତିନିଜଣ ନ୍ୟାୟିକ ଓ ଦୁଇଜଣ ପୌରାଣିକ ବ୍ରାହ୍ମଣ ହୋଇଥିବେ। ଯେଉଁମାନେ ଅକିଞ୍ଚନ ଓ ସ୍ୱଚ୍ଛ ପରିବାର ବିଶିଷ୍ଟ ସେମାନଙ୍କର ପ୍ରାର୍ଥନା ସର୍ବାଗ୍ରେ ବିଚାରଯୋଗ୍ୟ। ସ୍ଥାନୀୟ ତିନିଜଣ ବ୍ରାହ୍ମଣ ସେଠାରେ ଉପସ୍ଥିତ ଥିବା ଲେଖିଥିଲେ ଓ ଶାସନର ନାମ ରାଧାନାଥପୁର ରଖିବାକୁ ପ୍ରସ୍ତାବ କରିଥିଲେ। ରାଧାନାଥ ତାଙ୍କ ଉତ୍ତରରେ ଶାସନ ନାମ ରାଜାଙ୍କ ନାମ ଅନୁସାରେ 'ବିଶ୍ୱନାଥପୁର' ରଖିବା ପାଇଁ ପ୍ରସ୍ତାବ ଦେଇଥିଲେ। ମାତ୍ର ରାଜା ତାଙ୍କୁ ଜଣାଇଲେ ଯେ ତାଙ୍କ ଇଷ୍ଟଦେବ ଶ୍ରୀକୃଷ୍ଣ ରାଧାକାନ୍ତ। ରାଣୀଙ୍କ ନାମ ଥିଲା ରାଧାପ୍ରିୟା। ବିଶ୍ୱନାଥ ଓ ରାଧାପ୍ରିୟା ମିଶାଇ ରାଧାନାଥ ନାମ ପ୍ରଭୁସମ୍ମତି, କାନ୍ତା ସମ୍ମତି ଓ ସୁହୃଦ ସମ୍ମତି ହେବ। ସେହି ଅନୁସାରେ ରାଧାନାଥପୁର ଶାସନ ସ୍ଥାପିତ ହେଲା। ଅନେକ ଯୋଗ୍ୟ ବ୍ୟକ୍ତି ଏହି ଶାସନରୁ ବାହାରିଲେ। ପ୍ରବୀଣ ଜନସେବୀ ସାମ୍ବାଦିକ ଓ ମନ୍ତ୍ରୀ ରାଧାନାଥ ରଥ

ସେଥିରୁ ଜଣେ । କାବ୍ୟ ଶାସ୍ତ୍ର ରସିକ ଭାବରେ ରାଜା ଉତ୍କଳ ବିଖ୍ୟାତ ଥିଲେ । ପଣ୍ଡିତମାନଙ୍କ ସହିତ ରାଜା ଓ ରାଣୀ ଶାସ୍ତ୍ର ଆଲୋଚନାରେ ସମୟ କଟାଉଥିଲେ ।

ଆଠଗଡ଼ର ଦେଓ୍ୱାନ ଥାଆନ୍ତି ବୀର କିଶୋର ଦାସ । ସେ ସ୍ୱନାମଧନ୍ୟ ଡେପୁଟି କଲେକ୍ଟର ରାୟବାହଦୂର ରାଜକିଶୋର ଦାସଙ୍କ ଭାଇ । ସେ ରାଜାଙ୍କ ବ୍ୟବହାର ପାଇଁ ଖଣ୍ଡେ ଫୋର୍ଡ ମଟର ଗାଡ଼ି ମଗାଇଲେ । ସେତେବେଳେ ଆଠଗଡ଼ରେ ମୋଟର ଗାଡ଼ି ନୂଆ । ରାଜା ପ୍ରତିଦିନ ଉପରଓଳି ଶୀତୁଳି ପଡ଼ିଲେ ତାମଜାନ ଚଢି ଗଡ଼ବୁଲି ବିଜେ ହୁଅନ୍ତି । ସାଙ୍ଗରେ ଅନେକ ଲୋକ ତାମଜାନ ପାଖେ ପାଖେ ପଛେ ପଛେ ଯାଉଥାନ୍ତି । ଗଡ଼ଟି ସେମିତି କିଛି ବଡ଼ ନୁହେଁ ତଥାପି ବୁଲିକରି ବାହୁଡ଼ା ବିଜେ ବେଳକୁ ଜଗନ୍ନାଥଙ୍କ ଦେଉଳରେ ସଞ୍ଜ ଆଳତୀ ବଢୁଥାଏ । ତାମଜାନର ବେହେରାମାନେ ଡ଼ାକ ମାରିମାରି ଚାଲିଥାନ୍ତି । ଗଡୁଆଏ ଛାମୁ ବିଜେ କଲେ ବୋଲି ଦାଣ୍ଡପିଣ୍ଡାରେ ବସିଲାଠାରୁ ଓହ୍ଲାଇ ଦାଣ୍ଡକୁ ଆସନ୍ତି । ବର୍ଣ୍ଣ ଅନୁସାରେ କିଏ ଜୁହାର କରେ, କିଏ ଆଶୀର୍ବାଦ ଶ୍ଳୋକ ପାଠ କରେ କିଏ ଫୁଲଟିଏ, ଟାହିଆଟିଏ ବା ଫୁଲମାଳଟିଏ – ଶରଧାରେ ଯାହା ହାତରେ ଯାହା ହେଲା ଛାମୁରେ ଭେଟନ୍ତି । ଛାମୁ ମଧ ସେମାନଙ୍କର ସୁଖଦୁଃଖ ଘର ହାଲଚାଲ ସବୁ ପଚାରି ବୁଝନ୍ତ ସତେ ଯେମିତି ରଜା ଘର ଆଉ ପ୍ରଜାଘର ଏକ । ଖାଲି ତ ପଚାରନ୍ତି ନାହିଁ ଲୋଡାଥିଲେ ତହିଁକି ଚାହିଁ ଉପଚାରବି ରାଜା କରନ୍ତି । କେତେ ଖୁଣ୍ଟି ନାଣ୍ଟି ମାଲିମକଦମା ତୁଣ୍ଡେ ତୁଣ୍ଡେ ବଡ଼ଦାଣ୍ଡରେ ଫଏସଲା ହୋଇଯାଏ । ରାଜାପ୍ରଜାଙ୍କର ଏ ଗଭୀର ଆତ୍ମୀୟତା ଏ ନିକଟ ସମ୍ପର୍କ ଉଭୟ କୁଳକୁ ଏକ ପରିବାରର ଗଣ୍ଡି ମଧରେ ଘେରି ରଖିଥିଲା ।

ଫୋର୍ଡ଼ ଗାଡ଼ି ଆସିଲା । ଛାମୁଁ ସେଦିନ ନିତି ଦିନିଆ ତାମଜାନଙ୍କୁ ଛାଡ଼ି ମୋଟରରେ ବୁଲିଯିବାକୁ ଦିଆନ ସ୍ଥିର କଲେ। ସେଇ କଥା ହେଲା। ଛୋଟିଆ ସ୍ଥାନଟିଏ। ସାଙ୍ଗେ ସାଙ୍ଗେ ଗାଡ଼ି ରାଜାଙ୍କୁ ଗଡ଼ ବୁଲାଇ ନଅରକୁ ବାହୁଡ଼ି ଆସିଲା। ରାଜା ଦିଆନଙ୍କୁ ଡାକି କହିଲେ, ବୁଝିଲ ବାବୁ, ଏ ମୋଟର ଗାଡ଼ି ତୁମେ ରଖ, ଗସ୍ତ କରିବ। ଆମ ପାଇଁ ଏ ଚଳିବ ନାହିଁ। ଆମେ ରାଜା, ରାଜ୍ୟର ହାଲଚାଲ ଆମକୁ ଜଣା ପଡ଼ିବ ନାହିଁ। ପ୍ରଜା ପାଟକ, ଆମକୁ ଚିହ୍ନିବେ ନାହିଁ। ଲୁଚିଲା ପରି ଯିବୁ ଲୁଚିଲା ପରି ଆସିବୁ। ଆମେ କଣ ଚୋର କି ? ରାଜା ପ୍ରଜା ବାପ ପୁଅ। ସୁଖ ଦୁଃଖ ହେବା ନାହିଁ ଚିହ୍ନା ଚିହ୍ନି ହେବା ନାହିଁ। ସେଇଆ ହେଲା। ରାଜାଙ୍କ ଗଡ଼ ବୁଲା ପୂର୍ବ ପରି ଚାଲିଲା। ଏମିତି ଥିଲେ ରାଧାନାଥପୁର ଶାସନର ପ୍ରତିଷ୍ଠାତା କାବ୍ୟ ସାହିତ୍ୟ ରସିକ ଶ୍ରୀକରଣ ବିଶ୍ୱନାଥ ଦେବ ବର୍ମା ବେବର୍ତ୍ତା ପଟ୍ଟନାୟକ। ଶାସକ ଶାସିତ ସମ୍ପର୍କ କଣ ଥିଲା – ଏବେ କଣ ହୋଇଛି ?

ଏହାର ପରବର୍ତ୍ତୀ କାଳରେ (ରାଜା ଆଇନକାନୁନ ନ ମାନି ତାଙ୍କ ବ୍ୟକ୍ତିଗତ ବ୍ୟୟ ଆଶାତୀତ ଭାବରେ ବଢ଼ାଇ ଦେଲେ। ଏରୋଡ୍ରମ ତିଆରି କରି ଉଡ଼ାଜାହାଜ କିଣିଲେ। ପଲଟିକାଲ ଏଜେଣ୍ଟ ଏଥିପାଇଁ ତାଗିଦ୍ କରିବାରୁ ତାଙ୍କ ପ୍ରତି ଦୁର୍ବ୍ୟବହାର କଲେ। ଫଳରେ ଆଠଗଡ଼ କୋର୍ଟ ଅଫ ଅର୍ଡ଼ସ ହେଲା। ରାଜାଙ୍କୁ ଓଡ଼ିଶା ବାହାରେ ରହିବାକୁ ଆଦେଶ ହେଲା। ସେ କଲିକତାରେ ରହିଲେ। ଗେରୁଆ ବସ୍ତ୍ର ପରିଧାନ କରି ସ୍ୱାମୀ ବିଦ୍ୟାନନ୍ଦ ନାମରେ ସନ୍ନ୍ୟାସୀମୟ ଜୀବନ ବିତାଇଲେ। ସ୍ୱାଧିନତା (୧୯୪୭) ପର୍ଯ୍ୟନ୍ତ ସେ ରାଜ୍ୟ ଫେରି ପାଇନଥିଲେ। ସେ ମିଶ୍ରଣ ଆଲୋଚନାରେ ଭାଗ ନେଇଥିଲେ। ତାଙ୍କ ଶେଷ ଜୀବନ ପୁରୀରେ ଆଠଗଡ଼ କୋଠୀରେ ଜଣେ ସାଧାରଣ ବ୍ୟକ୍ତି ଭାବେ କଟିଥିଲା। ସେ ରାଜା ଥିବାବେଳେ ନିମାଁଇ ହରିଚନ୍ଦନ ତାଙ୍କ ସଭାସଦ୍ ଥିଲେ।) ରାଜା ତାଙ୍କୁ କୃଷି ଜମି ଓ ବାସଗୃହ ଯୋଗାଇ ଦେଇ ବାଣୀକଣ୍ଠ ଉପାଧି ପ୍ରଦାନ କରିଥିଲେ।





ଶେଷ ରାଜା କୃଷ୍ଣଚନ୍ଦ୍ର ସିଂ ମାନ୍ଧାତା

# ନୟାଗଡ଼ ରାଜା

## ଶ୍ରୀ ଶ୍ରୀ ଲଡୁକେଶ୍ୱର ମାନ୍ଧାତା

ନୟାଗଡ଼ ରାଜ୍ୟର କ୍ଷେତ୍ରଫଳ ୫୯୦ ବର୍ଗ ମାଇଲ। ସେତେବେଳର ଲୋକସଂଖ୍ୟା ପ୍ରାୟ ଦେଢ଼ଲକ୍ଷ। ଆୟ ପ୍ରାୟ ୩ ଲକ୍ଷ ୫୪ ହଜାର ଟଙ୍କା। ରାଜା ପେସକିସ୍ ଦେଉଥିଲେ ୫୫୨୫ ଟଙ୍କା। ରାଜ୍ୟ ରାଜଧାନୀ ନୟାଗଡ଼। ରାଜ୍ୟର ମୃତ୍ତିକା ବଡ଼ ଉର୍ବର। ରାଜ୍ୟରେ ଶ୍ରୀ ରଘୁନାଥଜୀ ଓ ଲଡୁକେଶ୍ୱର ମହାଦେବ ଦୁଇ ପ୍ରଧାନ ଦେବ ମନ୍ଦିର। ପ୍ରତିବର୍ଷ ଏଠାରେ ଶ୍ରରାମ ନବମୀ ଓ ଶିବରାତ୍ରି ଯାତ୍ରା ସମୟରେ ବହୁ ଲୋକ ସମାଗମ ହୁଏ। ଇଟାମାଟି ଗୋଟିଏ ବାଣିଜ୍ୟ ପେଣ୍ଠସ୍ଥଳୀ। ବହୁତ ସ୍ୱଚ୍ଛଳ ବ୍ୟବସାୟୀ ଏଠାରେ ରହୁଥିଲେ। ନୟାଗଡ଼ରେ ଗୋଟିଏ ଉଷ୍ଣ ପ୍ରସବଣ ଅଛି। ରାଜ୍ୟର ପଶ୍ଚିମ ଦିଗରେ ଗଞ୍ଜାମ ଜିଲ୍ଲା ଲାଗି ଅଛି।

୧୮୮୨ ମସିହାରେ ଭୂଦେବ ମୁଖାର୍ଜୀ ବଙ୍ଗଳାର ଶିକ୍ଷା ଇନ୍ସପେକ୍ଟର। ସରକାରଙ୍କର ସମ୍ମିତ କ୍ରମେ କବିବର ରାଧାନାଥ ରାୟଙ୍କୁ ଘେନି ଉତ୍ତର ଭାରତର ପାଟଣା, ଗୟା, ବୀରଭୂମ ପ୍ରଭୃତି ସ୍ଥାନ ଦେଖାଇଲେ। ଭ୍ରମଣ ଶେଷରେ ତାଙ୍କୁ ଆଣି କିଛିଦିନ ହୁଗୁଳିରେ

ନିଜ ଘରେ ଅତିଥି କରି ରଖିଥିଲେ। ଭୂଦେବ ବାବୁଙ୍କ ଗୃହରୁ ପ୍ରତ୍ୟାଗମନ ସମୟରେ ରାଧାନାଥ ହୁଗୁଳିରେ ଗୋଟିଏ ଧର୍ମଶାଳାର ବାରଣ୍ଡାରେ ନୟାଗଡ଼ ରାଜା ଲଡୁକେଶ୍ୱର ମାନ୍ଧାତାଙ୍କୁ ଦେଖିଲେ। ଗାଡ଼ିରୁ ଓହ୍ଲାଇ ତାଙ୍କଠାରୁ ଜାଣିଲେ ଯେ ଉଭୟ ରାଜା ଓ ରାଣୀ ଭାରତବର୍ଷର ସମସ୍ତ ପ୍ରସିଦ୍ଧ ସ୍ଥାନ ଭ୍ରମଣ କରି ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରୁଛନ୍ତି। ହୁଗୁଳିର ପ୍ରସିଦ୍ଧ ଇମାମାବାଡ଼ା ଦେଖିବାକୁ ହୁଗୁଳି ଆସିଛନ୍ତି। ସେଦିନ ସେମାନେ କଲିକତା ଯିବେ ବୋଲି ରାଧାନାଥଙ୍କୁ ସେଠାରେ ଅଧ ଘଣ୍ଟାଏ ଅଟକାଇଲେ। ରାଜା କହିଲେ ରାଣୀ ରୋଷେଇ କରୁଛନ୍ତି । ଅଧ ଘଣ୍ଟାଏ ମଧ୍ୟରେ ଆହାର ଶେଷ କରି ସେମାନେ ଯିବାକୁ ପ୍ରସ୍ତୁତ ହେବେ। ରାଜା ଓ ରାଣୀଙ୍କ ଗ୍ରହଣରେ କୌଣସି କର୍ମଚାରୀ ଭୃତ୍ୟ କିମ୍ୱା ଦାସୀ ପ୍ରଭୃତି ନଥିଲେ। କେବଳ ରାଜା ଓ ରାଣୀ ଉଭୟ ଏକତ୍ର ଭାରତବର୍ଷର ସମସ୍ତ ପ୍ରସିଦ୍ଧ ସ୍ଥାନମାନ ଦେଖି ଆସିଲେଣି। ରାଧାନାଥ ତାଙ୍କୁ କଥା ପ୍ରସଙ୍ଗରେ କହିଲେ ଆପଣମାନେ ତ ପ୍ରଥମ ଶ୍ରେଣୀରେ ଯିବେ ମୁଁ ଇଣ୍ଟର ଶ୍ରେଣୀରେ ଯିବି। ଟିକିଏ ପୂର୍ବରୁ ଷ୍ଟେସନ ନ ଗଲେ ଟିକେଟ୍ କିଣିବା କଠିନ ହେବ। ରାଜା କହିଲେ 'ରାଧାନାଥ ବାବୁ' ଆପଣ କଣ ମନେ କରନ୍ତି ପ୍ରଜାଙ୍କ ତଣ୍ଟି ଚିପା ଟଙ୍କାରେ ମୁଁ ଟିକେଟ୍ କିଣି ପ୍ରଥମ ଶ୍ରେଣୀରେ ଭ୍ରମଣ କରିବି। ଦେଖନ୍ତୁ ଆମ ଟିକେଟ୍। ଏହା କହି ରାଜା ତାଙ୍କର ରାଣୀଙ୍କର ଦୁଇଟି ପୂର୍ବରୁ କିଣାଯାଇଥିବା ତୃତୀୟ ଶ୍ରେଣୀର ଟିକେଟ୍ ରାଧାନାଥଙ୍କୁ ଦେଖାଇଲେ। ସେ ଏହି ଦୃଶ୍ୟ ଦେଖି ମୁଗ୍ଧ ହେଲେ। ସମସ୍ତେ ଏକ ସାଙ୍ଗରେ ହୁଗୁଳିରୁ କଲିକତା ଆସି ସେଠାରୁ ଷ୍ଟିମରରେ କଟକ ଆସିଲେ।

ରାଜା ଲଡୁକେଶ୍ୱର ମାନ୍ଧାତାଙ୍କ ଭଳି ଦାନଶୀଳ ଓ ପର ଦୁଃଖ କାତର ରାଜା ଅତି ବିରଳ। ରାଧାନାଥଙ୍କ ସହିତ ତାଙ୍କର ପ୍ରଗାଢ଼ ଘନିଷ୍ଠତା ଥିଲା। ଅନେକ ଥର ରାଜା ମହୋଦୟ ରାଧାନାଥଙ୍କର କଟକ ବସାରେ ପଦାର୍ପଣକରି ମଣୋହି କରୁଥିଲେ । ଅପରାହ୍ଣ ଭ୍ରମଣରେ ବାହାରିବା ସମୟରେ ପ୍ରତ୍ୟହ ତାଙ୍କର କୋଟ ପକେଟ୍ ଟଙ୍କା ଅଧୁଲି ସୁଉକି ଖୁଚୁରାରେ ପୂର୍ଣ୍ଣ ଥାଏ। ବିତରଣ କରି କରି ଯାହା ଭ୍ରମଣ ଶେଷରେ ଅବଶିଷ୍ଟ ଥାଏ ତାକୁ ଭୃତ୍ୟମାନଙ୍କୁ ଦେଇ ଦିଅନ୍ତି। ଏହାର କୌଣସି ହିସାବ ରହେନାହିଁ। ତାଙ୍କ ଦାନଶୀଳତାର ଗୋଟିଏ ଉଦାହରଣ ଅପ୍ରସାଙ୍ଗିକ ହେବନାହିଁ। ଥରେ ଜଣେ କନ୍ୟାଦାୟଗ୍ରସ୍ତ ଅଭାବୀ ବ୍ରାହ୍ମଣ ରାଜାଙ୍କ ନିକଟରେ ଗୁହାରି କଲେ "ଛାମୁ ମୋତେ ସାହାଯ୍ୟ ନ କଲେ ମୁଁ କନ୍ୟାଟିର ବିବାହ କରିପାରିବି ନାହିଁ।" ରାଜା ବୁଝିଲେ ବିବାହ ଆଉ ୩ ମାସ ଅଛି। ତାଙ୍କୁ କହିଲେ ବିଭାଘର ୧୦/୧୫ ଦିନ ଥିବ ଆସିବ। ୨ ମାସରୁ ଅଧିକ ସମୟ ଗତ

ହେଲା। ବ୍ରାହ୍ମଣ ପହଞ୍ଚି ଗଲେ। ସେତେବେଳେ ବ୍ରହ୍ମପୁରର ଜଣେ ସୁନାରି ରାଜାଙ୍କୁ କେତେ ଗୁଡ଼ିଏ ଅଳଙ୍କାର ବିକ୍ରୟ ପାଇଁ ଦେଖାଉଥାନ୍ତି। ବ୍ରାହ୍ମଣଙ୍କୁ ବସିବାକୁ କହିଲେ । ଇତି ମଧ୍ୟରେ ଗୋଟିଏ ସୁନାର କ୍ଷୁଦ୍ରହାର ରାଜାଙ୍କର ପସନ୍ଦ ହେବାରୁ ସେ ତାହା ଗଳାରେ ପିନ୍ଧି ଅନ୍ତପୁରକୁ ଗଲେ। ହାରର ମୂଲ୍ୟ ୧୫୦ ଟଙ୍କା ହୋଇଥାଏ। ରାଜାଙ୍କ ହାତରେ ଏତେ ଟଙ୍କା ନଥାଏ ସେଇଥିପାଇଁ ଟଙ୍କା ନିମିତ୍ତ ରାଣୀଙ୍କ ନିକଟକୁ ଯିବାର ହେଲା । ରାଣୀ କହିଲେ ଆପଣଙ୍କର ଯଦି ପିନ୍ଧିବାର ଇଚ୍ଛା ହେଉଛି ମୁଁ ଟଙ୍କା ଦେଉଛି। ଆର ମାସରେ ଆପଣ ମୋତେ ଟଙ୍କା ଫେରେଇ ଦେବେ। ରାଜା ଟଙ୍କା ନେଇ ବାହାରକୁ ଯିବା ମାର୍ଗରେ ହାର କାଢ଼ି ସୁନାରିକୁ ଫେରାଇ ଦେଲେ। କହିଲେ ଏହି ହାର ପସନ୍ଦ ହେଲା ନାହିଁ। ସଙ୍ଗେ ସଙ୍ଗେ ଆଣିଥିବା ୧୫୦ଟଙ୍କାରୁ ବ୍ରାହ୍ମଣଙ୍କୁ ୧୦୦ଟଙ୍କା ଦେଲେ ଓ ଅବିଶିଷ୍ଟ ୫୦ଟଙ୍କା ନିଜ ହାତ ଖର୍ଚ୍ଚ ପାଇଁ ରଖିଲେ। ହୃଦୟବତ୍ତା ଓ ଦାନଶୀଳତା ଦେଖାଇବାକୁ ଇଚ୍ଛା ଥିଲେ କରଜ କରି ଅସମୟରେ ଦାନ କରୁଥିଲେ। ଏହାକୁ ସଂସାରି ଲୋକ Extravagance କହିଥାଏ। ରାଜା ଲଡୁକେଶ୍ୱରଙ୍କ ଜ୍ୟେଷ୍ଠ ଜେମା ତାଳଚେର ରାଜା କିଶୋର ଚନ୍ଦ୍ର ଦେବଙ୍କର ମାତା ଥିଲେ। କନିକା ରାଜା ରାଜେନ୍ଦ୍ର ନାରାୟଣଙ୍କ ସହଧର୍ମିଣୀ ଥିଲେ କନିଷ୍ଠା ଜେମା। ଏହି ମନସ୍ୱୀ ରାଜା ୧୮୯୦ ମସିହାରେ ସ୍ୱର୍ଗାରୋହଣ କଲେ। ରାଜ୍ୟରେ ମନ୍ଦିର ମାନଙ୍କର ଉନ୍ନତି ନିମିତ୍ତ ସେ ବିଶେଷ ଦୃଷ୍ଟି ଦେଇଥିଲେ। ଶରଣକୁଳ ରାଜ୍ୟ ଲଡୁକେଶ୍ୱର ମହାଦେବଙ୍କ ମନ୍ଦିର ତାଙ୍କର ପୂର୍ବଜଙ୍କ କୀର୍ତ୍ତି। ତାଙ୍କ ନାମରେ ଏଇ ରାଜା ନାମିତ। ରାଜ୍ୟ ମିଶ୍ରଣ ସମୟରେ ରାଜା ଥିଲେ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ମାନ୍ଧାତା। ସେ ୧୯୧୮ ମସିହାରେ ଗାଦି ପାଇଥିଲେ। ରାଜା ନାବାଳକ ଥିବା ହେତୁ ଅନେକ ଥର ନୟାଗଡ଼ ରାଜ୍ୟ କୋର୍ଟ ଅଫ ୱାଡ଼ ଶାସନରେ ରହି ଆସିଛି ଓ ଏହି ସମୟରେ ମଧ୍ୟ ରାଜ୍ୟର ପ୍ରଭୂତ ଉନ୍ନତି ସାଧନ ହୋଇଅଛି।





ଶେଷ ରାଜା ବାହାଦୂର କୃଷ୍ଣଚନ୍ଦ୍ର ଦେଓଭଞ୍ଜ

# ଦଶପଲ୍ଲା ଓ ଯୋରୁମୋ

## ରାଜା ଶ୍ରୀଚୈତନ୍ୟ ଦେଓ ଭଞ୍ଜ

ଗଡ଼ଜାତ ରାଜାମାନଙ୍କୁ ଲକ୍ଷ୍ୟ କରି କବିବର ରାଧାନାଥ ଲେଖିଥିଲେ:-

ମନ୍ତ୍ରୀ ହେଲେ ତୁମ ଖଳ ଖଚକୁହା
ଧର୍ମ ହେଲା ତୁମ ପରଧନ ବୁହା,
ବୁଡ଼ିଣ ରହିଇ ଆମୋଦେ ଆବାଲ୍ୟ
'ବିଦ୍ୟାକୁ ମଣିଲ ଶିବ ନିରମାଲ୍ୟ।'
'ପ୍ରତିଧ୍ୱନି ପ୍ରାୟ ସଦା ଆଜ୍ଞାକାରୀ
ତୁମ୍ଭ ପ୍ରିୟ ପାତ୍ର ଗଉଡ଼ ଭଣ୍ଡାରି' ॥

ଦଶପଲ୍ଲା ରାଜା ଏହାର ଗୋଟିଏ ଜ୍ୱଳନ୍ତ ଉଦାହରଣ । ବ୍ୟାସକବି ଫକୀର ମୋହନ କିଛିଦିନ ତାଙ୍କର ଦେୱାନ ଥିଲେ ଓ ରାଜାଙ୍କର ବର୍ଣ୍ଣନା ତାଙ୍କ ଆତ୍ମ ଚରିତରେ

ଦେଇଛନ୍ତି। ଦଶପଲ୍ଲା ବୌଦର ଅଧିନ ଥାଇ ପରେ ସ୍ୱାଧୀନ ହୋଇଥିଲା। ଏହାର କ୍ଷେତ୍ରଫଳ ୫୬୮ ବର୍ଗ ମାଇଲ ଲୋକସଂଖ୍ୟା ପ୍ରାୟ ୫୨ ହଜାର ହେବ। ରାଜ୍ୟର ଆୟ ପ୍ରାୟ ଦେଢ଼ ଲକ୍ଷ ଥିଲା ଓ ପେସ୍‌କିସ୍ ୬୬୧ ଟଙ୍କା। ରାଜବଂଶର ସଙ୍କେତ ମୟୂର ପକ୍ଷୀ। ଏହା ସୀମାକୁ ବୌଦ, ଖଣ୍ଡପଡ଼ା, ନୟାଗଡ଼, ନରସିଂହପୁର ରାଜ୍ୟ ଓ ଗଞ୍ଜାମ ଜିଲ୍ଲା। ରାଜ୍ୟ ରାଜଧାନୀର ନାମ ଥିଲା କୁଞ୍ଜବନ। ଯୋରୁମ ଦଶପଲ୍ଲାର ଗୋଟିଏ ସ୍ୱତନ୍ତ୍ର ଅଂଶ। ଏହା ମହାନଦୀର ଉତ୍ତର ପାର୍ଶ୍ୱରେ ଅବସ୍ଥିତ। ଏହି ଅଂଶ ସକାଶେ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା। ରାଜାଙ୍କୁ ଏଥିପାଇଁ ସରକାରଙ୍କୁ କିଛି ନଗଦ ଟଙ୍କା ଦେବାକୁ ପଡ଼େନାହିଁ। ତାହା ବଦଳରେ ପୁରୀର ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ରଥ ନିର୍ମାଣ ନିମିତ୍ତ ପ୍ରତିବର୍ଷ ସେ କାଠ ଯୋଗାଣ କରିଥାଆନ୍ତି।

ରାଜା ଚୈତନ୍ୟଦେଓ ଭଞ୍ଜ ଦୀର୍ଘାକାର, ମପାଣସହି ସ୍ଥୁଳ ଓ ଆବକ୍ଷ ବିସ୍ତୃତ ଶ୍ମଶ୍ରୁଯୁକ୍ତ ଥିଲେ। ରାଜାକାରର ଉପଯୁକ୍ତ ଶରୀର। ଦର୍ଶନ ମାତ୍ରକେ ସମ୍ମାନର ସହିତ ଅଭିବାଦନ କରିବାକୁ ଇଚ୍ଛାବଳେ। ମାତ୍ର ଶରୀରର ସ୍ଥୁଳତା ଠାରୁ ବେଶି ବୁଦ୍ଧିର ସ୍ଥୁଳତା ତାଙ୍କ ଆଚରଣରେ ଜଣାଯାଏ। ତାଙ୍କ ପିତା ପୂର୍ବତନ ରାଜା ତାଙ୍କୁ ବିଦ୍ୟା ଶିକ୍ଷା ଦେବା ପାଇଁ ଜଣେ ଅବଧାନ ରଖିଥିଲେ। ୧୦/୧୫ ବର୍ଷ ଅବଧାନ ଶିକ୍ଷାଦାନ କଲେ। ତାଙ୍କ ଯୁଗାନ୍ତ ବ୍ୟାପୀ ପ୍ରଗାଢ଼ ଶିକ୍ଷାଦାନ ଫଳରେ ଶ୍ରୀମଣିମାଙ୍କ ଛାମୁ ଲେଖିବାକୁ ଶିଖିଥିଲେ 'ଶ୍ରୀ ଚୈତନ୍ୟ ଦେଓ ଭଞ୍ଜ ରାଜା କିଲ୍ଲେ ଦଶପଲ୍ଲା ଏବଂ ଯୋରୁମୋ।" ଏହି ଲେଖା ଭିତରେ 'ଚ' କେଉଁଟା 'ଦ' କେଉଁଟା। ବାରି ହୋଇପାରେ ନାହିଁ। ମାତ୍ର ଦୀର୍ଘଦିନ ଯାବତ ଅଭ୍ୟାସ ହେତୁ ସେ ଖୁବ୍ ଚଞ୍ଚଳ ଲେଖି ପାରୁଥିଲେ। ରାଜ୍ୟର ପ୍ରଜାମାନେ ବେଶି କନ୍ଧ ଜାତୀୟ। ଆଉ କିଛି ଖଇରା, ସେମାନେ ନିତାନ୍ତ ସରଳ ଓ ନିରୀହ ଲୋକ ଥିଲେ। ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ରେଭେନ୍ସା ସାହେବ ଥରେ ଗସ୍ତ ସମୟରେ ଦଶପଲ୍ଲା ଯାଇଥିଲେ। ରାଜା ସାହେବଙ୍କର ଅନ୍ୟାୟ ବିଚାର ସମ୍ବନ୍ଧରେ ରାଜ୍ୟର ପ୍ରଜାମାନଙ୍କ ଠାରୁ ଗୁଡ଼ିଏ ଅଭିଯୋଗ ସେ ପାଇଲେ। ସେ ଗୁଡ଼ିକର ସତ୍ୟତା ସେ ଉପଲବ୍ଧି କଲେ। କହିଲେ "ରାଜା ସାହେବ, ତୁମେ ତ ମୂର୍ଖ - କିଲ୍ଲା କାର୍ଯ୍ୟ ଚଳାଇ ପାରିବ ନାହିଁ। ସରକାରଙ୍କ ତରଫରୁ ଆମ୍ଭେ ଜଣେ ଦେୱାନ ପଠାଇବୁ।" ଶ୍ରୀଛାମୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ "କଣ, କଣ, କହିଲ ସାହେବ। ଆମ ଛାମୁ ମୂର୍ଖ। କାଗଜ କଲମ ଆଣ। ଏଇ ଲାଗେ ଆମ ଶ୍ରୀଛାମୁ ଆମ ନାମ କିଲ୍ଲା ଦଶପଲ୍ଲା ଯୋରୁମୋ, ସବୁକଥା ଲେଖିଦେବୁ"। ରେଭେନ୍ସା କିନ୍ତୁ ବିଦ୍ୟାର ପରୀକ୍ଷା ନେଲେ ନାହିଁ। ଦଶପଲ୍ଲାରେ ଯୋଡ଼ିଏ କଚେରୀ। ଭିତରିଆ

ବେହରଣ କଚେରୀ। ସେଇଟା ରାଜାଙ୍କ ନିଜସ୍ୱ ଖାସ କାମେରା। ବାହାରେ ଦେଓ୍ୱାନ କଚେରୀ। ବାହାର କଚେରୀରେ କୌଣସି ଦିବସ ବିଚାର ପ୍ରାର୍ଥୀ ଅନେକ ପ୍ରଜା ପାଟକ ଥିଲେ ଓ କଥା ଶ୍ରୀ ମଣିମାଙ୍କ ଶ୍ରୀ ଗୋଚର ହେଲେ ସେ ଚଞ୍ଚଳ ଚିତାଲାଗି ହୋଇ କଚେରୀକୁ ବିଜେ ହୋଇ ପଡ଼ନ୍ତି। ଚଉକିରେ ବିଜେ ହୋଇ ଦୁଇବାହୁ ଟେକି ଖୁବ ଉଚ୍ଚ ସ୍ୱରରେ ଆଜ୍ଞା କରନ୍ତି। ତୁନି ହୁଅ ତୁନି ହୁଅ। ଆମ ଛାମୁ ଲେଖି ଆଜ୍ଞା କରିବେ।" ଅଭ୍ୟାସ ଅନୁସାରେ ଦପ୍ତରୀ ଦୁଆତରେ ମୁହଁ ଯାଏ କାଳି ଭର୍ତ୍ତି କରି ଯୋଡ଼ାଏ ଧଳା କାଗଜ ଓ କଲମଟିଏ ଶ୍ରୀ ଛାମୁଙ୍କର ଶ୍ରୀକର ପୈଠସ୍ଥାନରେ ଥୋଇଦିଏ। ଶ୍ରୀଛାମୁ ଲେଖି ଆଜ୍ଞା କରନ୍ତି। "ଶ୍ରୀ ଚୈତନ୍ୟ ଦେଓ ଭଞ୍ଜ ରାଜା କିଲ୍ଲେ ଦଶପଲ୍ଲା ଏବଂ ଯୋରୁମୋ।" ଅବିଶ୍ରାନ୍ତ ଭାବରେ ଶ୍ରୀକର ଚାଲେ। କାଗଜ ପୁଡ଼ା ଓଲଟାଇବା ବେଳେ ଲିଖିତ ପୁଡ଼ା କାଳି ଦୁଇ ପୁଡ଼ା ହୋଇଯାଏ। ଅଳ୍ପ ସମୟ ଉତ୍ତାରେ ଲେଖା ସମାପ୍ତ ହୋଇଗଲେ କାଗଜ ଦୁଇଖଣ୍ଡ ଉପରକୁ ଟେକି ଧରି ଅଗ୍ର ପଶ୍ଚାତ ଚର୍ତୁଦ୍ଦିଗ ଲୋକମାନଙ୍କୁ ଦେଖାଇ ପଚାରି ଆଜ୍ଞା ହୁଅନ୍ତି "ଦେଖ, ସମସ୍ତେ ଦେଖ ଦେଖ। ଆମ ଛାମୁଁ କେମନ୍ତ ଲେଖି ଆଜ୍ଞା କଲୁ। ଆମ ଦଦେଇ (ପିତାରାଜା) ଏପରି ଲେଖିପାରୁଥିଲେ? ସତକଥାଟି କହିବ ନାଁ" ଲୋକମାନଙ୍କର ବାଡ଼ିଆ ଖାଇବା, ଜୋରିମାନା ଦେବାର ବା ଜେଲ ଡର। ସମସ୍ତେ ଏକ ବାକ୍ୟରେ କହନ୍ତି 'ଆଜ୍ଞା ନାଁ ମହାପ୍ରଭୁ। ଶ୍ରୀଛାମୁଙ୍କ ପରି ଲେଖିପାରୁ ନଥିଲେ'। "ଛାମୁ ପୁଣି ପଚାରନ୍ତି ନୂଆଗଡ଼ ରାଜା, ଖଣ୍ଡପଡ଼ା ରାଜା ଆଉ ଆଉ ରାଜାମାନେ କଣ ଏପରି ଲେଖି ପାରନ୍ତି।" ଲୋକଙ୍କ ମୁଖରୁ ଉତ୍ତର ଶୁଣିବା ଆଗରୁ ଶ୍ରୀଛାମୁ ମୁଷ୍ଟିବଦ୍ଧ ହସ୍ତ ଉପରକୁ ଟେକି, ବୃଦ୍ଧାଙ୍ଗୁଳି ହଲାଇ ହଲାଇ ଆଜ୍ଞା କରନ୍ତି, "ନାହିଁରେ ବାପା ନାହିଁ।" ଦେଓ୍ୱାନ ଫକୀର ମୋହନ ନିକଟରେ ଥାଇ ଶ୍ରୀଛାମୁଙ୍କ କାର୍ଯ୍ୟ ପ୍ରଣାଳୀ ଦେଖନ୍ତି। ହସ ଚାପି ରଖିବାକୁ ରୁମାଲରେ ମୁହଁ ପୋଛି ହୁଅନ୍ତି। ଛାମୁଙ୍କ କଚେରୀ କାର୍ଯ୍ୟ ସମାପ୍ତ ଉତ୍ତାରେ ସେ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦେଓ୍ୱାନଙ୍କୁ ଭଲ କରି ଦେଖି ସମସ୍ତଙ୍କୁ ଚାହିଁ ଆଖିଠାରରେ ଆଜ୍ଞା କରନ୍ତି । ଅର୍ଥ- "ଏ ଲୋକଟାକୁ ଦେଖ, ପାତଳା ଶରୀର ଅର୍ଥାତ ନିର୍ବୁଦ୍ଧିଆ।" ପ୍ରତି ମାସରେ କଚେରୀରେ ୫/୭ ଥର ଏମିତି ଅଭିନୟ ହୁଏ।

"ଧର୍ମ ହେଲା ତୁମ ପରଧନ ବୁହା"- ଶ୍ରୀଛାମୁଙ୍କ ମୌଖିକ ବିଚାରରେ ଫୌଜଦାରୀ ଆଇନ ପ୍ରୟୋଗରେ ଉଦାହରଣ ଏମିତି। ରାଜଗାଦିରେ ନସିନ ହେବା ଦିନୁ ତାଙ୍କର ରାଜ୍ୟପାଳନର ବିଧି କିଲ୍ଲାର ପ୍ରଜାମାନଙ୍କ ଘରୁ ସମସ୍ତ ଟଙ୍କା ପଇସା ବୋହି ଆଣି ରାଜକୀୟ ଗନ୍ତାଘରେ ନିରାପଦରେ ରଖାଇବା। ଶାସନର ଏହା ଏକମାତ୍ର ବିଧି ବୋଲି

ସେ ଜାଣିଥିଲେ । ଦେୱାନ ଉଚିତ ଆଇନ ସମ୍ମତ ପରାମର୍ଶ ଦେଲେ ସେ ବୁଝୁଥିଲେ ତାଙ୍କ ପରାମର୍ଶ ଗ୍ରହଣ ନ କରିବା ଓ ତାଙ୍କର କାର୍ଯ୍ୟରେ ବାଧା ଦେବା ତାଙ୍କ ଆଧିପତ୍ୟ ଓ ମହିମା ବିସ୍ତାରର ଉପାୟ। ତାଙ୍କର ସ୍ପର୍ଦ୍ଧା ସେ ସର୍ବଦା ପ୍ରଜାମାନଙ୍କ ନିକଟରେ ପ୍ରକାଶ କରନ୍ତି "ଆମ୍ଭ ଛାମୁଁ ରାଜା, ଆମ୍ଭେ କଣ ଦେୱାନ କଥା ଶୁଣିବୁ।

ଥରେ ଜଣେ ଗରିବ ପ୍ରଜା ରାମ ମାଝି ଶ୍ରୀ ମଣିମାଙ୍କ ପାଦତଳେ ପଡ଼ି ଗୁହାରି କଲେ। ହଜୁର ଶ୍ୟାମ ମାଝିର ବଳଦ ମୋ କିଆରୀରୁ ଫସଲ ଖାଇଲା। ମୁଁ ତାଙ୍କୁ ଅଡ଼େଇ ଦେବାକୁ ପାହାରେ ଦେଲି। ଶ୍ୟାମା ଆସି ମୋ ଠାରୁ ମୋ ବାଡ଼ି ଛଡ଼ାଇ ମୋତେ ସେଇଥିରେ ବାଡ଼େଇଲା। "ହଜୁର ଗୁହାରି ଶୁଣନ୍ତୁ।" ଶ୍ରୀଛାମୁଁ ଆଜ୍ଞା କଲେ ଏଁ କଣ, କଣ ତୋତେ ଶ୍ୟାମା ମାଝି ବାଡ଼େଇଲା, କିଏ ଅଛ। ପାଖ ଲୋକ। ୪/୫ ଜଣ ଯାଅ ଶ୍ୟାମାକୁ ବାନ୍ଧି ବାଡ଼େଇ ବାଡ଼େଇ ଶ୍ରୀଛାମୁରେ ହାଜର କର। ତା'ର ବଳଦକୁ ବାନ୍ଧି ଆଣିବ। ଶ୍ୟାମା ଓ ତା'ର ବଳଦ ବନ୍ଧା ହୋଇ ଆସିଲେ। ଶ୍ୟାମା ମାମଲାତ ଜାଣିଥିଲା କି କିଏ ବୁଦ୍ଧି ବତେଇ ଦେଇଥିଲା ଟଙ୍କା କେତୋଟି ରଖି ଗୋଡ଼ତଳେ ପଡ଼ି କହିଲା "ହଜୁର, ମୁଁ ତାକୁ ବାଡ଼େଇ ନାହିଁ ସେ ମିଛଟାରେ ଗୁହାରି କରିଛି।" ଶ୍ୟାମାଦତ୍ତ କର୍ପୂର ଚନ୍ଦନ ଲାଗି ଟଙ୍କା ପ୍ରତି ଦୃଷ୍ଟି ଦେଇ ଶ୍ରୀଛାମୁ କହିଲେ "ଆରେ, ରାମା ଆମ ଶ୍ରୀଛାମୁରେ ମିଛ ଗୁହାରି କରିଛି। ତାକୁ ବାନ୍ଧି ବାଡ଼ାଅ। ବାଡ଼ିଆ ଖାଇ ଘରୁ କିଛି ଟଙ୍କା ଆଣି ଦାଖଲ କରିବାର ମକଦ୍ଦମା ଫଇସଲା ହୋଇଗଲା। ଆଉ ଗୋଟିଏ ମକଦ୍ଦମା । ଥରେ ଗୋଟିଏ ଖଚୁଆ ଲୋକ ମଣିମାଙ୍କ ଛାମୁରେ ଗୁହାରି କଲା। ଯୋରୁମୋର ପ୍ରଧାନ ତା' ଘର କାନ୍ଥରେ ଯୋଡ଼ିଏ ପଦ୍ମଫୁଲ ଚିତ୍ର ଆଙ୍କିଛି। ଶ୍ରୀଛାମୁଙ୍କ କାନ୍ଥରେ ସିନା ପଦ୍ମଫୁଲ ଚିତ୍ର ରହିବ। ପ୍ରଧାନ ବାପୁଡ଼ାର ଭାରି ବହପ। ତା' କାନ୍ଥରେ ଚିତ୍ର କରିବ। ମଣିମାଙ୍କ ଶ୍ରୀ ଆଜ୍ଞାରେ ଯୋଡ଼ାଏ ପାଖ ଲୋକ ଯାଇ ପ୍ରଧାନଙ୍କୁ ଧରି ଆଣି ହାଜର କଲେ। ପ୍ରଧାନକୁ ଦେଖିବା ବେଳକୁ ଶ୍ରୀଛାମୁ ପଦ୍ମଫୁଲ କଥା ଭୁଲି ଯାଇଥିଲେ। ପ୍ରଧାନ କରଣ ଲୋକ। ବେଶ ହୃଷ୍ଟପୁଷ୍ଟ। ତାକୁ ଦେଖି ଆଜ୍ଞା ହେଲେ ତୁ ଏତେ ମୋଟା ହୋଇଛୁ। ପ୍ରତିଦିନ କେତେ ଘିଅ ଖାଉଛୁ ? ପ୍ରଧାନ ଭୟରେ ହାତଯୋଡ଼ି ଜଣାଇଲା ମୁଁ ପଇସା କାହୁଁ ପାଇବି ଘିଅ ଖାଇବି ? ଶ୍ରୀଛାମୁ କହିଲେ ଏଇଟା ଆମ ଶ୍ରୀଛାମୁରେ ମିଛ କହିଲା। ଘିଅ ନଖାଇଲେ ମୋଟା ହୁଅନ୍ତା କିପରି ? ଆରେ ପାଖ ଲୋକ – ଏ ମିଛ କହିଲା କି ନାହିଁ। ପାଖ ଲୋକ କହିଲେ 'ମଣିମା ଛାମୁ ଶ୍ରୀ ଆଜ୍ଞା କି ମିଛ'। ଶ୍ରୀଛାମୁଙ୍କ ସୂକ୍ଷ୍ମ ବିଚାରରେ ନିଷତ୍ତି ହେଲା ଏ ପ୍ରଧାନ ଆମ ଟଙ୍କା ଲୁଟ କରି ଘିଅ ଖାଇଛି। ଆରେ ପାଖଲୋକ ତା' ଘରେ ପଶି ଟଙ୍କା

ବାହାର କରି ଘେନି ଆସ। ପୁରୁଣା ରାଜାଙ୍କ ଅମଳରୁ ଜଣେ ପୋଖତ ପାଞ୍ଜିଆ ଥିଲେ। ସେ ପ୍ରଧାନଙ୍କ ଆତ୍ମୀୟ। ରାଜାଙ୍କ ନାଡ଼ି ନକ୍ଷତ୍ର ଉଣ୍ଡିଲେଣି। କହିଲେ ପ୍ରଧାନ ଘରୁ କେତେ ଟଙ୍କା ଆଣିବା। ତା'ର ହିସାବ ଦେଖି ଜାଣି ପାରିବା। ନହେଲେ କମିଶନର ସାହେବ ଯେତେଇଚ୍ଛା ଟଙ୍କା ଆଣିଥିଲେ ଆମକୁ ଦୋଷ ଦେବ। ମଣିମା ଆଜ୍ଞା କଲେ ଠିକ୍ ଠିକ୍ କଥା। ଆମ ଶ୍ରୀଛାମୁର ସେଇଆ ଆଜ୍ଞା ହେଲା। ପ୍ରଧାନ ହୁକୁମ ପାଇ ଅନେକ ଗୁଡ଼ିଏ ତାଳପତ୍ର ଅଣାଇ ପାଞ୍ଜି ତିଆରି କଲେ। ଶ୍ରୀଛାମୁଙ୍କ ଦୃଷ୍ଟି ପଡ଼ିବା ଜାଗାରେ ବସି ହିସାବ ତାଳପତ୍ରରେ ଲେଖିଲା। ହିସାବ ଠିକ୍ କରିବାକୁ ମାସେ ଖଣ୍ଡେ ଲାଗିଲା। ସବୁ ପାଞ୍ଜି ଶ୍ରୀଛାମୁରେ ଥୋଇଦେଲା। ଶ୍ରୀଛାମୁଙ୍କ ପାଞ୍ଜିଆ ଆଜ୍ଞା ପାଇ ହିସାବ ବୁଝିବାକୁ ଲାଗିଲେ। ସବୁଯାକ ତାଳପତ୍ରରେ ଖାଲି ଲେଖା ଅଛି "ହରି ମୋତେ ରକ୍ଷା କର।" ଛାମୁରୁ ଆଜ୍ଞା ହେଲା "ପାଞ୍ଜିଆ" କଣ ବୁଝିଲ, ପାଞ୍ଜିଆ ବୁଝାଇ ଦେଲା। ଛାମୁ ଯେତିକିକୁ ସେତିକି। ପ୍ରଧାନ ରଇତମାନଙ୍କଠାରୁ ଯେତିକି ଟଙ୍କା ଅସୁଲ କରିଛି ସବୁ ଆଣି ଗନ୍ତାଘରେ ପଇଠ କରିଛି। ଖାଇବାକୁ ତାକୁ ବାଟ କୁଆଡୁ ରହିଲା। ମଣିମା ଆଜ୍ଞା କଲେ ଆମେ ପାଞ୍ଜିବିଡ଼ାକୁ ଅନାଇ ଆଜ୍ଞାଦେଲୁ ଯେତିକିକୁ ସେତିକି। ପ୍ରଧାନ ଟଙ୍କା ଖାଇନାହିଁ। ହଇ ହେ, ପାଞ୍ଜିଆ ଆଠଗଡ଼ ନୂଆଗଡ଼ ଏତେ ଯେ ରାଜା ଅଛନ୍ତି ଆମ ପରି ବୁଦ୍ଧିଆ ? ନାହିଁରେ ବାପ ନାହିଁ।

ରାଜା ସାହେବ ଗୋଟାଏ ବିଶ୍ୱାସ ଥିଲା ତାଙ୍କ ପରି ବିଦ୍ୟାବନ୍ତ, ଧନବନ୍ତ, ବୁଦ୍ଧିମନ୍ତ ଆଉ କେହି ପୃଥିବୀରେ ନାହିଁ। ଏ ବିଷୟ ପୁଣି ଛାମୁଙ୍କ ବେହରଣ କଚେରୀରେ ଆଲୋଚନା ହୁଏ। ଭିତିରିଆ, ପାଞ୍ଜିଆ, କରଣମାନେ 'ଆଜ୍ଞା ମହାପ୍ରଭୁ, ଆଜ୍ଞା ମହାପ୍ରଭୁ' କହି ଶ୍ରୀଛାମୁଙ୍କ କଥା ଯଥାର୍ଥ ପ୍ରମାଣ କରନ୍ତି । ଶ୍ରୀଛାମୁଙ୍କ ଭୂଗୋଳ ଜ୍ଞାନରେ ପୃଥିବୀରେ ନୟାଗଡ଼, ମୟୂରଭଞ୍ଜ, କେନ୍ଦୁଝର ଓ ଆଠଗଡ଼ ଏମିତି କେତେଜଣ ରାଜା ଅଛନ୍ତି। ଛାମୁ କଟକ ଯାଇଥିବା ବେଳେ ସେମାନଙ୍କୁ ଦେଖିଥିଲେ। ଆଉ ମାନେ ଥିଲେ ଦେଖି ଥାଆନ୍ତେ। ଶ୍ରୀଛାମୁ ତିନି ଚାରି ଥର କଟକ ବିଜେ ହୋଇ ଆସିଲେ। ମଧୁବନ ଗଡ଼ରୁ ଯିବ ବେଲପଡା, ସେଇଠୁ ମହାନଦୀରେ ଡଙ୍ଗାରେ ବସି କଟକ ଯିବେ। ଫେରିବ ସେଇ ବାଟରେ। ଫେରିବାକୁ ଓଲଟି ସୁଅରେ ୭/୮ ଦିନ ଲାଗେ। ଶ୍ରୀ ଛାମୁ ଜାଣିଥିଲେ ପୃଥିବୀରେ ଅଛନ୍ତି ପାଞ୍ଚଜଣ ସାହେବ ଦୁଇଜଣ ବିବୁ (ବିବି, ସାହେବାଣୀ) ଏଇମାନଙ୍କୁ ସେ କଟକରେ ଦେଖିଲେ। ଆଉ ଥିଲେ ସେ ଦେଖିଥାନ୍ତେ ପୃଥିବୀ ଭିତରେ କଟକ, ପୁରୀ, ବାଲେଶ୍ୱର ଏମିତି ତିନିଟା ସହର।। ଯେତେ ରାଜା ଅଛନ୍ତି ତାଙ୍କ ଭିତରେ ସେ ସବୁଠାରୁ ବୁଦ୍ଧିମାନ। ଏ କଥାର ପ୍ରତିବାଦ କଲେ ବିଦେଶୀ ହୋଇଥିଲେ ରାଜ୍ୟରୁ ବାହାର ଆଜ୍ଞା। ପ୍ରଜା

ହୋଇଥିଲେ ଜୋରିମାନା ଓ ଅନେକ ପ୍ରକାର ଦଣ୍ଡ। ଜେଲଖାନା ଛାମୁଙ୍କର ନ ଥାଏ। କମିଶନ ସାହେବ ହୁକୁମରେ ଗୋଟାଏ ଘର ତିଆରି ହେଲା। କଇଦୀମାନେ ସେଇଠି ରହନ୍ତି। ତାକୁ ଜଗିବାକୁ ଜଣେ ଥାଆନ୍ତି । ସେମାନେ ବହାବରତ ପଡ଼ିଲେ ଘରକୁ ଯାଇ କାମ ସାରି ଫେରି ଆସନ୍ତି। ରାଜ୍ୟରେ ପାଣମାନେ ପ୍ରାୟ ଅପରାଧି। ଜେଲରଙ୍କ କେତେ ଗୁଡ଼ିଏ ବଛା କଇଦୀ ପାଣ ଥାଆନ୍ତି। ସେ ତାଙ୍କୁ ରାତିରେ ଛାଡ଼ି ଦିଅନ୍ତି। ସେମାନେ ରୋଜଗାର କରି ସକାଳକୁ ନିଜ ଶୋଇବା ଜାଗାରେ ଶୋଇଥାଆନ୍ତି। ରାତିର ରୋଜଗାର ଜେଲରର ଦରମାକୁ ଯାଏ।

ଶୀତଦିନେ କମିଶନର ରାଜ୍ୟମାନଙ୍କୁ ଗସ୍ତରେ ବାହାରନ୍ତି। ରାଜ୍ୟ ଶାସନର ପରିଚାଳନା ଦେଖନ୍ତି। ପ୍ରଜାମାନଙ୍କର ହାରି ଗୁହାରି ବୁଝନ୍ତି। ଦେଓ୍ୱାନ ଫକୀରମୋହନ। କମିଶନର ସାହେବ ଶୀତକାଳ ଗସ୍ତରେ ଆସିଲେ। ତାଙ୍କୁ ଅଭିବାଦନ କରିବାକୁ ରାଜା ଓ ଦେଓ୍ୱାନ ହାତୀରେ ବେଲପଡ଼ା ଗଲେ । ଫେରିବା ବେଳେ ୩ ଗୋଟି ହାତୀରେ ସାହେବ ରାଜା ଓ ଦେଓ୍ୱାନ ଆଗ ପଛ ହୋଇ ଆସୁଥାଆନ୍ତି। ସାହେବ ରାଜାଙ୍କୁ ବୁଝାଇଲେ ଗଭର୍ଣ୍ଣମେଣ୍ଟରୁ ହୁକୁମ ହେଲାଣି ଖଡ଼ଗପୁରରୁ ବିଳାସପୁର ରେଳ ଲାଇନ ଫିଟିବ। ରାଜା ସାହେବ ପଚାରିଲେ ସାହେବ ସେ ଶଗଡ଼ ତ ବିଲ ବାଟରେ ଯାଇପାରିବନାହିଁ। ସାହେବ କହିଲେ 'ନାଇଁ' ରାଜା ସାହେବ, ତା' ପାଇଁ ଅଲଗା ବାଟ ତିଆରି ହେବ । ରାଜା ପଚାରିଲେ ଅଲଗାବାଟ ବନେଇଲେ ଢେର ଟଙ୍କା ଖର୍ଚ୍ଚ ହେବ। କଣ ପାଞ୍ଚ ହଜାର? ସାହେବ ହସି କରି ଉତ୍ତର ଦେଲେ 'ନାଁ' ରାଜା ସାହେବ, ଢ଼େର ଟଙ୍କା ଖର୍ଚ୍ଚ ହେବ। ବହୁତ ବହୁତ ରୁପେୟା। 'ପନ୍ଦର ହଜାର' ଆଉ ଉପରକୁ ରାଜା ଉଠି ପାରିଲେ ନାହିଁ। ଦେଓ୍ୱାନ ହାତ ଠାରି ତାଙ୍କୁ ସାହେବଙ୍କୁ ଟଙ୍କା ବିଷୟ ନ ପଚାରିବାକୁ ମନା କରୁଥାଆନ୍ତି। ସେ ତାଙ୍କ କଥା ଶୁଣିବେ କାଇଁକି? ସାହେବ ବିରକ୍ତିରେ ଆଉ ଟଙ୍କା କଥା ପଚାରିଲେ ନାହିଁ। ରାଜା ସାହେବଙ୍କ ଧାରଣା ପୃଥିବୀରେ ଏତେ ଟଙ୍କା କାହିଁ ଯେ ଖରଚ ହେବ । ଟଙ୍କା ଯାକ ତ ତାଙ୍କର ଗନ୍ତାଘରେ ବନ୍ଦ ହୋଇଛି। ଆଉ ଟଙ୍କା କାହି?

ଫକୀର ମୋହନ ଦେଓ୍ୱାନ ଭାବରେ ଯୋଗଦେବାକୁ ଆସି ଗଡ଼ରେ ପହଞ୍ଚିବାବେଳ କଥା । ତାଙ୍କ ପାଇ ସଞ୍ଜା ଓ ଖଞ୍ଜା (ବାସଘର) ବ୍ୟବସ୍ଥା ହୋଇଥିଲା। ସଞ୍ଜା ଯାହା ଆସିଥିଲା ଗୋଟାଏ ଘର ସେଥିରେ ପୁରିଗଲା। ସବୁ ଗଡ଼ଜାତରେ ଏମିତି ବ୍ୟବସ୍ଥା ଥାଏ। ଆଗନ୍ତୁକ ପାଇ ସଞ୍ଜା ଓ ଖଞ୍ଜା। ଯେଉଁ ସଞ୍ଜା ଆସିଥିଲା ସେଥିରେ ମାସକ ଯାଏ ଖାଦ୍ୟ ଚଳିବ। ପୁଣି ଅଭ୍ୟସ୍ତ ସରଘରିଆ ଏମିତି ଖଞ୍ଜିଯାଏ ଯେ ଅଭ୍ୟାଗତଙ୍କର କୌଣସି ଜିନିଷର

ଅଭାବ ରହିବ ନାହିଁ । ଦାନ୍ତଖୁଣ୍ଟା ଦାନ୍ତକାଠି ଠାରୁ ରାତ୍ରି ଭୋଜନାନ୍ତ ପାନୀୟ ପର୍ଯ୍ୟନ୍ତ। ନୂଆ ଦେୱାନ ରାଜଦର୍ଶନକୁ ଗଲେ ଦିନ ଦଶ କି ଏଗାରଟା ବେଳେ ତାଙ୍କୁ ଭେଟିବାକୁ। ସେ ନଅରରେ ଗୋଟାଏ ବଡ଼ ମାଣ୍ଡିକୁ ଆଉଜି ଗୋଟାଏ ଖରଡ଼ (ଗାଲିଚା) ଉପରେ ବିଜେ ହୋଇଥାଆନ୍ତି। ପାଞ୍ଚ ସାତ ହାତ ଦୂରରେ ଶ୍ରୀଛାମୁଙ୍କ ବାଆଁ ପାଶ ସମ୍ମୁଖରେ ଛାମୁକରଣ, ଗନ୍ତାଘରିଆ, ଧାନ ଘରିଆ, ପାଞ୍ଜିଆ, ଏମିତି ରାଜକର୍ମଚାରୀମାନେ ତଳେ ବସିଥାଆନ୍ତି। ତାଙ୍କ ପଛରେ ଆଠ ଦଶ ଜଣ ନିଯୋଗ ଖଟଣିଆ ଉଭା ହୋଇଥାନ୍ତି। ନୂଆ ଦେୱାନଙ୍କୁ ଦେଖିବାକୁ ମଫସଲରୁ ପୁଣି ପ୍ରଧାନ, ପାଞ୍ଜିଆ ମଧ୍ୟ ଆସିଥାନ୍ତି। ଦେୱାନ ତାଙ୍କ ପାଇ ପଡ଼ିଥିବା ଖରଡ଼ରେ ବସିଲେ। ଶ୍ରୀଛାମୁ ତାଙ୍କୁ ନଖ ଠାରୁ କେଶଯାଏ ଖୁବ ମନଯୋଗ ସହିତେ ଦେଖିନେଲେ। ଦେୱାନ ଭାରି ପତଳା। ହାତ ଦକ୍ଷିଣ ମୁଠାକୁ ପଛ ଆଡ଼କୁ ନେଇ ବୁଢ଼ା ଆଙ୍ଗୁଳି ବାରମ୍ବାର ହଲାଇ ପାଞ୍ଜିଆ ପାଖଲୋକ ପ୍ରଧାନଙ୍କ ଦୃଷ୍ଟିକୁ ଆଣୁଥାଆନ୍ତି। ପାତଳ ଶରୀରକୁ ଅନାଇ ଜଣାଇ ଦେଉଥାନ୍ତି ସ୍ଥୁଳକାୟ ନୁହଁନ୍ତି ତେଣୁ ଦେୱାନ ବୁଦ୍ଧିହୀନ । ନିଜକୁ ଅନ୍ୟ ମନସ୍କ ଦେଖାଇ ନୂଆ ଦିୱାନ ଏସବୁ ଦେଖୁଥାଆନ୍ତି। ଶ୍ରୀଛାମୁ ଜଣାଇଦେଲେ ବୁଢ଼ା ଆଙ୍ଗୁଠି ହଲାଇ ପତଳା ମଣିଷ କିଛି କାମରେ ନୁହେଁ। ଦିଆନଙ୍କୁ ଆଗ ପଚାରିଲେ 'ଦିଆନ ବାବୁ, ଆପଣ ପ୍ରତିଦିନ ଭାତରେ କେତେ ଘିଅ ଖାଆନ୍ତି।' ଦେୱାନ ଉତ୍ତର ଦେଲେ 'ଭାତରେ ଆଉ କେତେ ଘିଅ ଖାଇବି। ଅନ୍ଦାଜ ତୋଳାଏ। ଶ୍ରୀଛାମୁ ହୁକୁମ କଲେ ମୁହଁ ମୋଡ଼ି ତାଛଲ୍ୟରେ। "ପ୍ରତିଦିନ ଭାତରେ ଅଧସେର ଘିଅ ଖାଅ, ଦେଖିବ କେମିତି ହେବ, ଆମ ଶ୍ରୀଛାମୁ ମଣୋହିରେ ଦିନ ଦୁଇ ସେର ଘିଅ ନେଉ। ସରଘରିଆକୁ ହୁକୁମ୍ ହେଲା। ପ୍ରତିଦିନ ଦୁଇସେର ଘିଅ ଦିଆନଙ୍କ ପାଇ ପଠେଇ ଦେବାକୁ। ରାଜାଙ୍କ ଧାରଣା। ଘିଅ ନ ଖାଇଲେ ମୋଟା ହେବ ନାହିଁ। ମୋଟା ହୋଇ ନଥିବା ଲୋକଙ୍କର ବୁଦ୍ଧିବୃତ୍ତି କମ। ପ୍ରତିଦିନ ଦୁଇସେର ଘିଅ ଆସିବାକୁ ଲାଗିଲା। ଫକୀରମୋହନଙ୍କୁ ତାଙ୍କ ପେସକାର କହିଲେ ରାଜାଙ୍କୁ କିଛି କହିବେ ନାହିଁ। ପ୍ରୟୋଜନ ନ ଥିଲେ ମୋତେ କହିଲେ ବନ୍ଦ ହୋଇଯିବ। ରାଜା ବୃଦ୍ଧାଙ୍ଗୁଠି ହଲାଇ ପାଖଲୋକ ପାଞ୍ଜିଆ ପ୍ରଧାନଙ୍କୁ ନୂଆ ଦେୱାନଙ୍କ ବିଷୟରେ ମତାମତର ପେସକାର ଅର୍ଥ କରି ତାଙ୍କୁ ବୁଝାଇ ଦେଲେ । ପ୍ରଥମେ ସାକ୍ଷାତରେ ଆଉ କିଛି ନ ପଚାରି କେତେ ଘିଅ ନିତି ଖାଅ ପ୍ରଶ୍ନର ଆବଶ୍ୟକତା ଫକୀରମୋହନ ବୁଝିଗଲେ।

ଥରେ ଶ୍ରୀଛାମୁ କଟକ ବିଜେ ହୋଇଥିଲେ । ଶୁଣି ଆଜ୍ଞା ହେଲେ କଟକରେ ଗୋଟାଏ କଲେଜ ଘର ଅଛି। ସେଠାରେ ପିଲାମାନେ ପାଠ ପଢ଼ନ୍ତି। ସେଇଟା କେମିତି

ଜିନିଷ ଦେଖିଯିବାର ତ ଉଚିତ। ଶ୍ରୀଛାମୁ ସ୍ୱୟଂ କଲେଜରେ ଉପସ୍ଥିତ ହେଲେ। ପ୍ରଫେସରମାନେ ଖୁବ ଆଦର ଯତ୍ନ କରି ତାଙ୍କୁ କଲେଜର ସମସ୍ତ ଶ୍ରେଣୀ ବୁଲି ଦେଖାଇଲେ। ଶେଷରେ ଲାଇବ୍ରେରୀ ଘରେ ବସାଇ ଗୋଟାଏ ଭିଜିଟ୍‌ର ବହି ଓ ଦୁଆତ କଲମ ଶ୍ରୀଛାମୁରେ ରଖିଦେଲେ। ମଣିମା ପଚାରି ଆଜ୍ଞା ହେଲେ "ଏଇଟା କଣ"। ଉତ୍ତର ମିଳିଲା ଏଇଟା ଭିଜିଟ୍‌ର ବହି। ଆପଣ କଲେଜରେ କଣ ଦେଖିଲେ ସେ ସମ୍ବନ୍ଧରେ ଆପଣଙ୍କର ମନ୍ତବ୍ୟ ଏହି ବହିରେ ଲେଖିଦେବେ। ରାଜାସାହେବ କହିଲେ ହଁ ହଁ ଆମ୍ଭ ଛାମୁରୁ ଲେଖି ଆଜ୍ଞା କରିବୁ। ବୋଲ, ବୋଲ କେଉଁଠାରେ ଲେଖିବୁ। ଜଣେ ପ୍ରଫେସର ବହି ଖୋଲି ସମ୍ମୁଖରେ ଥୋଇଦେଲେ। ଶ୍ରୀଛାମୁରୁ ଲେଖି ଆଜ୍ଞା ହେଲା ରାଜା ଶ୍ରୀଚୈତନ୍ୟ ଭଞ୍ଜ ଦେଓ ରାଜା କିଲ୍ଲେ ଦଶପଲ୍ଲା ଏବଂ ଯୋରୁମୋ। ଲେଖା ଚାଲିଛି ବିଶ୍ରାମ ନାହିଁ। ତିନି ଚାରି ପୁଡ଼ା ଲେଖା ହୋଇଗଲାଣି। ବହି ଓ ମେଜର ଅଧା କାଳି ପୂର୍ଣ୍ଣ ହୋଇଗଲାଣି। କଲମ ଥୋଇ ଶ୍ରୀଛାମୁ ବିଜେ ଆଜ୍ଞା ହେଲେ। ସେତେବେଳେ ସବୁ ପ୍ରଫେସର ବଙ୍ଗାଳୀ। ମେଜ ଚାରିପାଖେ ଛିଡ଼ା ହୋଇଥାଆନ୍ତି। ଶ୍ରୀଛାମୁଙ୍କ ହସ୍ତର ପ୍ରଖରତା ଦେଖି କେଜାଣି କଣ ରାଜାସାହେବ ସବୁ ମନ୍ତବ୍ୟ ଦେଇଗଲେ। ଡ଼ାକ ପଣ୍ଡିତଙ୍କୁ। ସେ ପଢ଼ି ଶୁଣାଇଲେ। ସମସ୍ତେ ହସି ହସି ଅସ୍ଥିର। ପ୍ରଫେସରମାନେ ଶୁଣି ଭାରି ହସ ହସିଲେ। ଭିଜିଟ୍‌ର ବହିର ଚାରିପୁଡ଼ା କାଳିମୟ ହୋଇଯାଇଥିଲା।

ଆହାର, ପରିଧେୟ, କଥୋପକଥନ, ଆମୋଦ ପ୍ରମୋଦ ଆଦି ସମସ୍ତ ବିଷୟରେ ରାଜା ସାହେବଙ୍କ ଆଚରଣ ଅତ୍ୟନ୍ତ ଅଦ୍ଭୁତ ଓ ଅମାନୁଷିକ ଥିଲା। ଖୋଦ ରାଜା ସାହେବ କହନ୍ତି ଆମେ କଣ ଆଉ ମଣିଷ ପରି ଗୋଟାଏ। ଆମ ଛାମୁ ରାଜା, ମେଜେଷ୍ଟର, ଯାହା ଆଜ୍ଞା କରିବୁ ସେହି କଥା ଠିକ୍। ରାଜା ସାହେବଙ୍କ ଗନ୍ତାଖଦି ଓସାର ଚାରିହାତ ଓ ଲମ୍ବ ପନ୍ଦର ଷୋଳ ହାତ। ଶ୍ରୀଛାମୁଙ୍କ ପହଣ୍ଡି ବିଜେବେଳେ ଗୋଟାଏ ଭଣ୍ଡାରି କୁଞ୍ଚ ଧରି ପଛରେ ଚାଲେ। ବ୍ରହ୍ମପୁରର ବିନ୍ଧାଣୀ ରତ୍ନ ବୋଲି ଗୋଟାଏ ଡେରା। ଶ୍ରୀଛାମୁଙ୍କୁ ଲାଗି ଖଦି ଆଣି ଦିଏ। ଚପକନ ତିଆରି ସେମିତ। ଯେତେ ଓସାରେ ହେଉ ପଛକେ ଦଶବାର ଗଜ କପଡ଼ା ଲାଗେ। ବିଚିତ୍ର ଢ଼ିଲା ପୋଷାକର ଆକାର। ଦରଜି ଓଜର କଲେ ଆଜ୍ଞା ହୁଏ 'ଆରେ, କଟକର ବାବୁମାନଙ୍କର ଲୁଗା କିଣିବାକୁ ଟଙ୍କା ନାହିଁ, ସେମାନେ କାଙ୍ଗାଳ। ଦେଖିଛୁ ଛାତିରେ କେମିତି ସେମାନଙ୍କର କପଡ଼ା ଟାଣି ହୋଇ ଭିଡା ହୋଇଥାଏ। ଦେଏ, ଦେଏ ଆଉ ଦି'ଗଜ ବଢ଼େଇ ଦେଏ। ପିଠି ଛାତି ଢ଼ିଲା କର।

ରାଜାଙ୍କ ମଣୋହି ସେମିତି ବିଚିତ୍ର। କୋଡ଼ିଏ ପଚିଶ ଦିନର ପଚା ଦହିରେ ଫଡ଼ାଏ ଆମ୍ବୁଲ ପକାଇ ଦିଆଯାଏ । ତା' ସାଙ୍ଗକୁ ଧାନୁଆଁ ଲଙ୍କା ଆଞ୍ଜୁଳାଏ ମିଶି ପାକ ହୁଏ। ସାଧାରଣ ଲଙ୍କାଠାରୁ ଧାନୁଆଁ ଲଙ୍କା ବେଶି ରାଗ। ପୋକପଡ଼ା ପନ୍ଦର ଦିନର

ଶୁଖୁଆ କି ମାଂସ ପାକ ହୁଏ। ଅନ୍ୟ ଦ୍ରବ୍ୟ ମଣୋହି ପାଇଥିଲେ ମଧ୍ୟ ଏ ଦୁଇଟି ଛାମୁଙ୍କର ଅତି ପ୍ରିୟ। ମାତ୍ର ସବୁଥିରେ ଯଥେଷ୍ଟ ପରିମାଣରେ ଘିଅ ଢଳାଯାଇଥାଏ। ଫକୀରମୋହନ ନୂଆ ନୂଆ କରି ଗଡ଼ରେ କୋବି, ମଟର, ମୂଳା, ସାଲଗମ ଆଦି ଚାଷ କରାଇଲେ। ଅନେକ ଚେଷ୍ଟା ଓ ଅନୁରୋଧ କରି ମଧ୍ୟ ରାଜାସାହେବଙ୍କୁ ଏସବୁ ଦ୍ରବ୍ୟ ଖୁଆଇ ପାରିଲେ ନାହିଁ। ଶ୍ରୀଛାମୁ ଥରେ ମାତ୍ର ପାଟିରେ ଦେଇ ଫୋପାଡ଼ି ଦେଲେ। ପ୍ରଧାନମାନେ ମଧ୍ୟ ଏହା ବ୍ୟବହାର କଲେ ନାହିଁ।

ଗଡ଼ରେ ରାମ ନବମୀ ଓ ଦୋଳ ବଡ଼ ପର୍ବ। ବହୁ ଜନ ସମାଗମ ହୁଏ। ଓଡ଼ିଶାର ଅନେକ ସ୍ଥାନରୁ ଦଶ ବାର ଦଳ ଗୋଟି ପୁଅ, ଲୀଳା କୀର୍ତ୍ତନ, ନର୍ତ୍ତକୀ ଓ ପାଲାବାଲାମାନେ ରାଜାଙ୍କ ଅନୁଗ୍ରହ ପାଇବାକୁ ଏକାଠି ହୁଅନ୍ତି। ଠାକୁରଙ୍କୁ ବିମାନରେ ବସାଇ ମଣ୍ଡପକୁ ନିଆଯାଏ। ମଣ୍ଡପରେ ଶ୍ରୀଛାମୁଙ୍କ ପାଇ ତିଆରି ସିଂହାସନରେ, ତା' ପରେ ସେ ବିଜେ ହୁଅନ୍ତି। ମଣ୍ଡପ ଉପରେ ଖରଡ଼ ବଡ଼ ବଡ଼ ମାଣ୍ଡି ପଡ଼ି ବସିବାର ବ୍ୟବସ୍ଥା ହୋଇଥାଏ। ସେଇଠି ଶ୍ରୀମସ୍ତକରେ ପାଗ ଲାଗି ଶ୍ରୀଅଙ୍ଗରେ ଅଳଙ୍କାର ଲାଗି କରାଯାଏ। ନାନା ପ୍ରକାରର ରତ୍ନ ଜଡ଼ାଉ ଅଳଙ୍କାର, ଖୁବ୍ ଓଜନିଆ ସ୍ଥୁଳ ଅଳଙ୍କାର ବୋଝେ ଥାଏ। ଲାଗି ସରିବାକୁ ଅଧ ଘଣ୍ଟାଏ ଲାଗେ। ସେହି ସମୟରେ ଦି'ଡାଳିଆ ପୁଞ୍ଜାଏ ମଶାଲ ଜଳୁଥାଏ। ଅର୍ଥାତ୍ ଆଠଟା ମଶାଲ - ଖୁବ୍ ଆଲୁଅ ହୁଏ। ଶ୍ରୀଛାମୁ ବାରିକମାନଙ୍କୁ ଆଦେଶ ଦିଅନ୍ତି, ଆରେ ମଶାଲ, ଆଉ ପାଖକୁ ଆଣେ, ଆମ ଶ୍ରୀଅଙ୍ଗ ଲାଗି ସମସ୍ତେ ଦେଖନ୍ତୁ, ମଶାଲଚିମାନେ ଡରି ଥାଆନ୍ତି ଆଉ ପାଖକୁ ନେଲେ, ଶ୍ରୀଅଙ୍ଗରେ ନିଆଁ ଲାଗିଯିବ। ଅଳଙ୍କାର ଲାଗି ଉତ୍ତାରେ ଶ୍ରୀଛାମୁ ପାଖଲୋକଙ୍କୁ ପଚାରନ୍ତି ଆରେ ପାଖଲୋକ ଆମ ଶ୍ରୀଛାମୁ ଖୁବ ସୁନ୍ଦର ଦିଶୁଛନ୍ତି ନାଁ ନାଇଁ? ପାଖଲୋକ କଣ ନାଇଁ କହିବେ। ରାଜା ବିଚିତ୍ର ବେଶରେ ଶୋଭା ପାଉଥାନ୍ତି। ତା'ପରେ ଆରମ୍ଭ ହୁଏ ସଙ୍ଗୀତ ଆସର। ଯେତେ ପ୍ରକାରର ସଙ୍ଗୀତକାର ଥିବେ, ସମସ୍ତେ ଅର୍ଥାତ ବାୟକ, ସାରଙ୍ଗ, ବାୟା, ମୃଦଙ୍ଗ, ପଖାଉଜ, ବେହେଲା, ମନ୍ଦିରା, କରତାଳ ଧରି ବୃତ୍ତାକାରରେ ଠିଆ ହୋଇ ଯାହାର ଯାହା ଇଚ୍ଛା ଏକ ସମୟରେ ବଜାନ୍ତି। ବାଦ୍ୟଯନ୍ତ୍ରଧାରୀଙ୍କ ସାଙ୍ଗରେ ଗୋଟି ପୁଅ, ଲୀଳା ପିଲା, ନର୍ତ୍ତକୀ, ପାଲାବାଲା ସମସ୍ତେ ଏକାବେଳେକେ ଧାନ ବେଙ୍ଗେଲାରେ ବଳଦ ବୁଲିବା ଭଳି ବୁଲି ବୁଲି ନାଚି ନାଚି ଗାନ କରନ୍ତି। ଏ ବିଚିତ୍ର ଅଭିନୟର ରସାସ୍ୱାଦନ ଶ୍ରୀଛାମୁ ଓ ତାଙ୍କ ପାଖଲୋକ ଏକା କରିବାକୁ ସମର୍ଥ ଥାଆନ୍ତି। ବ୍ରହ୍ମପୁରରୁ ନାମଜାଦା କୁଶଳୀ ନର୍ତ୍ତକୀମାନେ ରାଜ ଅନୁଗ୍ରହ ନିମନ୍ତେ ଆସନ୍ତି। ସେମାନଙ୍କର ଖ୍ୟାତି ଓଡ଼ିଶାରେ ଥାଏ। ମାତ୍ର ଯେହେତୁ ସେମାନେ ମୋଟି ନୁହଁନ୍ତି ତେଣୁ ଅସୁନ୍ଦର ଓ ନୃତ୍ୟ ବିଦ୍ୟାରେ ଅପାରଗ। ଶ୍ରୀଛାମୁ ସେମାନଙ୍କୁ ଆଦର

କରନ୍ତି ନାହିଁ। ଅସୁନ୍ଦରୀ ସଙ୍ଗୀତ ଅନିପୁଣା, କାଳି, କୁତ୍ସିତା ବୁଢ଼ୀ ହେଉ ପଛକେ ଯଦି ମୋଟି ଥାଏ ଗାଇ ନାଚି ନ ଜାଣି ମଧ ସେ ଶ୍ରୀଛାମୁଙ୍କର ଦରବାରରେ ଡିଆଁ ଡେଇଁ କରି ତୁଚ୍ଛାଟାରେ ପାଟି କଲେ ପୁରସ୍କାର ପ୍ରାପ୍ତିର ଯୋଗ୍ୟ ହୋଇଥାଏ।

ରାଜା ସାହେବଙ୍କର ଅଭ୍ୟାସ ଯେ କେହି ବିଦେଶୀ ଲୋକ କୌଣସି କାର୍ଯ୍ୟ ଉପଲକ୍ଷେ ଶ୍ରୀଛାମୁଙ୍କୁ ଆସିଲେ ତାକୁ ଗନ୍ତାଘର ଦେଖାଇ ଆଣିବାକୁ ସର ଘରିଆକୁ ହୁକୁମ ହୁଏ। ସେ ଆଗନ୍ତୁକଙ୍କୁ ନେଇ ଗନ୍ତାଘରେ ପାଟ ମଠା ଲୁଗା, ସୂତା ଲୁଗା ଅଳଙ୍କାର ଗୋଟି ଗୋଟି କରି ଦେଖାଇ ଦିଅନ୍ତି। ରାଜା ସାହେବ ତା'ପରେ ତାଙ୍କୁ ପଚାରନ୍ତି 'ହଇହେ' ବାବୁ ଏତେ ପାଟ ଯଥା ସୁନାରୂପା ଆଉ କାହାଘରେ ଅଛି କି ? ଆମେ ରାଜା ଆମର ସିନା ଅଛି। ଆମ ଘରେ ଥିବ ଆଉ କାହା ଘରେ କଣ ରହିବ।' ତାଙ୍କ ପ୍ରକୃତି ସମସ୍ତଙ୍କୁ ଜଣା। କାର୍ଯ୍ୟନଷ୍ଟ ହେବା ଡରରେ ଆଗନ୍ତୁକ ମାନି ଯାଇ 'ଆଜ୍ଞା ଆଜ୍ଞା ଶ୍ରୀଛାମୁ ଠିକ୍ କହୁଛନ୍ତି' ବୋଲି କହେ। ଏସବୁ କଥା ଦେଖି ଶୁଣି ଦେଓ୍ୱାନଙ୍କୁ ଲାଜ ଲାଗେ। ମନ କଷ୍ଟ ହୁଏ। ଦିନେ ରାଜାଙ୍କୁ କହିଲେ ବାହାର ଲୋକଙ୍କୁ ଗନ୍ତାଘର ଦେଖାଇବେ ନାହିଁ। ସେମାନେ ସିନା ଦେଖି ସାରି କିଛି କଥା କହୁନାହାଁନ୍ତି। ମାତ୍ର ସହର ଜାଗା ମାନଙ୍କରେ ଅନେକ ବେପାରୀ ମହାଜନ ଏହାଠାରୁ ଢେର ସମ୍ପତ୍ତି ରଖିଛନ୍ତି। ସେଇ ଲୋକେ ଛାମୁଙ୍କ କଥା ଶୁଣି ପଛରେ ହସୁଥିବେ। ଏଥିରେ ଶ୍ରୀଛାମୁ ଅପମାନିତ ବୋଧ କଲେ। ପାଖ ଲୋକଙ୍କୁ କହିଲେ ଦେଖିଲ ଆମକୁ କେମିତି ଅପମାନ କଲା। ଏ ଦେଓ୍ୱାନ ସାଙ୍ଗରେ ଆମର ପଟିବ ନାହିଁ। ଆଗରୁ ଦି'ଜଣ ଦେଓ୍ୱାନ ଯାଇଥିଲେ । ପାଖଲୋକ ଭୟରେ କହନ୍ତି 'ଆଜ୍ଞା ମଣିମା'। ଦେଓ୍ୱାନ ବାବୁଟା ଭଲ ଲୋକ ନୁହେଁ। ଶ୍ରୀଛାମୁ ଯେଉଁ ଆଜ୍ଞା ଦେଉଛନ୍ତି ତାହା ଠିକ୍ ନୁହେଁ ସେ କହିବା କଥାଟା କଣ ସତ୍ୟ ହେବ।

ମାଲି ମକଦ୍ଦମା କମ। ପ୍ରଜାମାନେ, ବେଶି କରି କନ୍ଧମାନେ ସରଳ। ଖଜଣା କିଛି ଦିଅନ୍ତି ନାହିଁ । ଥରେ କମିଶନର ସେମାନଙ୍କୁ ବୁଝାଇଲେ ତମେ ସବୁ ପ୍ରଜା, ରାଜାଙ୍କୁ ବରଷକୁ ହଳ ପିଛା କଟକୀ ସେରେ ଦିଅ । ପ୍ରଜାଲୋକ ତାଙ୍କ ଭିତରେ ବିଚାର କଲେ ସାହେବ କହୁଛି ଆମେ ନିଶ୍ଚେ ଦେବା। ହେଲେ କଟକୀ ସେରୁ ଟାଏ। କେତେ ହୋଇଥିବ ଆମେ ଦେଇପାରିବାନାହିଁ। ଆମର ତାମ୍ବିଏ ଦେବା। ତାମ୍ବିକ ତିନି ସେର ହେବ। ଦେଓ୍ୱାନ ରାଜ୍ୟରେ ରାସ୍ତା ତିଆରି କରି ବେଲପଡ଼ା ଯାଏ ଗଡ଼ରୁ ନେବାକୁ ଖରଚ ବ୍ୟବସ୍ଥା କଲେ। ମାତ୍ର ରାଜା ବୁଝିଲେ ରାସ୍ତା ତ ସବୁକାଳେ ଅଛି। ସବୁଲୋକ ସବୁବେଳେ ତା' ଉପରେ ଯାଉଛନ୍ତି। ସେଥିପାଇଁ ପୁଣି ପଇସା ଖର୍ଚ୍ଚ କାହିଁକି ? ତେଣୁ ଅର୍ଥ ମଞ୍ଜୁର ହେଲାନାହିଁ। ପାଣ କଇଦୀମାନଙ୍କୁ ନେଇ ରାସ୍ତାକାମ ଆରମ୍ଭ ହେଲା। ବେଲପଡ଼ାରୁ ମହାନଦୀରେ କଟକ

ଆଡ଼େ ଡଙ୍ଗାରେ ଯା' ଆସ ହୁଏ। କିଛିଦିନ କାମ ଚାଲିଛି। ଅଧ ମାଇଲ ରାସ୍ତା ହୋଇଛି ରାଜା ସାହେବଙ୍କର ଗୋଟିଏ ପୁଅ ହେଲା। ସେହି ଆନନ୍ଦ ଉତ୍ସବ ଅବସରରେ କଇଦୀମାନଙ୍କୁ ଛାଡ଼ କରି ଦିଆଗଲା। କାମ ଆଉ ଆଗେଇଲା ନାହିଁ।

ରାଜାଙ୍କ ସ୍ୱଭାବ ବିଚିତ୍ର। କାହା କଥା ଅନୁସାରେ କାମ କରିବା ତାଙ୍କର ରାଜୋଚିତ ଅଧିକାର ଉପରେ ଆଘାତ। ଥରେ ତାଙ୍କୁ ଶର୍ଦ୍ଦି ହୋଇଥାଏ। ଦେଓ୍ୱାନ ଦେଖି କହିଲେ ଶର୍ଦ୍ଦି ହୋଇଛି ଆଜି ସ୍ନାନ କରନ୍ତୁ ନାହିଁ। ଶ୍ରୀଛାମୁ କହିଲେ କଣ କହିଲ ଆମର ଆଜି ମାଜଣା ବଢ଼ିବ ନାହିଁ। କିଏ ପାଖଲୋକ ଅଛରେ, ପାଣି ଆପଟକୁ ଧରି ଆଣ। ଆମ ଛାମୁରୁ ଆଜି ଜଲଦି ଦେହପାଣି ହେବ। ସେଇଆ ହେଲା। ବହୁତ ଗାଧୋଇଲେ। ଫଳରେ ଜ୍ୱରରେ ପଡ଼ିଲେ। ରାଜବୈଦ୍ୟ ଦେଓ୍ୱାନଙ୍କୁ କହନ୍ତି ତାଙ୍କ ଛଡ଼ା ଆଉ କେହି ରାଜାଙ୍କ ଚିକିତ୍ସା କରିପାରିବେନାହିଁ। ଯାହା କହିବେ ରାଜା ତାର ବିପରୀତ କରିବେ। ତେଣୁ ସେ ସବୁବେଳେ ଓଲଟା ବ୍ୟବସ୍ଥା ଦିଅନ୍ତି। ଖାଇବାକୁ ଥିଲେ ଲଙ୍ଘନ ବତାନ୍ତି । ରାଜା କହିବେ ଆମ ଛାମୁ ରାଜା ଆମେ କଣ ବୈଦ୍ୟ କଥା ମାନିବୁ। ଆଜି ଆମର ଶୀଘ୍ର ଠାଆ ହେବ।

ବର୍ଷାଦିନେ ଉତ୍ତର ଭାରତରୁ ନାଗା ସାଧୁମାନେ ଚର୍ତୁମାସ୍ୟା ପାଳିବାକୁ ଓଡ଼ିଶାକୁ ଆସନ୍ତି। ରାଜ୍ୟକୁ ଯାଆନ୍ତି। ଧର୍ମ ନାଁରେ ଅର୍ଥ ଲୁଣ୍ଠନ ଏମାନଙ୍କର ବ୍ୟବସାୟ। ଏମାନଙ୍କ ମଧ୍ୟରେ ବେଶି ଥାଆନ୍ତି ଭଣ୍ଡ ସାଧୁ। ଗ୍ରାମବାସୀମାନେ ସେମାନଙ୍କର ଦେବ ପୂଜା, ସାଧୁ ସେବା ପାଇ ଯଥେଷ୍ଟ ଟଙ୍କା ନ ଦେଲେ ବହୁତ ଜୁଲମ କରନ୍ତି। ଥରେ ଦଶପଲ୍ଲାର ମଫସଲ ଗାଁରେ ଗୁଡ଼ିଏ ସାଧୁ ପହଞ୍ଚିଲେ। ଗାଁରେ ଜଣେ ଧନବନ୍ତ ଗଉଡ଼ ପ୍ରଧାନ ଥିଲେ। ସେ ସାଧୁ ସେବା ପାଇଁ ଯଥେଷ୍ଟ ଅର୍ଥ ନ ଦେବାରୁ ଦୁଇଜଣ ସାଧୁ ତା' ଘରେ ଜବରଦସ୍ତି ପଶି ଘରର ଖୁଣ୍ଟ କବାଟ ସବୁ ଭାଙ୍ଗିବାକୁ ଲାଗିଲେ। ଗଉଡ଼ ସେ ଯୋଡ଼ାକ ସାଧୁଙ୍କୁ ଧରି ଖୁବ୍ ଜୋରରେ ବାଡ଼େଇବାରୁ ସେମାନେ ଗଡ଼କୁ ଆସି ରାଜା ସାହେବଙ୍କୁ ଗୁହାରି କଲେ। ସେହି ଗଉଡ଼ର ଅନେକ ଟଙ୍କା ପଇସା ଗାଈ ମଇଁଷି ଥିବା ପାଖଲୋକ ମଣିମାକୁ ଜଣାଇଲେ। ହୁକୁମ ହେଲା ଗଉଡ଼ର ଘର କୋରଖକୁ ଦାରୋଗା ଯାଅ। ସମସ୍ତ ସମ୍ପତ୍ତି ବୋହି ଆଣ। ପୁଲିସ୍ ଦାରୋଗାଙ୍କୁ ଏଇଟା ରୋଜଗାରର ବଡ଼ ବାଟ ମିଳିଲା। ସେ ପାଇକ ସଂଗ୍ରହ କରିବା ସମୟ ମଧ୍ୟରେ ଗଉଡ଼ ଧାଇଁ ଆସି ଦେଓ୍ୱାନଙ୍କୁ ବିକଳରେ ପଡ଼ି ନ୍ୟାୟ ପାଇଁ ପ୍ରାର୍ଥନା କଲେ। ଦେଓ୍ୱାନ କଚେରୀରେ ବସିଲେ, ମାଲ କୋରକ ହୁକୁମ ବନ୍ଦ କରିଦେଲେ। ଦାରୋଗା ଆପତ୍ତି କଲେ ଏମିତି ହେଲେ ସାଧୁ ଜମାଏତ ଏ କିଲ୍ଲାକୁ ଆସିବେ ନାହିଁ। ରାଜ୍ୟରୁ ଧର୍ମ ଛାଡ଼ିଯିବ। ଦାରୋଗାଙ୍କୁ ଦେଓ୍ୱାନ ଚୁପ କରାଇ ସାଧୁ ଦୁଇଟାଙ୍କୁ ତୁରନ୍ତ ରାଜ୍ୟ ଛାଡ଼ି ନ ଗଲେ ଗିରଫ କରି ଜେଲ୍‌ରେ ରହିବାକୁ ହୁକୁମ ଦେଲେ। ସେମାନେ

ତତ୍‌କ୍ଷଣାତ ପଳାଇ ଗଲେ। ରାଜା ସାହେବଙ୍କ ସହିତ ମତାନ୍ତର ହେଲା। ପାଖଲୋକଙ୍କୁ ସେ ଦେୱାନଙ୍କ ବିରୁଦ୍ଧରେ ଶୁଣାଇଲେ।

କମିଶନର ସୁପରିଟେଣ୍ଡେଣ୍ଟ ମେଟକାପ ସାହେବ କିଲ୍ଲା ପରିଦର୍ଶନକୁ ଆସିଲେ। ସବୁ ବିଭାଗ ଗୋଟି ଗୋଟି କରି ତଦାରଖ କଲେ। ଶେଷ ଦିନରେ ରାଜାସାହେବ ତାଙ୍କୁ କହିଲେ 'ଏ ଦେୱାନ ସାଙ୍ଗେ ଆମର ପଟିବ ନାହିଁ। ଆମକୁ ଆଉ ଗୋଟାଏ ଦେୱାନ ଦିଅ।' ଫକୀରମୋହନ, ସାହେବଙ୍କୁ ତାଙ୍କ କାର୍ଯ୍ୟରେ କଣ ତ୍ରୁଟି ଅଛି ବୋଲି ପଚାରିଲେ। ତ୍ରୁଟି କିଛି ନଥିଲା। ମାତ୍ର ସାହେବ କହିଲେ ରାଜାଙ୍କ ସହିତ ଯେତେବେଳେ ମତାନ୍ତର ହେଲାଣି ଏଠାରେ ରହି କିପରି ତୁମେ କାର୍ଯ୍ୟ କରିବ ? ତୁମେ ଚାଲିଗଲେ ମୁଁ ଅନ୍ୟତ୍ର ତୁମ୍ଭଙ୍କୁ କାର୍ଯ୍ୟ ନିଯୁକ୍ତି ଦେବି। ଦେୱାନ ଇସ୍ତଫା ଦେଇଦେଲେ। କମିଶନର ଅଫିସରୁ ଜଣେ ଅମଲା ନୂଆ ଦେୱାନ ହେଲେ।

ରାଜା ଚୈତନ୍ୟ ଦେଓଭଞ୍ଜଙ୍କ ଶାସନ ପରେ ଆଉ ଜଣେ ରାଜା ହେଲେ। କନ୍ଧ ପ୍ରଜାମାନଙ୍କର ପୁଞ୍ଜିଭୂତ ଅସନ୍ତୋଷ ଓ କ୍ରୋଧ ୧୯୧୪ ମସିହାରେ କନ୍ଧ ମେଳିରେ ପ୍ରକାଶ ପାଇଥିଲା। ରାଜାଙ୍କ ମୃତ୍ୟୁ ପରେ ସିଂହାସନ ଉତ୍ତରାଧିକାରୀ ପୋଷ୍ୟପୁତ୍ର ନାବାଳକ ଥିବାରୁ ରାଜ୍ୟ କୋଟ ଅଫ ୱାଡ଼ସ କରାଗଲା। ସରକାର ଭାବଗ୍ରାହୀ ବିଶ୍ୱାଳ ନାମରେ ଜଣେ ମ୍ୟାନେଜର ପଠାଇଲେ। ମାତ୍ର ତାଙ୍କ କାର୍ଯ୍ୟରେ ପ୍ରଜାମାନେ ଅସନ୍ତୁଷ୍ଟ ଥିଲେ । ବୈଷ୍ଣବ ଚରଣ ଦେଓ ନାମକ ମୃତ ରାଜାଙ୍କ ଜଣେ ଭାଇ ନିଜକୁ ରାଜ୍ୟର ଉତ୍ତରାଧିକାରୀ ଘୋଷଣା କରି କନ୍ଧମାନଙ୍କୁ ମତେଇଲେ ସରକାରୀ ରାଜ୍ୟ ପରିଚାଳନା ବିରୁଦ୍ଧରେ। ସେ କହିଲେ ରାଜା ହେଲେ ସେ ଜମିରୁ ଖଜଣା ଓ ଅନ୍ୟ ଟିକସ ଛାଡ଼ କରିଦେବେ। ଏଥିରେ ସହଜରେ ଉତ୍ତ୍ୟକ୍ତ ହୋଇଯାଉଥିବା କନ୍ଧମାନେ ବିଦ୍ରୋହୀ ହେଲେ । ଅନେକ ଦିନ ଯାଏ ଏହି ମେଳି ଚାଲିଲା। ସେମାନେ ରାଜ୍ୟ ଧନ ସମ୍ପତ୍ତି ଲୁଟ କଲେ। ମେଳିର ସର୍ଦ୍ଦାର ବୈଷ୍ଣବ ଦେଓଙ୍କୁ ଶେଷରେ ଧରାଗଲା। ରାଜଦ୍ରୋହ ଅପରାଧରେ ବିଚାର ହୋଇ ଦ୍ୱୀପାନ୍ତର ହେଲା ଓ ମେଳି ନିଷ୍ଠୁର ଭାବରେ ଦମନ କରାଗଲା। ହଜାର ହଜାର କନ୍ଧ ଆକ୍ରମଣରେ ମଲେ। ବହୁତ ଘରଦ୍ୱାର ପୋଡ଼ି ଦିଆଗଲା। ସେତେବେଳର ଜଣେ କଂଗ୍ରେସ କର୍ମୀ ଗୋବିନ୍ଦ ଚନ୍ଦ୍ର ମିଶ୍ର ଏହି ବିଷୟ ଦେଶର ସର୍ବତ୍ର ପ୍ରଚାର କରାଇଲେ। ଓଡ଼ିଶାର ତତ୍କାଳୀନ ନେତାମାନେ ଏହାର ପ୍ରତିବାଦ କଲେ। ଦୀନବନ୍ଧୁ ସି.ଏଫ ଆଣ୍ଡ୍ରୁଜ ବଡ଼ଲାଟ ହାର୍ଡିଞ୍ଜିଙ୍କୁ ଏ ଅମାନୁଷିକ ଅତ୍ୟାଚାର ବିଷୟ ଜଣାଇଲେ। ଦଶପଲ୍ଲା ଗଡ଼ଜାତ ଭାରତବର୍ଷରେ ଏହି ସମୟରେ ନାମ କମେଇଥିଲା।



# ନୀଳଗିରି ରାଜା
## ଶ୍ରୀକୃଷ୍ଣ ଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ

୧୯୪୭ ମସିହାରେ ଭାରତ ସରକାରଙ୍କୁ ରାଜ୍ୟ ପରିଚାଳନା ହସ୍ତାନ୍ତର ନିମିତ୍ତ ନୀଳଗିରି ରାଜ୍ୟ ଖ୍ୟାତି ଅର୍ଜିଥିଲା । ଏହାର ଶେଷ ରାଜାଙ୍କର ନାମ ଥିଲା ଶ୍ରୀ କିଶୋର ଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ। ଶ୍ରୀକୃଷ୍ଣ ଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ତାଙ୍କର ପୂର୍ବ ପୁରୁଷ ଥିଲେ। ବ୍ୟାସକବି ଫକୀରମୋହନ ଏହାଙ୍କର ଦେଓ୍ୱାନ ଥାଇ ତାଙ୍କ ଅମଳର ରାଜ୍ୟ ଶାସନ ଓ ତାଙ୍କ ଚରିତ୍ରର ଚିତ୍ର ଆଙ୍କିଛନ୍ତି ନିଜ ଆତ୍ମଜୀବନୀରେ। ନୀଳଗିରି ରାଜ୍ୟର ଆୟତନ ୨୭୮ବର୍ଗ ମାଇଲ। ଲୋକସଂଖ୍ୟା ୬୮୫୧୪। ରାଜ୍ୟର ଆୟ ପ୍ରାୟ ଦୁଇଲକ୍ଷ ଟଙ୍କା ଓ ରାଜା ୩୯୦୦ଟଙ୍କା ପେସ୍‌କିସ୍ ଦେଉଥିଲେ। ବ୍ରିଟିଶ ଓଡ଼ିଶାର ବାଲେଶ୍ୱର ଓ ମୟୂରଭଞ୍ଜ ଦେଶୀୟ ରାଜା ଏହି ରାଜ୍ୟକୁ ଲାଗି ରହିଛି। ନୀଳଗିରିରେ ଅନେକ ଗୁଡ଼ିଏ ମୁଗୁନି ପଥର ଖଣି ଅଛି ଓ ଏହି ମୁଗୁନି ପଥରରେ ନିର୍ମିତ ବାସନ ଭାରତ ପ୍ରସିଦ୍ଧ।।

ଫକୀର ମୋହନଙ୍କୁ ଦେଓ୍ୱାନ ଭାବରେ ରାଜା କୃଷ୍ଣଚନ୍ଦ୍ର ଆଦରର ସହିତ ଗ୍ରହଣ କଲେ। ତାଙ୍କ ପୂର୍ବ ଦେଓ୍ୱାନ ଦାମୋଦର ମହାପାତ୍ର ରାଜା ଓ ତାଙ୍କ ବାବୁଭାଇଙ୍କ ମଧ୍ୟରେ ଥିବା ବିବାଦ ତୁଟାଇବାରେ ଉଦ୍ୟମ ନ କରି ଏହାକୁ ବଢ଼ାଇବାର କାରଣ ଥିଲେ ବୋଲି ଜାଣି ସୁପରିଟେଣ୍ଡେଣ୍ଟ ତାଙ୍କୁ ବଦଳି କରି ନୂଆ ଦେଓ୍ୱାନ ପଠାଇଥାନ୍ତି। ରାଜ୍ୟର ସମସ୍ତ ଦାୟିତ୍ୱ ରାଜା ଦେଓ୍ୱାନଙ୍କୁ ଛାଡ଼ି ଦେଇ ନିଜେ କିଛି ବୁଝିଲେ ନାହିଁ। ନୀଳଗିରି ଗଡ଼ଠାରୁ ବାଲେଶ୍ୱର ପ୍ରାୟ ୧୧ ମାଇଲ ବାଟ, ବର୍ଷାଦିନେ ଯିବା ଅଯୋଗ୍ୟ ହୁଏ। ଗଡ଼ଠାରୁ ଶେରଗଡ଼ ଚାରି ମାଇଲ । ସେଠି ଚଟିଘର ଅଛି। ଶେରଗଡ଼ ଠାରୁ ବାଲେଶ୍ୱରକୁ ଯିବା ସହଜ। ସବୁଦିନିଆ ରାସ୍ତା ତିଆରି ପାଇଁ ଦେଓ୍ୱାନ ଉଦ୍ୟମ କଲେ। ଗଡ଼ ଭିତରେ ହାଟ ବଜାର କିଛି ନଥାଏ। ବାହାରର କେହି ବେପାରୀ ଆସି ଦୋକାନ ଖୋଲିଲେ ଅମଲା ଓ ରାଜାଙ୍କ ପାଖଲୋକ ବାକିରେ ଜିନିଷ ନେଇ ଆଉ ଋଣ ପରିଶୋଧ କରନ୍ତି ନାହିଁ। ସେ କ୍ଷତି ସହି ପଳାଇଯାଏ। ଗଡ଼ର ଆମ୍ବତୋଟାରେ ଗୋଟାଏ ହାଟ ବସାଇଲେ। ସପ୍ତାହକୁ

ଏହା ଦୁଇଥର ବସୁଥିଲା। ରାଣୀଙ୍କ ନାମ ଅନୁସାରେ ଏହାର ନାମ ନିର୍ମଳା ହାଟ ଦିଆଗଲା। ଚାରି ପାଞ୍ଚ କୋଶ ଦୂରରୁ ଲୋକେ ଏହି ହାଟକୁ ଆସନ୍ତି । ମଙ୍ଗଳବାର ଓ ଶନିବାର ଏହି ହାଟ ବସେ ଓ ବିକାକିଣା ହୁଏ। ଏହା ଲୋକଙ୍କର ବହୁତ ଉପକାର କଲା। ଏହା ବର୍ତ୍ତମାନ ସ୍ଥାୟୀ ହୋଇଅଛି। ଗଡ଼ରେ ପାଠପଢ଼ାର କିଛି ସୁବିଧା ନଥାଏ। ରାଜାଙ୍କ ରକ୍ଷିତାର ଦୁଇଟି ସନ୍ତାନ ଓ ବାବୁ ସାହେବଙ୍କର ଗୋଟିଏ ପୁଅ। ସମସ୍ତେ ବାରରୁ ଚଉଦ ବର୍ଷର ହେବେ । ଅନ୍ୟ ଅବାଞ୍ଛିତ ସାଙ୍ଗମାନଙ୍କ ସହିତ ମିଶି ଦିନରାତି ଖେଳି ବୁଲୁଥାନ୍ତି। ଗୋବରା ଚଢ଼େଇ ପୋଷିବାରେ ଆନନ୍ଦ ପାଉଥାନ୍ତି। ଜଣେ ମାଷ୍ଟର ଅଣାଗଲେ। ସେମାନଙ୍କୁ ବିଦ୍ୟା ଶିକ୍ଷା ଦିଆଗଲା। ରାଜ୍ୟ ମଧ୍ୟରେ ଅନେକ ଗୁଡ଼ିଏ ବ୍ରାହ୍ମଣ ଶାସନ ଥାଏ। ସେଠାରେ ବିପ୍ରମଣ୍ଡଳୀ ନିଷ୍କର ଭୂମି ଭୋଗକରି ଆନନ୍ଦରେ ଥାଆନ୍ତି । ବିଦ୍ୟାରେ ଆଗ୍ରହ ନଥାଏ । ସେମାନଙ୍କୁ ଏକାଠିକରି ବ୍ରାହ୍ମଣମାନଙ୍କ ପକ୍ଷରେ ବିଦ୍ୟାଶିକ୍ଷା ବିଶେଷକରି ସଂସ୍କୃତ ଜ୍ଞାନର ଆବଶ୍ୟକତା ଦେୱାନ ବୁଝାଇଦେଲେ । ଗଡ଼ରେ ଗୋଟିଏ ସଂସ୍କୃତ ଟୋଲ ବସାଇଲେ । ପିଲାମାନେ ସେଠାରେ ପଢ଼ିଲେ ମାତ୍ର ମଫସଲରୁ ପଢ଼ିବାକୁ ଛାତ୍ର ଆସିବା କଷ୍ଟକର ଥିଲା । ଦେୱାନ ହିସାବ କଲେ ନିଷ୍କର ମାଣ ପ୍ରତି ଯଦି ଦୁଇ ପଇସା ଭେଦା ଅସୁଲ ହୁଏ ତେବେ ସେହି ଆୟରେ ଅନେକ ଗୁଡ଼ିଏ ଟୋଲ କରାଯାଇପାରିବ। ବ୍ରାହ୍ମଣମାନଙ୍କୁ ଡ଼କାଇ ଏହି ପ୍ରସ୍ତାବ ଦେଲେ। ବ୍ରାହ୍ମଣମାନେ ଭୟ କଲେ ଦୁଇ ପଇସାରେ ଆରମ୍ଭ ହୋଇ ଏହା ପରେ ଟଙ୍କାଏ ହୋଇପାରେ। ଭେଦା ନାଁରେ ଟିକସ ଅସୁଲ, କେହି ଦେଲେ ନାହିଁ। ଦେୱାନ ତାଙ୍କର କୁହାଳିଆ ମୁଖିଆ ଜଣଙ୍କର ଗୋଟିଏ ଟଟୁଘୋଡ଼ା କୋରକ କରି ନିଲାମ କଲେ । ଅର୍ଥ ଅସୁଲ କଲେ। ମାତ୍ର ସମୂହ ବିରୋଧ ଫଳରେ ଭେଦା ଅସୁଲ ହୋଇପାରିଲା ନାହିଁ। ବ୍ରାହ୍ମଣ ସମାଜ ଦେୱାନଙ୍କ ମନମୁଖୀ ଆଚରଣରେ ବିରୋଧି ହୋଇ ଉଠିଲେ।

ରାଜ୍ୟରେ ମୁଗୁନି ପଥର ଖଣିରୁ ପଥର ବାହାର କରି ପଥୁରିଆମାନେ ବାସନ, ଗିନା, ଗିଲାସ ଆଦି ତିଆରି କରି ଭଲ ଦି'ପଇସା ରୋଜଗାର କରନ୍ତି। ସେମାନଙ୍କ ପଥର କାଟୁଥିବା ନିହାଣ ମୁଗୁନି ଉପରେ ଖଜଣା ଧାର୍ଯ୍ୟ ହୋଇଥାଏ। ସେମାନଙ୍କଠାରୁ ଏହା ଅସୁଲ କରିବା ଦାୟିତ୍ୱ ମାହାଲଦାରର ଥାଏ। ପ୍ରତିବର୍ଷ ନିଲାମ ହୁଏ। ଯେଉଁ ବ୍ୟକ୍ତି ଅତ୍ୟଧିକ ଜମା ଦିଏ ତାକୁ ଏହା ଦିଆଯାଏ। ପ୍ରାୟ ବାର୍ଷିକ ଅଢ଼େଇ ହଜାର ଟଙ୍କା ପର୍ଯ୍ୟନ୍ତ ଏହା ନିଲାମରେ ଯାଏ। ଫକୀରମୋହନଙ୍କ କାର୍ଯ୍ୟକାଳର ପ୍ରଥମ ବର୍ଷରେ କହ୍ନେଇ ମିଶ୍ର ବୋଲି ଜଣେ ଲୋକ ଚାରି ହଜାର ଟଙ୍କା ଦେଇ ଖଣି କବୁଲିୟତ କରି ନେବାକୁ ଦରଖାସ୍ତ

କଲା । ଅଧିକ ଟଙ୍କା ଦେବାର କାରଣ ସେ ବୁଝାଇଲେ । ଅନେକ ଲୋକ ଚୋରା ପଥର କାଟୁଛନ୍ତି । ସେମାନଙ୍କୁ ଧରିଲେ ସେ ଅଧିକ ଆୟ କରିବେ । ତାଙ୍କୁ ସନନ୍ଦ ଦିଆଗଲା । ପଥୁରିଆମାନେ ଜଣେ ପଟା ନେଲେ - ତା'ର ପରିବାରର ଭାଇ ଓ ପୁଅ ମିଶି ୪/୫ଜଣ ନିହାଣ ମୁଗୁରରେ ପଥର କାଟନ୍ତି । କହ୍ନେଇ ମିଶ୍ର ସମସ୍ତଙ୍କ ଠାରୁ ଅଲଗା ଅଲଗା ଖଜଣା ଦାବିକଲେ, ନଦେଲେ ପଥର କାଟିବା ମନା କରାଗଲା । ପଥୁରିଆମାନଙ୍କୁ ଏହା ବାଧିଲା । ରାଜ୍ୟର ଅନ୍ୟ ଲୋକମାନଙ୍କ ତୁଳନାରେ ଏମାନେ ଶିଆଣିଆ ଥିଲେ । ସମସ୍ତେ ଏକମେଳ ହୋଇ ପଥର କାଟିବା ବନ୍ଦ କଲେ । ମାହାଲଦାର କହ୍ନେଇ ମିଶ୍ର ସେମାନଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର କଲେ । ସେ ଥିଲେ ସେଇ ଇଲାକାର ପ୍ରଜା । ପଥୁରିଆମାନେ ତାଙ୍କ ଅତ୍ୟାଚାରମାନ ଲେଖି ତାଙ୍କୁ ବରଖାସ୍ତ କରିବାକୁ ଦରଖାସ୍ତ ଦେଲେ । ଦେଓ୍ୱାନ ଦେଖିଲେ ତାଙ୍କୁ ନିକାଲି ଦେଲେ ବୃଦ୍ଧି ଜମା ଅସୁଲ ହୋଇପାରିବ ନାହିଁ । ରାଜା ମନୋନୀତ ବ୍ୟକ୍ତିଙ୍କୁ ପ୍ରଜାଙ୍କ ପ୍ରାର୍ଥନାରେ କାଢ଼ି ଦେବା ସରକାରଙ୍କ ସଂଭ୍ରମ ନଷ୍ଟ କରିବ । ସେ କହ୍ନେଇ ମିଶ୍ରଙ୍କୁ କାଢ଼ିବା ପ୍ରାର୍ଥନା ଅଗ୍ରାହ୍ୟ କଲେ । ଏହା ପ୍ରଜାମାନଙ୍କୁ ଉତ୍‌କ୍ଷିପ୍ତ କଲା । ସେମାନେ ସରକାରଙ୍କର ସବୁ ପ୍ରକାର ହୁକୁମ ଅଗ୍ରାହ୍ୟ କରିବାରେ ଲାଗିଲେ ।

ରାଜା କୃଷ୍ଣଚନ୍ଦ୍ର ଦେଓ୍ୱାନଙ୍କର ଏହି କାର୍ଯ୍ୟରେ ବିରୋଧି ଥିଲେ ମଧ୍ୟ ବାହାରେ କିଛି ପ୍ରକାଶ କରୁନଥିଲେ । ଅତି ଆଦର ଓ ଆନ୍ତରିକତାର ସହିତ ସେ ତାଙ୍କ ସହିତ ବ୍ୟବହାର କରୁଥିଲେ ଓ ତାଙ୍କ ବାସଗୃହକୁ ଆସି ସଦିଚ୍ଛା ଦେଖାଉଥିଲେ । ରାଜା ଅପୁତ୍ରିକ ଥିଲେ । ତାଙ୍କର ଭାଇ ବାବୁ ସାହେବ ଭ୍ରମରବର ହରିଚନ୍ଦନଙ୍କର ଏକମାତ୍ର ପୁତ୍ର ଜନ୍ମ ହେବାବେଳେ ରାଜା ସାହେବ ଏହାକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବେ ବୋଲି ପ୍ରକାଶ କରିଥିଲେ । ମାତ୍ର ପରେ ସେହି ପୁତୁରାକୁ ପରିତ୍ୟାଗ କରି ଜଣେ ଫୁଲବେହି (ଫୁଲଟିଏ ଦେଇ ବିବାହିତ) ପତ୍ନୀର ସନ୍ତାନ ଉମାକାନ୍ତକୁ ଗ୍ରହଣ କରିବା ପ୍ରକାଶ କଲେ । ପୂର୍ବରୁ ଦୁଇଙ୍କ ମଧ୍ୟରେ ସଦ୍‌ଭାବ ଥିଲେ ମଧ୍ୟ ଏହି ଘୋଷଣା ପରେ ସମ୍ପର୍କ ତିକ୍ତ ହେବାକୁ ଲାଗିଲା । ବାବୁସାହେବଙ୍କର ସମସ୍ତ ଆୟ ବନ୍ଦ କରିଦେବାରୁ ସେ ଦୁଃଖରେ ଦିନ କଟାଇଲେ । ସେ ସୁପରିଟେଣ୍ଡେଣ୍ଟ ରେଭେନ୍ସା ସାହେବଙ୍କ ପାଖରେ ନାଲିଶ୍ କଲେ । ସାହେବ ଦୁଇଭାଇଙ୍କ ମଧ୍ୟରେ ସଦ୍‌ଭାବ ସ୍ଥାପନ ଉଦ୍ୟମ ରାଜାଙ୍କ ଜିଦ୍‌ଖୋର ଆଚରଣରୁ ଅସଫଳ ହେଲା ଜାଣି ତାଙ୍କ ଉପରେ ବିରକ୍ତି ପ୍ରକାଶ କଲେ । ଦେଓ୍ୱାନ ଦାମୋଦର ମହାପାତ୍ର ବିବାଦର ମୂଳ କାରଣ ବୋଲି ତାଙ୍କ ତଦନ୍ତରୁ ଜାଣିପାରି ତାଙ୍କୁ ପଦଚ୍ୟୁତି କରି ନୂଆ ଦେଓ୍ୱାନ

ପଠାଇଥିଲେ। ଫକୀରମୋହନ ପୂର୍ବରୁ ବାବୁସାହେବଙ୍କୁ ଜାଣିଥିଲେ। ସେ ଉଭୟଙ୍କ ମଧ୍ୟରେ ସମାଧାନ ପାଇଁ ବହୁତ ଉଦ୍ୟମ କଲେ। ଶେଷରେ ରାଜା ସାହେବ ତାଙ୍କୁ ଫୁଲବେହି ପୁତ୍ର ଉମାକାନ୍ତଙ୍କୁ ଗାଦି ଦେବାରେ ସାହାଯ୍ୟ କରିବାକୁ ପ୍ରତ୍ୟକ୍ଷ ଭାବରେ ଜଣାଇଲେ। ଏହା ଆଇନ ସମ୍ମତ ନଥିଲା। ହିନ୍ଦୁ ଉତ୍ତରାଧିକାରୀ ଆଇନ ସେତେବେଳେ ଲିଖିତ ଭାବେ ନଥାଏ। ୧୮୧୪ ମସିହାରେ କମିଶନର ସୁପରିଟେଣ୍ଡେଣ୍ଟ ସବୁ ଗଡ଼ଜାତ ରାଜାମାନଙ୍କୁ ସେମାନଙ୍କର ବିବାହ ପଦ୍ଧତି ଉତ୍ତରାଧିକାରୀ ନିର୍ଣ୍ଣୟ ବିଧି, ଭାଇଙ୍କର ସମ୍ପତ୍ତିରେ ଅଧିକାର, ବିଧବା ରାଣୀଙ୍କର ପୋଷ୍ୟପୁତ୍ର ଗ୍ରହଣ ଅଧିକାର, ଖୋରାକ ପୋଷାକ ଆଦି ଅବଗତ ହେବାକୁ ୨୫ ଗୋଟି ପ୍ରଶ୍ନ ପଚାରି ଉତ୍ତର ସଂଗ୍ରହ କରିଥିଲେ। ଏହାକୁ ପଚିଶ ସୱାଲ କୁହାଯାଏ। ସବୁ ରାଜ୍ୟରେ ଏହି ଅନୁସାରେ କମିଶନର ନେଇଥିବା ନିର୍ଣ୍ଣୟ ଆଇନ ମର୍ଯ୍ୟାଦା ଦିଆଯାଇ ପାଳନ କରାଯାଉଥାଏ। ଏଥିରେ ରାଜା, ଭାଇପୁଅ, ପୂର୍ବ ପୁରୁଷ କକା, ଜେଜେ ଆଦି ସମ୍ପର୍କର ପୁତ୍ର ସନ୍ତାନ ପୋଷ୍ୟ ପୁତ୍ର ଭାବେ ଗ୍ରହଣ କରି ପାରିବେ, ମାତ୍ର ଫୁଲବେହି (ଫୁଲବାଇ) ବା ଅନ୍ୟ ପ୍ରକାର ରକ୍ଷିତାର ସନ୍ତାନ କଦାପି ଏହା ଉପଭୋଗ କରିପାରିବ ନାହିଁ। ବାରମ୍ବାର ରାଜାଙ୍କ ଅନୁରୋଧ ପରେ ଶେଷକୁ ଦେୱାନ ତାଙ୍କୁ ଆଇନର ବ୍ୟବସ୍ଥା ଜଣାଇ ଏହା କିପରି ଅସମ୍ଭବ ତାହା ଜଣାଇଲେ। ଗଡ଼ଜାତ ରାଜାମାନେ ସାଧାରଣତଃ ଆଇନକାନୁନ୍ କିଛି ବୁଝନ୍ତି ନାହିଁ। ଅଶିକ୍ଷିତ ଥିବା ହେତୁ ସେମାନେ ନିଜ ନିଷ୍ପତ୍ତି ଅଲଘଂନୀୟ ବୋଲି ଧରି ନିଅନ୍ତି। ସେମାନେ ରାଜ ରାଜେଶ୍ୱର। ଯାହା ଇଚ୍ଛା ତାହା କରିପାରନ୍ତି। ରାଜା କୃଷ୍ଣଚନ୍ଦ୍ର ତେଣୁ ଦେୱାନଙ୍କୁ ତାଙ୍କର ପ୍ରତିପକ୍ଷ ବୋଲି ଗଣିଲେ। ଆଗକିଲ୍ଲାରେ ବ୍ରାହ୍ମଣମାନେ ଓ ପଥୁରିଆମାନେ ତାଙ୍କ ବିରୋଧି ଥିଲେ । ସେମାନେ ଭେଦା ସଂଗ୍ରହ କରି କମିଶନର ଆଗରେ ଗୁହାରି କରିବାକୁ ନିଜର ପ୍ରତିନିଧି କେତେଜଣଙ୍କୁ ପଠାଇଲେ। ଦେୱାନ ଓ ମାହାଲଦାର କହ୍ନେଇ ମିଶ୍ର ଅତ୍ୟାଚାର ହେତୁ ପ୍ରଜାମାନେ ଅସ୍ଥିର ହୋଇ ରାଜ୍ୟ ଛାଡ଼ି ପଳାଇ ଯାଉଛନ୍ତି। ଅନେକ ଗୁଡ଼ିଏ ମିଥ୍ୟା ଅତ୍ୟାଚାରର ମଧ୍ୟ ସେମାନେ ଉଦାହରଣ ଦେଲେ। ସେମାନଙ୍କର ନାଲିଶ୍ ଶୁଣି କମିଶନର ରେଭେନ୍ସା ସାହେବ ରାଜ୍ୟକୁ ଆସି ମାମଲା ତଦନ୍ତ କଲେ। ମାହାଲାଦାର କହ୍ନେଇ ମିଶ୍ରର ଅତ୍ୟାଚାର ପ୍ରମାଣିତ ହୋଇ ତାଙ୍କୁ ଖଣି ଦାୟିତ୍ୱରୁ ଅବ୍ୟାହତି ଦିଆଗଲା। କେତେଜଣ ମେଳିଆ ପ୍ରଜାଙ୍କୁ ବେଆଇନ ଜନତା କରିଥିବାରୁ ଦୁଇ ତିନି ମାସ ଲେଖାଁଏ ସଜା ହେଲା। ମାହାଲାଦାରଙ୍କୁ ଆଗରୁ ନିକାଲ ଦେଇଥିଲେ ଦେୱାନ ବଦନାମ ହୋଇନଥାନ୍ତେ। ରାଜା ସାହେବ ଅସନ୍ତୁଷ୍ଟ ଥିଲେ। ବର୍ତ୍ତମାନ ଖଣି ରାଜସ୍ୱ ଅନାଦେୟ ରହିଯିବା ହେତୁ ଆହୁରି

ବିରକ୍ତ ହେଲେ । କମିଶନର ମଧ ପ୍ରଜାମାନଙ୍କୁ ସମ୍ଭାଳି ରଖିବାରେ ଅସମର୍ଥ କହି ଦେୱାନଙ୍କୁ ତିରସ୍କାର କଲେ। ରାଜା ସାହେବ ଚକ୍ଷୁଲଜ୍ଜା ହେତୁ ପୂର୍ବବତ ବ୍ୟବହାର କଲେ ମଧ କଥା କଥାକେ ତାଙ୍କର ମାନସିକଭାବ ପ୍ରକାଶ ପାଇବାରେ ଲାଗିଲା। ନିଜର ଆତ୍ମ ସମ୍ମାନ ରକ୍ଷା ପାଇଁ ଫକୀରମୋହନ ଚାକିରି ଛାଡ଼ିଦେଲେ । ରାଜା କୃଷ୍ଣଚନ୍ଦ୍ରଙ୍କର ଆଚରଣ କିପରି ଅଯୌକ୍ତିକ ତାହା ତାଙ୍କ ଚରିତରୁ ଜଣାଯାଏ।





ଶେଷ ରାଜା ଶ୍ରୀ ଶ୍ରୀ ଶରତଚନ୍ଦ୍ର ମୁନିପାଲ

# ପାଲଲହଡ଼ା ରାଜା
## ଶ୍ରୀ ଶ୍ରୀ ମୁନିପାଲ

କେନ୍ଦୁଝରରେ ପ୍ରଥମେ ସାମିଲ ଥିବା ଏହି ରାଜ୍ୟ ଗୃହ ବିବାଦରୁ ପୃଥକ ହୋଇଯାଇଛି । କେନ୍ଦୁଝର ବିଦ୍ରୋହ ସମୟରେ ଭାରତ ସରକାରଙ୍କୁ ସାହାଯ୍ୟ କରିଥିବାରୁ ଏହାର ରାଜା ରାଜବାହାଦୁର ଉପାଧି ପାଇଥିଲେ । ସର୍ପ ଏମାନଙ୍କର ରାଜବଂଶର ପ୍ରତୀକ । ବଣେଇ କେନ୍ଦୁଝର, ତାଳଚେର ଓ ବାମଣ୍ଡା ମଝିରେ ଏହି ରାଜ୍ୟ । ଏହାର କ୍ଷେତ୍ରଫଳ ୪୫୨ ବର୍ଗ ମାଇଲ । ଲୋକ ସଂଖ୍ୟା ୨୭୯୭୪ ବାର୍ଷିକ ଆୟ ପ୍ରାୟ ୮୦ ହଜାର ଟଙ୍କା ଓ ରାଜା ସରକାରଙ୍କୁ ୨୬୭ଟଙ୍କା ପେସ୍‌କିସ୍ ଦେଇଥାଆନ୍ତି । ୩୮୯୫ ଫୁଟ ଉଚ୍ଚ ମଳୟଗିରି ପର୍ବତ ଏହି ରାଜ୍ୟରେ ଅବସ୍ଥିତ । ଆଦିବାସୀ ଲୋକସଂଖ୍ୟା ରାଜ୍ୟରେ ବେଶୀ । ଗମନାଗମନ ବା ଶିକ୍ଷାର କୌଣସି ସୁବିଧା ରାଜ୍ୟରେ ନଥାଏ । ତାଳଚେର ଦେଇ ଯିବାକୁ ହୁଏ ଏଠାକୁ । ଜଳବାୟୁ ଅସ୍ୱାସ୍ଥ୍ୟକର ମାତ୍ର କାଳକ୍ରମେ ସୁଧୁରି ଯାଇଥିଲା । ରାଜାଙ୍କ

ଶାସନ ବିରୁଦ୍ଧରେ ଥରେ ପ୍ରଜାମାନେ ମେଳି କଲେ। ସାର୍ବଭୌମ ଶକ୍ତି ଭାବରେ ଇଂରେଜ ସରକାର ଫୌଜ ପଠାଇ ମେଳିଆମାନଙ୍କୁ ଧରିଲେ ' ମେଳି ଦମନ କଲେ। ବିଚାରରେ ରାଜଦ୍ରୋହ ପାଇଁ ମେଳିଆମାନଙ୍କୁ ଦଣ୍ଡ ମିଳିଲା। କେତେକ ମେଳିଆ ସର୍ଦ୍ଦାର ଏହା ଫଳରେ ଜଙ୍ଗଲରେ ଯାଇ ଲୁଚିଲେ। କାଳେ ସେମାନେ ପୁଣି ମେଳି କରିବେ ଏହି ଆଶଙ୍କାରୁ ସରକାର ରାଜ୍ୟକୁ ଜଣେ ଦେଓ୍ୱାନ ପଠାଇଲେ। ତାଙ୍କୁ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ କ୍ଷମତା ଦିଆଗଲା। ପଳାତକ ମେଳିଆମାନଙ୍କୁ ଧରି ସେମାନଙ୍କର ବିଚାର କରିବାକୁ ତାଙ୍କୁ କୁହାଯାଇଥିଲା। ଫକୀରମୋହନ ଏହି ଦେଓ୍ୱାନ ଭାବରେ ନିଯୁକ୍ତି ପାଇଲେ। ସେ ଗଡ଼ରେ ଯାଇ ଦେଖିଲେ ମେଳିଆମାନଙ୍କ ସଜା ହେବା ଫଳରେ ଲୁଚିଥିବା ସର୍ଦ୍ଦାର ମାନଙ୍କର ମନୋବଳ ଭାଙ୍ଗି ଯାଇଛି। ପ୍ରଜାମାନେ ମଧ ଆଉ ମେଳି କରିବାକୁ ମାନସିକ ଅବସ୍ଥାରେ ନାହାଁନ୍ତି।

ପାଲଲହଡ଼ା ଗଡ଼ ଗୋଟିଏ କ୍ଷୁଦ୍ର ସ୍ଥାନ। ଚାରିଆଡ଼େ ଜଙ୍ଗଲ ପୁରିଥାଏ। ସନ୍ଧ୍ୟା ହେଲେ ବାଘ ଭାଲୁ ଗାଁ ଭିତରକୁ ପଶି ଆସି ବୁଲନ୍ତି। ତେଣୁ କେହି ଆଉ ଘରୁ ବାହରନ୍ତି ନାହିଁ।

ରାଜା ମୁନିପାଲ ବୁଦ୍ଧିମାନ, ଭଦ୍ର ଓ ମିଷ୍ଟଭାଷୀ। ରାଜ୍ୟ ଶାସନରେ ଦେଓ୍ୱାନଙ୍କର କାର୍ଯ୍ୟରେ ହସ୍ତକ୍ଷେପ କରିବା ସପକ୍ଷରେ ନଥାନ୍ତି। ସେତେବେଳେ ଛୋଟ ଗଡ଼ଜାତମାନଙ୍କରେ ରାଜ୍ୟ ଆୟ ଓ ବ୍ୟୟର କିଛି ହିସାବ ନଥାଏ। ଯାହା ଆୟ ହୁଏ ଖର୍ଚ୍ଚ ହୁଏ। ରାଜାଙ୍କର ବ୍ୟକ୍ତିଗତ ବ୍ୟୟ ଓ ପ୍ରଜାମାନଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ଖର୍ଚ୍ଚ ଏହାର କିଛି ତଫାତ ରଖାଯାଇ ନଥାଏ। ରାଜା ଅତ୍ୟନ୍ତ ଦାନୀ। ଇଚ୍ଛା ଅନୁସାରେ ଦାନ କରନ୍ତି। ରାଣୀ ସାହେବ ଓ ରାଜଭଗିନୀମାନେ ମଧ୍ୟ ସେହିପରି ପୁଣ୍ୟବତୀ ଓ ଦାନଶାଳା ଥିଲେ। ଫଳରେ ରାଜ୍ୟରେ ଭବିଷ୍ୟତ ବିକାଶ ନିମିତ୍ତ ଓ ପ୍ରଜାମାନଙ୍କର ସୁଖ ସୁବିଧା ନିମିତ୍ତ କିଛି ବଳକା ପାଣ୍ଠି ନ ଥାଏ। ତାଙ୍କ ଦାତା ପଣ ମଧ୍ୟ ରାଜ୍ୟ ବାହାରେ ଜଣାଥାଏ।

କଟକରେ ଜଣେ ଦରିଦ୍ର କାବୁଲି ଥାଏ। ତା'ର କୌଣସି ରୋଜଗାର ନଥାଏ। ତାଙ୍କ ଜାତିଲୋକ ତାକୁ ଚାନ୍ଦା ଭେଦା କରି ବଞ୍ଚେଇ ରଖିଥାନ୍ତି। ସେମାନେ ସମସ୍ତେ ମିଶି ଗୋଟିଏ ବିଲାତି କମ୍ବଳ କିଣିଲେ। ତାକୁ ଧରି ରାଜାସାହେବଙ୍କୁ ସାକ୍ଷାତ କରିବାକୁ ପଠାଇଲେ। ଅଗମ୍ୟ ପଥ ଦେଇ ସେ ପାଲଲହଡ଼ାରେ ପହଞ୍ଚି ରାଜା ସାହେବଙ୍କୁ ସାକ୍ଷାତ କଲା । କମ୍ବଳ ଗୋଟିକ ସାମନାରେ ରଖି ସଲାମ କରି ଚାଲି ଆସିଲା। ତା'ର ଚେହେରା ଦେଖି ରାଜା ଜାଣିଲେ ସେ ଦରିଦ୍ର ଓ ଅଭାବଗ୍ରସ୍ତ। କିଛି ସାହାଯ୍ୟ ପ୍ରାର୍ଥୀ। କମ୍ବଳଟିର

ମୂଲ୍ୟ ଠିକ୍ କରିବାକୁ ରାଜାଙ୍କର ସମୟ ନଥାଏ। ରାଜ୍ୟର ପାଞ୍ଜିଆ ଗନ୍ତାଘରୁ ନିୟମ ଅନୁସାରେ ଆଗନ୍ତୁକମାନଙ୍କୁ ଦୈନିକ ଗୋଟିଏ ଟଙ୍କା ଦିଏ। ସେଥିରେ ସେମାନେ ନିଜର ଖାଦ୍ୟ ବ୍ୟବସ୍ଥା କରିବେ। ଟଙ୍କାଟିଏ ନେଇ ମଧ ସଉଦାଗର ସରଘରୁ ଡାଲି ଓ ଚାଉଳ ମାଗିଖାଏ। ଏମିତି ତିନି ମାସ କଟିଗଲା। କାବୁଲିର ପାଣ୍ଠି ନବେ ଟଙ୍କା ହେଲାଣି। ଶୀତଦିନ ପଡ଼ିଲା। ପାହାଡ଼ିଆ ଅଞ୍ଚଳରେ ଶୀତ ପ୍ରବଳ। କଟକରୁ ଆସିଥିବା ପୁରୁଣା ଫଟା ପୋଷାକ ତା' ଦେହରେ ସେମିତି ଅଛି। କିଛି ବସ୍ତୁ କିଣିବାରେ ପଇସା ଖର୍ଚ୍ଚ କଲେ ବିଚରା ବେପାର କେଉଁଥିରେ କରିବ ? ଦିନେ ସକାଳୁ ସେ ଧୂନିଜାଳି ବସି ନିଆଁ ପୋଇ ଶୀତ ନିବାରଣ କରୁଥାଏ। ରାଜା ସାହେବ ସକାଳୁ ଦାଣ୍ଡକୁ ବାହାରିଥିଲେ। ତା'ର ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ଧୂନି ପୋଇବାର ଦେଖି ନିଜକୁ ଦୋଷୀ ବୋଲି ମନେ କଲେ। କମ୍ବଳର ମୂଲ୍ୟ ଠିକ୍ କରି ତାକୁ କିଛି ଅର୍ଥ ଦେଇଥିଲେ ସେ ବିଚରା ଚାଲିଯାଇଥାନ୍ତି। ଅତି ଦୁଃଖିତ ହୋଇ ତାହାଠାରୁ କିଣା କମ୍ବଳଟିକୁ ତାକୁ ଶୀତରେ ଘୋଡ଼େଇ ହେବାକୁ ଦେଇଦେଲେ। ତା' ସହିତ କମ୍ବଳ ଖଣ୍ଡିକର ମୂଲ୍ୟ ଦଶଟଙ୍କା ଓ ବାଟ ଖର୍ଚ୍ଚ ଦେଇ ବିଦାୟ କଲେ। ଏମିତି ଅନିୟନ୍ତିତ ଖର୍ଚ୍ଚ ଫଳରେ ତାଙ୍କର ଆର୍ଥିକ ସ୍ୱଚ୍ଛଳତା ନଥାଏ।

ଫକୀରମୋହନଙ୍କ ସଞ୍ଜା ରାଜାଙ୍କ ସରଘରିଆ ପଠାଇଦିଏ। କାମଦାମ କିଛି ନଥାଏ। ସକାଳ ଓଳି ସେ ବସି ମହାଭାରତ ଅନୁବାଦ କରନ୍ତି। ଉପରଓଳି ରାଜାଙ୍କର ବିରାଦର ବାବୁ ଜଣେ, ରାଜ ପୁରୋହିତ ଓ ଆଉ ଦୁଇଜଣ ବ୍ରାହ୍ମଣ ଆସିଲେ ସେମାନଙ୍କ ସାଙ୍ଗରେ ସେ ଚଉପଟ ଖେଳନ୍ତି। ସନ୍ଧ୍ୟା ହେଲେ ଘର ଭିତରେ ବନ୍ଦ ହୋଇ ରହିବାକୁ ପଡ଼େ। ତାଙ୍କର ପାନଖିଆ ଅଭ୍ୟାସ ଥାଏ। ଗଡ଼ରେ ପାନ ମିଳେ ନାହିଁ। ପ୍ରତିଦିନ ସେ ପଚାଶ ଷାଠିଏ ଖଣ୍ଡ ବିଡ଼ିଆ ପାନ ଚୋବାଉ ଥାଆନ୍ତି। ଅଠର କୋଶ ଦୂରରେ ତାଳଚେର ଗଡ଼। ସେଇଠି ପାନ ମିଳେ। ଜଣେ ଲୋକଙ୍କୁ ଦୁଇଟଙ୍କା ଦେଲେ ସେ ଯାଇ ଟଙ୍କାକର ପାନ ଆଣେ। ଆଉ ଟଙ୍କାଟିଏ ବାଟ ଖର୍ଚ୍ଚ ପାଏ। ପ୍ରତି ସପ୍ତାହରେ ଏହା କରାଯାଏ। ପାନ ଅଭାବ ଦୂର କରିବାକୁ ରାଜା, ରାଜ ଭଗିନୀ ପାନ ଶୁଖୁଆ ରଖିଥାନ୍ତି। ଦିନେ ଗଡ଼ରେ ପାନ ବା ଶୁଖୁଆ କିଛି ମିଳିଲା ନାହିଁ। ବଡ଼ ମନ କଷ୍ଟରେ ସେ ଦେଖିଲେ ଗୋଟିଏ ଲୋକ ବୁଜୁଳିଟିଏ ଧରି କେନ୍ଦୁଝର ଯାଉଛି। କେନ୍ଦୁଝରରେ ଥିବା ପୁଲିସ୍ ଅଫିସରଙ୍କ ପାଖକୁ ସେ ଡାକ ନେଇ ଯାଉଥାଏ। ତା'ର ବୁଜୁଳା ଖୋଲିବାରୁ ହଠାତ ପାନ ଶହେ କି ଦି'ଶହ ଥିବା ଦେଖାଗଲା। କେତୋଟି ପାନପତ୍ର ରଖି ଦେଓ୍ୱାନ ଈଶ୍ୱରଙ୍କୁ ଧନ୍ୟବାଦ ଦେଲେ।

ଦରମା ମିଳୁଥାଏ। ମାଗଣା ଖାଦ୍ୟ ରଜାଘରୁ ସରଘରିଆ ଆଣି ଦିଏ। ସେଥିରେ ମାଂସ ଥାଏ। ମାଛ ଗୋଟିଏ 'ତିଅର' ନଦୀରୁ ଧରି ଯୋଗାଏ। ପାଲଲହଡ଼ା ଗଡ଼ ପାଖରେ ଗୋଟିଏ ଗିରିନଦୀ ଥାଏ। ବର୍ଷା ଦିନେ ଏଥିରେ ପାଣି ବେଶି ହୋଇ ରାଜ ଉଆସକୁ ମଧ୍ୟ ମାଡ଼ିଯାଏ। 'ତିଅର' ଦିନେ ଦିନେ ଆସେନାହିଁ। ପଚାରିଲେ ଜଣାଯାଏ ସେ ନିଜର ସୁନା କଣିକା ସଂଗ୍ରହ କରିବାକୁ ଯାଇଛି। ବାଲିରେ କୁଆଡୁ ସାମାନ୍ୟ ସୁନା ସୁନାରି ମାନଙ୍କ କାର୍ଯ୍ୟକ୍ଷେତ୍ରରୁ ବୋଧହୁଏ ଆସି ଯାଇଥାଏ। ଗୋଟିଏ କେଉଟୁଣୀ ଦିନେ ମାଛ ବିକି ଆସିଥିଲା। ଦେୱାନଙ୍କ ଚାକର ତାକୁ କହିଲା ଆମର ମାଛ ଲୋଡା ନାହିଁ। ସେ କହିଲା ହଁ ହଁ ତମେ ରଜାଘରୁ ମାଗଣାରେ ଖାଅ ପରା। ପାଖରେ ଥାଇ ଫକୀରମୋହନ ଏହା ଶୁଣିଲେ। କିଛି କାମ ନ୍‌କରି ଭାତିଆ ଓ ଦରମା ନେବା ତାଙ୍କ ବିବେକକୁ ବାଧିଲା। ସେ ସୁପରିଟେଣ୍ଡେଣ୍ଟଙ୍କୁ ଅବ୍ୟାହତି ଦେବାକୁ ଲେଖିଲେ। ଅନୁମତି ପାଇ ଇସ୍ତଫା ଦେଇ ଚାଲି ଆସିଲେ। ଦରମା ବ୍ୟତୀତ ରାଜା ସାହେବ ତାଙ୍କୁ ମେଲାଣି ଟଙ୍କା ଶାଲ, ପାଟ ଯଥା ଆଦି ଦେଇ ବିଦା କଲେ। ରାଣୀ ସାହେବା ଓ ଭଗିନୀମାନେ ମଧ୍ୟ ଏପରି ମେଲାଣି ଟଙ୍କା ଓ ଲୁଗାପଟା ଦେଲେ। ଜଣାଗଲା ଏହା ରାଜାଙ୍କର କୌଳିକ ପ୍ରଥା। ଏହା ନ ନେଲେ ରାଜା ସାହେବ ଅପମାନିତ ବୋଧ କରିବେ।

ରାଜ୍ୟର ଉନ୍ନତି ହୋଇପାରୁନଥାଏ। ରାଜ୍ୟର ଆର୍ଥିକ ଅବସ୍ଥା ଭଲ ନଥିଲେ ସୁଦ୍ଧା ଏହି ରାଜାଙ୍କର ଉଦାରତାର ଅଭାବ ନଥିଲା।





ଶେଷ ରାଜା ଶ୍ରୀ ଧରଣୀଧର ଇନ୍ଦ୍ରଦେଓ

# ବଣେଇ

## ରାଜା ଧରଣୀଧର ଇନ୍ଦ୍ରଦେଓ

ବଣେଇ ଗଡ଼ଜାତର କ୍ଷେତ୍ରଫଳ ୧୨୯୬ ବର୍ଗମାଇଲ । ସେତେବେଳର ଲୋକସଂଖ୍ୟା ପ୍ରାୟ ୮୦ ହଜାର ଓ ଆୟ ପ୍ରାୟ ୩ ଲକ୍ଷ ଟଙ୍କା ଥିଲା ଓ ରାଜା ୨୭୦୦ଟଙ୍କା ସରକାରଙ୍କୁ ପେସ୍‌କିସ୍ ଦେଉଥିଲେ । ବଣେଇ ରାଜାଙ୍କର ପାରମ୍ପରିକ ପଦବୀ ଚନ୍ଦ୍ରଦେଓ ଓ ଇନ୍ଦ୍ରଦେଓ । ଧରଣୀଧରଙ୍କ ପିତା ଥିଲେ ପିତାମ୍ବର ଚନ୍ଦ୍ରଦେଓ । ବଣେଇ ରାଜ୍ୟର ବେଶି ଭାଗ ବଣ । ବୋଧହୁଏ ସେଇ ଯୋଗୁଁ ଏହାର ନାମ ବଣେଇ ହୋଇଥିଲା । ପାନପୋଷ (ବର୍ତ୍ତମାନ ରାଉରକେଲା) ରେଲଷ୍ଟେସନରୁ ଗଡ଼ ୩୮ ମାଇଲ ଦୂର । ବାମଣ୍ଡା ରାଜ୍ୟରେ ଆଉ ଗୋଟିଏ ରେଲଷ୍ଟେସନ ବାମଣ୍ଡା । ସେଠାରୁ ବାମଣ୍ଡା ରାଜଧାନୀ ଦେଇ ଯିବାକୁ ହେଲେ ୮୦ ମାଇଲ ବାଟ) । ରାଜ୍ୟର ଆୟ ଜଙ୍ଗଲ ବିଭାଗରୁ ବେଶି, ପ୍ରଜାଦତ୍ତ ଖଜଣାରୁ ଅଳ୍ପ ଆୟ ହୋଇଥାଏ । ୧୯୨୪ ମସିହାରେ ରାଜ୍ୟର ଆୟ ମୋଟ ଦୁଇ ଲକ୍ଷରୁ ଦେଢ଼ ଲକ୍ଷ ଟଙ୍କା ଜଙ୍ଗଲରୁ ଆସୁଥିଲା । ରେଲବାଇକୁ ସ୍ଲିପର ସକାଶେ କାଠ

ଯୋଗାଇ ଦେବାକୁ ଦୁଇଟି ସାହେବ କମ୍ପାନୀ କାମ କରୁଥାଏ। ଗୋଟିଏ ଏଚ.ଡିଅର (H. Deer) କମ୍ପାନୀ ଅନ୍ୟଟି ବେଙ୍ଗଲ ଟିମ୍ବର କମ୍ପାନୀ।

ସରକାରଙ୍କ ଠାରୁ ନିଯୁକ୍ତି ପାଇ ଓଡ଼ିଶାର ଜଣେ କର୍ମଚାରୀ ଭାରତଚନ୍ଦ୍ର ନାୟକ ୧୯୨୪ ଏପ୍ରିଲ ମାସରେ ସମ୍ବଲପୁରରୁ ଜଣେ କାଠ ବ୍ୟବସାୟୀଙ୍କ ମଟରଗାଡ଼ିରେ ବାମଣ୍ଡା, ରେଳ ଷ୍ଟେସନରୁ ଆସି ପହଞ୍ଚି କାର୍ଯ୍ୟରେ ଯୋଗଦେଲେ। ରାଜା ଧରଣୀଧରଙ୍କୁ ସାକ୍ଷାତ କଲେ । ତାଙ୍କ ପିତାଙ୍କର ମୃତ୍ୟୁ ପରେ ସେ ୧୯୦୨ ମସିହାରେ ରାଜଗାଦିରେ ବସିଥିଲେ। ସେତେବେଳକୁ ତାଙ୍କୁ ୧୯ ବର୍ଷ ବୟସ। ରାଜାମାନଙ୍କର ୨୧ ବର୍ଷ ବୟସ ହେଲେ ସେମାନେ ରାଜଗାଦିରେ ବସିବା ଯୋଗ୍ୟ ବିଚାର କରାଯାଏ। ସବୁ ଗଡ଼ଜାତରେ ଶିକ୍ଷାର ପ୍ରସାର ପ୍ରାୟ ନ ଥାଏ। ରାଜପୁତ୍ରମାନଙ୍କର ଶିକ୍ଷା ମଧ୍ୟ ସାଧାରଣ ମଣିଷଙ୍କ ସାଙ୍ଗରେ ମିଶି ହେବାର ପରମ୍ପରା ନଥାଏ। ତେଣୁ ସେମାନଙ୍କର କୈଶୋର ଓ ଯୌବନ ନଅରରେ ନିମ୍ନ ଶ୍ରେଣୀର ପରିଚାଳକମାନଙ୍କ ଗହଣରେ କଟିଥାଏ ଓ ସେମାନଙ୍କ ଚରିତ୍ର ରାଜପୁତ୍ରମାନଙ୍କୁ ପ୍ରଭାବିତ କରେ। ରାଜା ନାବାଳକ ଥିବାରୁ ରାଜ୍ୟର ଶାସନ ଭାର ଜଣେ ମ୍ୟାନେଜରଙ୍କ ହାତରେ ସରକାର ଦେଲେ। ସେ ଛୋଟନାଗପୁର କମିଶନରଙ୍କ ଅଧୀନରେ କାର୍ଯ୍ୟ କଲେ। ରାଜା ସାହେବ ତାଙ୍କ ଠାରୁ ରାଜ୍ୟଶାସନ ଶିଖିବାର ବ୍ୟବସ୍ଥା କରାଗଲା। ରାଜ୍ୟର ମାଲିକ ରାଜା। ସାଧାରଣ ପ୍ରଜା ବୁଝନ୍ତି, ରାଜ୍ୟର ସେ ସର୍ବଶ୍ରେଷ୍ଠ। ଜଣେ ମ୍ୟାନେଜର କି ଦେୱାନ ଜଣେ ଦରମାଖିଆ କର୍ମଚାରୀ। କ୍ଷମତା ତାଙ୍କ ହାତରେ ରହିବ ଓ ରାଜା କେବଳ ନାମମାତ୍ର ଶାସକ ହେବେ ଏହା ରାଜା ପ୍ରଜା ଉଭୟ ଗ୍ରହଣ କରିବାକୁ ଅନିଚ୍ଛୁକ ଥିଲେ। ରାଜା ଦେବଗଡ଼ ବାମଣ୍ଡା ରାଜା ସାର ବାସୁଦେବ ସୁଢ଼ଳ ଦେବଙ୍କର କନ୍ୟାଙ୍କୁ ଅଳ୍ପଦିନ ପରେ ବିବାହ କଲେ। ସାର ସୁଢ଼ଳଦେବ ଓଡ଼ିଶାର ଶାସକମାନଙ୍କ ମଧ୍ୟରେ ଅତ୍ୟନ୍ତ ସୁଶାସକ ଓ ପ୍ରଜାବତ୍ସଳ ବୋଲି ପରିଚିତ ଥିଲେ। ଧରଣୀଧର ତାଙ୍କ ଅଧିନରେ ସର୍ବାଙ୍ଗୀନ ଶିକ୍ଷା ନିମିତ୍ତ ସରକାର ତାଙ୍କୁ ରଖିଲେ। ଅଳ୍ପଦିନ ସେଠାରେ ରହିବା ପରେ ତାଙ୍କ ଶ୍ୱଶୁର ତାଙ୍କୁ ରାଞ୍ଚିରେ ଶିକ୍ଷା ଦେବାକୁ କହିଲାରୁ ସରକାର ତାଙ୍କୁ ସେଠାରେ ୧୯୧୩ ସାଲ ପର୍ଯ୍ୟନ୍ତ ରଖିଥିଲେ। ସେତେବେଳେ ତାଙ୍କୁ ୩୦ ବର୍ଷ ହେଲାଣି। ରାଜ୍ୟର ଅମଲା ଓ ଅନ୍ୟ ସ୍ଥାୟୀ କର୍ମଚାରୀମାନେ ବାହାରର ସରକାରୀ ନିଯୁକ୍ତ କୌଣସି ଦେୱାନଙ୍କୁ କାର୍ଯ୍ୟ କରିବାକୁ ସୁଯୋଗ ଦେଉନଥାନ୍ତି। ଏହିପରି ଭାବରେ ୨/୩ ବର୍ଷରେ ଚାରିଜଣ ମ୍ୟାନେଜର ଆସି ଚାଲିଗଲେ। ରାଜାଙ୍କୁ ସୀମିତ କ୍ଷମତା ଦିଆଯାଇଥାଏ। ରାଜ୍ୟର ଲୋକସଂଖ୍ୟାରୁ ବେଶି ଭୂୟାଁ ଆଦିବାସୀ ସମ୍ପ୍ରଦାୟର। ଘନ ଘନ ପରିବର୍ତ୍ତନ

ଫଳରେ କୌଣସି ମ୍ୟାନେଜର ରାଜା ଓ ପ୍ରଜା ଉଭୟଙ୍କ ମଧ୍ୟରେ ସଦଭାବ ସ୍ଥାପନ ନିମିତ୍ତ ଅକ୍ଷମ ଥିଲେ। ରାଜ୍ୟର ଶାସନରେ କିଛି ଆଖିଦୃଷ୍ଟିଆ ପରିବର୍ତ୍ତନ ହେଉନଥାଏ। ରାଜାଙ୍କ ମନରକ୍ଷା ଓ ସରକାରଙ୍କର ନିର୍ଦ୍ଦେଶ ମୁତାବକ ଶାସନ ଚଳେଇବାର ଦ୍ୱନ୍ଦ୍ୱ ହେତୁ ଆଭ୍ୟନ୍ତରୀଣ ଶାସନ ଶୃଙ୍ଖଳା ବଜାୟ ରଖିବା ସମ୍ଭବ ହେଉନଥାଏ। ପୂର୍ବ ଦେୱାନ ଖାଁ ସାହେବ ସାଫିକୁଦ୍ଦିନଙ୍କୁ ସବୁ କ୍ଷମତା ଦିଆଯାଇଥିଲା। ଫଳରେ ସେ ତିନି ବର୍ଷ କାମ କରିଥିଲେ। ନୂଆ ଦେୱାନ ଭାରତଚନ୍ଦ୍ର ଯୋଗଦାନ କରି ରାଜା ସାହେବଙ୍କୁ ସାକ୍ଷାତ କଲେ। ସରକାରଙ୍କର ନିର୍ଦ୍ଦେଶ ମୁତାବକ ରାଜା ତାଙ୍କୁ ଗୋଟିଏ ସନନ୍ଦ ଲେଖିଦେଲେ। ଏଥିରେ ରାଜ୍ୟ ଶାସନ ବିଷୟରେ ସମସ୍ତ କ୍ଷମତା ସେ ଦେୱାନଙ୍କୁ ସମର୍ପଣ କଲେ। ଏପରିକି ନିଜେ ଖଣ୍ଡେ ଦରଖାସ୍ତ ଗ୍ରହଣ କରିବା ବା ଜଣେ ନିମ୍ନ ଶ୍ରେଣୀ କର୍ମଚାରୀ ନିଯୁକ୍ତି କରିବା କ୍ଷମତା ମଧ୍ୟ ତାଙ୍କର ରହିଲାନାହିଁ। ଦେୱାନୀ ଓ ଫୌଜଦାରୀ ମକଦ୍ଦମାରେ ଦେୱାନଙ୍କର ରାୟ ବିରୁଦ୍ଧରେ ଅପିଲ୍ ଶୁଣିବାର କ୍ଷମତା କେବଳ ତାଙ୍କର ରହିଲା। ମାତ୍ର ତାହା ଏମିତି ସୀମାବଦ୍ଧ ଥିଲା ଯେ ସେ ଯଦି ଦେୱାନଙ୍କର କୌଣସି ହୁକୁମଙ୍କୁ ରଦ୍ଦ କରିବାକୁ ଚାହିଁବେ, ତାହା ହେଲେ ସେ ପଲଟିକାଲ୍ ଏଜେଣ୍ଟଙ୍କ ସହିତ ପରାମର୍ଶ କରି ତାଙ୍କ ନିଷତ୍ତି ଅନୁସାରେ କାମ କରିବେ। ଭାରତଚନ୍ଦ୍ର ସନନ୍ଦ ନେଇ କାର୍ଯ୍ୟ କରିବାକୁ ଲାଗିଲେ। ଷ୍ଟେଟର କୌଣସି ବିଭାଗର ଶାସନ ସହିତ ରାଜାଙ୍କର କୌଣସି କ୍ଷମତା ନରହିବାରୁ ସେ ମନ୍ତ୍ରୌଷଧି ରୁଦ୍ଧବୀର୍ଯ୍ୟ ବିଷଧର ସର୍ପ ପରି ରାଜ୍ୟରେ ରହିଥାନ୍ତି। ଏହାଦ୍ୱାରା ତାଙ୍କର ମନ କ୍ଷୁର୍ଣ୍ଣ ହେବା ସ୍ୱାଭାବିକ। ପ୍ରଜାମାନେ ମଧ୍ୟ ଦେୱାନଙ୍କ କ୍ଷମତାରେ ଖୁସି ନ ଥାଆନ୍ତି। ରାଜା ସେମାନଙ୍କର ଚିରଦିନର ସୁଖଦୁଃଖର ସାଥୀ। ଶିକ୍ଷିତ ବୁଦ୍ଧିମାନ ଓ ଅଭିଜ୍ଞ ୪୦ ବର୍ଷ ବୟସର ରାଜା ଧରଣୀଧର ନିଜର ମନର ବିକ୍ଷୁବ୍ଧତା ଦେୱାନଙ୍କ ଆଗରେ ପ୍ରକାଶ କରନ୍ତି ନାହିଁ। ତାଙ୍କ ସହିତ ଅତି ଭଦ୍ର ଆଚରଣ କରନ୍ତି। ପ୍ରଜାମାନେ ରାଜାଙ୍କ ପାଖରେ ଆପତ୍ତି କରି କୌଣସି ପ୍ରତିକାର ନପାଇ ଶାସନରେ କ୍ଷୁବ୍ଧ ଥାଆନ୍ତି। ସେମାନଙ୍କର ଧାରଣା ଦେୱାନଙ୍କୁ ବଦନାମ କରିପାରିଲେ ସରକାର ଶାସନ ବଦଳିଯିବ। ଭାରତଚନ୍ଦ୍ର ସାକ୍ଷାତ ସମୟରେ ରାଜାସାହେବଙ୍କୁ ବୁଝାଇ ଦିଅନ୍ତି "ଶାସନ ତାଙ୍କର। ସେ କେବଳ ତାଙ୍କର ଜଣେ ଦରମାଖିଆ ଚାକର। ରାଜା ସାହେବ ତାଙ୍କୁ ପଲଟିକାଲ ଏଜେଣ୍ଟଙ୍କର ବିରକ୍ତି ଓ ପ୍ରଜାମାନଙ୍କର କୋପରୁ ରକ୍ଷା କରିବାକୁ ସାହଯ୍ୟ କରିବେ।" ବାହାରେ କୌଣସି ବିରୂପ ପ୍ରତିକ୍ରିୟା ନ ଦେଖାଇଲେ ମଧ୍ୟ କେତେକ କର୍ମଚାରୀ ରାଜ୍ୟର ପ୍ରଧାନ ଓ ଅମଲାମାନଙ୍କ ପରାମର୍ଶରେ ରାଜା ସାହେବ ଦେୱାନଙ୍କୁ ବଦନାମ କରିବାକୁ ଷଡ଼ଯନ୍ତ୍ର

କରନ୍ତି । ରାଜ୍ୟରେ ସୁଶାସନ ସୁନିଶ୍ଚିତ କରିବା, ପ୍ରଜାମାନଙ୍କର ଦୁଃଖ ତ୍ୱରିତ ଲାଘବ କରିବା ଲକ୍ଷ୍ୟରେ ନିଜ ନିଯୁକ୍ତ ଦେଓ୍ୱାନଙ୍କୁ ରାଜାନୁଗ୍ରହ ପ୍ରାର୍ଥୀ, ସ୍ୱାର୍ଥାନ୍ୱେଷୀ ମାମଲତକାର ମାନଙ୍କର ଷଡ଼ଯନ୍ତ୍ରରୁ ରକ୍ଷା କରିବା ଖୋଦ ସରକାରଙ୍କ ପଲଟିକାଲ୍ ଏଜେଣ୍ଟଙ୍କର କାର୍ଯ୍ୟ । ବଣେଇ ରାଜ୍ୟ ସମ୍ବଲପୁର ପଲିଟିକାଲ ଏଜେଣ୍ଟଙ୍କ ଅଧିନରେ । ଅଧିକାଂଶ ସମୟରେ ଏହି ସର୍ବୋଚ୍ଚ କର୍ମଚାରୀ ଅଣ ଭାରତୀୟ । ବର୍ଷକୁ ଥରେ ଗସ୍ତରେ ରାଜ୍ୟକୁ ଆସିଲେ ମଧ ରାଜ୍ୟର ହାନିଲାଭ ମଫସଲ ଗସ୍ତରେ ଯାଇ ନବୁଝି ଡାକବଙ୍ଗଳାରେ ରାଜ ଅତିଥି ହୋଇ ଶିକାର, ଭୋଜିଭାତ ଓ ରାଜାଙ୍କ ଷୋଡ଼ଶୋପଚାର ପୂଜା ଗ୍ରହଣ କରି ଫେରିଯାଆନ୍ତି । ତେଣୁ ପ୍ରଜାମାନଙ୍କର ପ୍ରକୃତ ସମସ୍ୟା ବା ନିଜ ନିଯୁକ୍ତ କର୍ମଚାରୀଙ୍କର କର୍ମକ୍ଷେତ୍ରରେ ଦ୍ୱନ୍ଦ୍ୱ ଉପଲବ୍ଧି କରିବାକୁ ତାଙ୍କୁ ସୁଯୋଗ ମିଳେନାହିଁ । ବିଦେଶୀ ଥିବା ହେତୁ ଓ ରାଜ୍ୟର ସାମାଜିକ ନୀତି ନିୟମ ସହ ପରିଚୟ ନଥିବା ହେତୁ ପ୍ରକୃତ ସମସ୍ୟା ବୁଝିବାରେ ଅକ୍ଷମ ହୁଅନ୍ତି ।

ଭାରତଚନ୍ଦ୍ର ନିଜ ଗୁପ୍ତଚରମାନଙ୍କ ସାହାଯ୍ୟରେ ଜାଣି ପାରିଲେ ଯେ କେତେକ ଖଳ କର୍ମଚାରୀ ଓ ସ୍ଥାନୀୟ ପ୍ରଧାନ ଏମାନେ ରାଜ ନଅରରେ ଏକାଠି ହୋଇ ରାଜାଙ୍କ ସହିତ ଦେଓ୍ୱାନଙ୍କୁ ହଟାଇବାକୁ ଷଡ଼ଯନ୍ତ୍ର କରୁଛନ୍ତି । ପଲଟିକାଲ୍ ଏଜେଣ୍ଟଙ୍କୁ ଗୁହାରି କରି ଦେଓ୍ୱାନଙ୍କୁ ବଦନାମ କରିବା ସେମାନଙ୍କର ଉଦ୍ଦେଶ୍ୟ । ସେମାନଙ୍କୁ ଚିହ୍ନଟ କରିବାକୁ ସେ ଏକ ଅଭିନବ ଉପାୟ ବାହାର କଲେ । ଅନେକ ଦିନ ଧରି ଗଡ଼ରେ ଜଣେ କାବୁଲି ଥାଏ । ସେ ଫଳ ଓ ଶୁଖିଲା ଫଳ ଆଦି ଆଣି ନଅରରେ ଯୋଗାଇ ଦିଏ । ସେ ଭାରତଚନ୍ଦ୍ରଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଥିଲା । ନିଜେ କୃତ୍ରିମ ନିଶ ଦାଢ଼ି ସଂଗ୍ରହ କଲେ । କାବୁଲିର ପୋଷାକ ଉଧାର ଆଣି ପିନ୍ଧିଲେ । ନିଜକୁ କାବୁଲିର ସଦ୍ୟ କାବୁଲରୁ ଆସିଥିବା ପୁତୁରା ବୋଲି ପରିଚୟ ଦେଲେ । ଗୋଟିଏ ଟୋକେଇରେ ସେଓ, ନାସ୍‌ପାତି, ଅଙ୍ଗୁର ଆଦି ଫଳ ଓ କିଛି ବାଦାମ ଆଦି ଶୁଖିଲା ଫଳ ରଖିଲେ । ସନ୍ଧ୍ୟା ସମୟରେ ଯେତେବେଳେ ରାଜା ସାହେବ ଏହି ଷଡ଼ଯନ୍ତ୍ରକାରୀମାନଙ୍କ ସହିତ ଗୁପ୍ତ ବୈଠକ କରନ୍ତି ସେହି ସମୟରେ ନଅରରେ ପହଞ୍ଚିବା ସମୟ ଧାର୍ଯ୍ୟ କଲେ । ଭାରତଚନ୍ଦ୍ର କାବୁଲି ପୋଷାକ ଛଦ୍ମ ଦାଢ଼ି ନିଶ ଆଦି ଲଗାଇ ମହାଜନର ପୁତୁରା ଭାବରେ ଟୋକେଇଟିକୁ ବୋହି ରାଜ ଦର୍ଶନକୁ ବାହାରିଲେ । ପୁତୁରା ସଦ୍ୟ ନିଜ ଦେଶରୁ ଆସିଛି, ଏ ଦେଶର ଭାଷା ବୁଝେନାହିଁ । ରାଜଦର୍ଶନ ନିମିତ୍ତ ଆସିଛି ଓ ସାମାନ୍ୟ ସଲାମି ଦେଉଛି ବୋଲି କହି କାବୁଲି ରାଜା ସାହେବଙ୍କୁ ଅଭିବାଦନ କଲେ । ଆଖିରେ କଳା ଚଷମା ପିନ୍ଧି ଭାରତଚନ୍ଦ୍ର ନିଜ ପରିଚୟ ଲୁଚାଇବାରେ ସକ୍ଷମ ହେଲେ । ରାଜା ସାହେବ କାବୁଲି ବ୍ୟବହାରରେ ପ୍ରୀତ ହୋଇ ତାକୁ କିଛି ସମୟ ବସାଇ

ବିଦାୟ ଦେଲେ। ଏହି ଛଦ୍ମବେଶ, କାବୁଲି ଓ ତାର ପୁତୁରା ଛଦ୍ମବେଶୀ ଦେଓ୍ୱାନଙ୍କ ବ୍ୟତୀତ ଆଉ କେହି ଜାଣି ନଥିଲେ। ନଅରରେ ସେମାନେ ଏକାଠି ବସି ଅଭିଯୋଗ ଫର୍ଦ୍ଦ ତିଆରି କଲେ ଓ ସମ୍ବଲପୁରର ପଲିଟିକାଲ ଏଜେଣ୍ଟଙ୍କ ପାଖକୁ ପଠାଇଲେ। ସାହେବ ଏହା ଗ୍ରହଣ କରି ଅନୁସନ୍ଧାନ ନିମିତ୍ତ ଦିନ ଧାର୍ଯ୍ୟ କଲେ। ନଅରକୁ ଯାଉଥିବା ରାଜରାସ୍ତା ମରାମତି ହେବା ବାହାନାରେ ଭାରତଚନ୍ଦ୍ର ରାସ୍ତା ଉଭୟ ପାଖରେ ଗୁଡ଼ିଏ ଟାଣ କଂକ୍ରିଟ ପଥର ଜମା କରି ରଖିଲେ। ସାହେବ ଆସିବା ପୂର୍ବଦିନ ରାତିରେ ବ୍ୟବସ୍ଥା ମୁତାବକ ରାଜ ନଅରରେ ଷଡ଼ଯନ୍ତ୍ରକାରୀମାନେ ମିଳିତ ହୋଇ କୌଶଳ ନିର୍ଣ୍ଣୟ କରିବା ସମୟରେ, ଭାରତଚନ୍ଦ୍ରଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀ ଘୋଡ଼ାରେ ଚଢ଼ି ଅନ୍ଧକାରରେ 'ପକଡ଼ୋ' 'ପକଡ଼ୋ' ବୋଲି ଯୋରରେ ରଡ଼ି କଲେ। ବାହାରେ ଘୋଡ଼ା ଟାପୁ ଶବ୍ଦ ମଧ୍ୟ ଶୁଣାଗଲା। ଦରଖାସ୍ତକାରୀ ଷଡ଼ଯନ୍ତ୍ରକାରୀଙ୍କ ମଧ୍ୟରୁ କେତେକଙ୍କୁ ମଧ୍ୟ ପୁଲିସ୍ ଖୋଜୁଥିଲା। ଏହା ସେମାନଙ୍କ ପ୍ରତି ନିର୍ଦ୍ଦିଷ୍ଟ ଭାବି ସେମାନେ ଛତ୍ରଭଙ୍ଗ ଦେଇ ନଅର ମଧ୍ୟରୁ ରାସ୍ତାକୁ ଆସି ଇତଃସ୍ତତ ଧାବମାନ ହେଲେ। ଅନ୍ଧକାରରେ ପଥରରେ ଝୁଣ୍ଟି ହୋଇ ପଡ଼ି କେତେଜଣ କ୍ଷତ ବିକ୍ଷତ ହେଲେ। ପରଦିନ ସେମାନେ ଚିକିତ୍ସା କରାଇଥିଲେ। ସେମାନଙ୍କର ନାମ ଡାକ୍ତରଖାନା ରେଜିଷ୍ଟରରେ ଦରଜ ଥିଲା। ଯଥା ସମୟରେ ଅନୁସନ୍ଧାନ ବେଳେ ଭାରତଚନ୍ଦ୍ର ଏହି ଷଡ଼ଯନ୍ତ୍ରକାରୀମାନଙ୍କର ପୂର୍ବ ରାତ୍ରିରେ ନଅରରେ ଏକାଠି ହୋଇ ମିଥ୍ୟା ଅଭିଯୋଗର ଷଡ଼ଯନ୍ତ୍ର କରୁଥିବା ଘଟଣା ପଲିଟିକାଲ୍ ଏଜେଣ୍ଟଙ୍କୁ ଜଣାଇଦେଲେ ଓ ସେମାନଙ୍କର ଛତ୍ରଭଙ୍ଗ ଫଳରେ ଶରୀରରେ କ୍ଷତ ଚିହ୍ନ ଦେଖାଇଲେ। ସାହେବ ଏହା ଏକ ଚକ୍ରାନ୍ତ ଓ କ୍ଷମତାଶୂନ୍ୟ ରାଜା ସାହେବଙ୍କର ଆଶୀର୍ବାଦରେ ହୋଇଛି ବୋଲି ଅନୁଭବ କଲେ। ଭାରତଚନ୍ଦ୍ର କୌଣସି ପ୍ରତିକୂଳ ଆଦେଶର ସମ୍ମୁଖୀନ ହେଲେନାହିଁ। ଚକ୍ରାନ୍ତକାରୀ ମାନଙ୍କର ବିଚାରରେ ଦଣ୍ଡ ହେଲା। ଫଳରେ ଦେଓ୍ୱାନଙ୍କର ଦୃଢ଼ ଶାସନ ପ୍ରତି ପ୍ରଜାମାନଙ୍କର ବିଶ୍ୱାସ ଆସିଲା । ସେ ପରିଶ୍ରମ କରି ପ୍ରଜାମାନଙ୍କର ସମସ୍ୟା ସମାଧାନ କରିବାକୁ ଉଦ୍ୟମ କଲେ ଓ କାର୍ଯ୍ୟକାଳ ସମ୍ପୂର୍ଣ୍ଣ କଲେ।

ରାଜ୍ୟରେ ଜଣେ ବିଦେଶାଗତ ଦେଓ୍ୱାନ ମ୍ୟାନେଜର ସୁଚାରୁରୂପେ ନିଜର ଦାୟିତ୍ୱ ନିର୍ବାହ କରିବା କେତେ କଷ୍ଟକର ତାହା ଏହିପରି ଘଟଣାରୁ ଜଣାଯାଏ। କ୍ଷମତା ଅପହାରୀ ସରକାରଙ୍କର ଶାସନକୁ ପଣ୍ଡ କରିବା ନିମିତ୍ତ ଦେଓ୍ୱାନଙ୍କୁ ବଦନାମ କରାଯାଉଛି ଓ କ୍ଷମତାଶୂନ୍ୟ ରାଜା ଯେ ଏହାର ପ୍ରଚ୍ଛନ୍ନ ସ୍ରଷ୍ଟା ଏହା ସାହେବ ଶେଷରେ ହୃଦ୍‌ବୋଧ କଲେ।



# ଢେଙ୍କାନାଳ ରାଜା

## ମହାରାଜା ଭାଗିରଥି ମହୀନ୍ଦ୍ର ବାହାଦୁର

ବ୍ୟାସକବି ଫକୀରମୋହନ କିଛିଦିନ ଢେଙ୍କାନାଳର ସହକାରୀ ମ୍ୟାନେଜର ଥିଲେ। ଗୋଟିଏ 'କ' ଶ୍ରେଣୀ ରାଜ୍ୟ ଢ଼େଙ୍କାନାଳ ରାଜ୍ୟର ଆୟତନ ୧୪୬୩ ବର୍ଗ ମାଇଲ। ଏହି ରାଜ୍ୟର ଲୋକସଂଖ୍ୟା ୨ଲକ୍ଷ ୮୪ ହଜାର ୩୨୬ । ବାର୍ଷିକ ଆୟ ପ୍ରାୟ ୫ଲକ୍ଷ ୧୫ ହଜାର ଟଙ୍କା। ରାଜା ସରକାରଙ୍କୁ ୫୦୯୯ ଟଙ୍କା ପେସ୍‌କିସ୍ ଦିଅନ୍ତି । ଢେଙ୍କାନାଳର ଶେଷ ରାଜା ଥିଲେ ଶଙ୍କରପ୍ରତାପ ମହୀନ୍ଦ୍ର ବାହାଦୁର। ସେ ୧୫ ନଭେମ୍ବର ୧୯୦୪ରେ ଜନ୍ମ ହୋଇଥିଲେ। ୧୯୧୯ ମସିହା ଅକ୍ଟୋବର ୨୭ ତାରିଖରେ ଗାଦି ପାଇଥିଲେ। ନିଜ ଆତ୍ମ ଚରିତ୍ରରେ ଫକୀରମୋହନ ତତ୍କାଳୀନ ରାଜାବାହାଦୁରଙ୍କ ଚରିତ ଉଲ୍ଲେଖ କରିଅଛନ୍ତି। ଗଡ଼ଜାତମାନଙ୍କ ମଧ୍ୟରେ ଜ୍ଞାନ ଓ ସଭ୍ୟତା ପ୍ରସାର ଦିଗରେ ଢେଙ୍କାନାଳ ଅଗ୍ରଗଣ୍ୟ ଥିଲା। ସେତେବେଳେ ରାଜା ଥିଲେ ମହାରାଜା ଭାଗିରଥି ମହୀନ୍ଦ୍ରବାହାଦୁର । ରାଜ୍ୟରେ ଶିକ୍ଷା ପ୍ରସାର ନିମିତ୍ତ ଇଂରାଜୀ ସ୍କୁଲ, ସଂସ୍କୃତ ଟୋଲ ସେ ପ୍ରତିଷ୍ଠା କରିଥିଲେ। ଦାତବ୍ୟ ଚିକିତ୍ସାଳୟ ପ୍ରଜାମାନଙ୍କର ରୋଗ ଚିକିତ୍ସା ନିମିତ୍ତ ରଖାଯାଉଥିଲା। ରାଜ୍ୟରେ ଗଡ଼ ମଧ୍ୟରେ ସୁପ୍ରଶସ୍ତ ରାଜଦାଣ୍ଡ ସେ ନିର୍ମାଣ କରାଇଥିଲେ। ସେ ନିଜେ ସଂସ୍କୃତ ଓ ଓଡ଼ିଆରେ ଅଭିଜ୍ଞ ଏବଂ ଜଣେ ନ୍ୟାୟିକ ଥିଲେ। ରାଜ୍ୟର ହାନିଲାଭ ସେ ଟିକିନିଖି ବୁଝୁଥିଲେ। ସନ୍ଧ୍ୟା ହେଲେ ସେ ପଣ୍ଡିତ ସଭାରେ ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ବିଷୟରେ ପଣ୍ଡିତମାନଙ୍କ ସହିତ ଚର୍ଚ୍ଚା କରୁଥିଲେ। ନ୍ୟାୟଶାସ୍ତ୍ର ଚର୍ଚ୍ଚା ମଧ୍ୟ ହେଉଥିଲା। କାଶୀ, ନବଦ୍ୱୀପ ଓ ଅନ୍ୟ ଦେଶୀୟ ରାଜ୍ୟର ପଣ୍ଡିତମାନେ ଆସି ତାଙ୍କ ସଭାରେ ଯୋଗଦାନ କରି ଶାସ୍ତ୍ର ଚର୍ଚ୍ଚା କରୁଥିଲେ ଓ ରାଜାନୁଗ୍ରହ ପ୍ରାପ୍ତ ହେଉଥିଲେ। ସେ ସଙ୍ଗୀତ ସାଗର ନାମକ ଗ୍ରନ୍ଥ ରଚନା କରିଥିଲେ ଓ ଲେଖକ ପଣ୍ଡିତମାନଙ୍କୁ ସହାୟତା ଦେବା ଉଦ୍ଦେଶ୍ୟରେ ଏକ ଟ୍ରଷ୍ଟ ଗଠନ କରିଥିଲେ। ରାଜା ଜଣେ ସୁଦକ୍ଷ ଶିକାରୀ ଥିଲେ। ହତ ବ୍ୟାଘ୍ର ମାନଙ୍କର ସଂଖ୍ୟା ଏକ ରେଜିଷ୍ଟରରେ ଲେଖି ରଖୁଥିଲେ ଓ ଏହା ୩୮୦ ପର୍ଯ୍ୟନ୍ତ ଥିଲା ବୋଲି ଶୁଣାଯାଉଥିଲା। ପ୍ରଜାମାନଙ୍କୁ ପ୍ରକୃତରେ ପୁତ୍ରବ୍ରତ ସେ ପାଳନ କରୁଥିଲେ। ରାଜ୍ୟ

ରାଜଧାନୀରେ ପ୍ରଜାମାନଙ୍କର ସ୍ନାନ ଓ ଜଳପାନ ନିମିତ୍ତ ସେ ବୃହତ୍ତମ ଭାଗିରଥି ସାଗର ଖନନ କରିଥିଲେ। ରାଜା ଅତିଶୟ ସ୍ଥୁଳ ଶରୀର ବିଶିଷ୍ଟ ଥିଲେ। କଟକ ପ୍ରିଣ୍ଟିଂ କମ୍ପାନୀକୁ ସେ ବହୁତ ସମୟରେ ଯାଉଥିଲେ ଓ ସେ ଏହାର ଏକ ପୃଷ୍ଠପୋଷକ ଥିଲେ। ଦ୍ୱିତଳ ଏହି କମ୍ପାନୀର ଅଫିସରେ ତାଙ୍କର କେବଳ ବ୍ୟବହାର ନିମିତ୍ତ ଦୁଇଟି ଚଉକି ବିଶେଷ ଭାବରେ ତିଆରି କରାଯାଇ ରଖାଯାଇଥାଏ। ଏଥିରେ ଦୁଇଜଣ ସାଧାରଣ ମଣିଷ ଅକ୍ଳେଶରେ ଏକ ସମୟରେ ବସି ପାରିବେ। ଥରେ ଗଡ଼ଜାତ ସୁପରିଟେଣ୍ଡେଣ୍ଟ କମିଶନରଙ୍କ ସେରସ୍ତାଦାର ବିଚିତ୍ରାନନ୍ଦ ଦାସଙ୍କ ତୁଳସୀପୁରସ୍ଥିତ ଉଦ୍ୟାନରେ ସମସ୍ତ ଗଡ଼ଜାତର ରାଜା ଓ ଦେଓ୍ୱାନ ମାନଙ୍କର ଏକ ସଭା ହୋଇଥିଲା। ବଡ଼ ଜମିଦାର ଓ ତାଙ୍କ ମ୍ୟାନେଜରମାନେ ମଧ୍ୟ ଯୋଗ ଦେଇଥିଲେ। ଫକୀରମୋହନ ନୀଳଗିରିର ମ୍ୟାନେଜର ଭାବେ ଯୋଗ ଦେଇଥିଲେ ଓ ରାଜା ଭାଗିରଥି ତାଙ୍କ ଆଚରଣରେ ମୁଗ୍ଧ ହୋଇ ତାଙ୍କୁ ସ୍ନେହ ଚକ୍ଷୁରେ ଦେଖୁଥିଲେ। ଅନ୍ୟ କୌଣସି ସ୍ଥାନରେ ସାକ୍ଷାତ ହେଲେ ମଧ୍ୟ ତାଙ୍କୁ  ଅଟକାଇ ସେ ବହୁ ସମୟ ଗଳ୍ପ କରୁଥିଲେ। ଥରେ ଫକୀରମୋହନ ନୀଳଗିରି ରାଜ ପରିବାରର କେତେକ ମନୋହରୀ ଜିନିଷ କଟକରେ ଏକ ନାମାଜାଦା ଦୋକାନରୁ ଖରିଦ କରି ଦୁଇ ହାତରେ ଧରି ଥାଆନ୍ତି। ଦୂରରୁ ରାଜାଙ୍କର ବିଶାଳ ଘୋଡ଼ାଗାଡ଼ି ଦେଖି ଦୋକାନ ମଧ୍ୟରେ ଲୁଚିଗଲେ ମାତ୍ର ତାଙ୍କ ଦୃଷ୍ଟି ପଡ଼ିବାରୁ ରାଜା ବଡ଼ ପାଟିରେ ତାଙ୍କୁ ଡାକିଲେ। ଅନାୟତ୍ତ ହୋଇ ସେ ଲୁଚିବା ସ୍ଥାନରୁ ବାହାରି ଦର୍ଶନକୁ ଆସିଲେ ମାତ୍ର ତାଙ୍କର ହାତ ଦୁଇଟି ବନ୍ଦ ଥାଏ। ମସ୍ତକ ନୁଆଁଇ ଅଭିବାଦନ କଲେ। ରାଜା ବହାଦୁର ସେହିପରି ଅବସ୍ଥାରେ ସଡ଼କ ଧାରରେ ଛିଡ଼ା ହୋଇ ଅଧଘଣ୍ଟାଏ ଯାଏ ଗପ କଲେ। ରାଜା ଭାଗିରଥିଙ୍କର ନିରହଙ୍କାର ସ୍ୱଭାବ ଓ ସଦାଶୟତାର ପରିଚୟ ଏଥିରୁ ଜଣାଯାଏ। ସେ ଗୁଣଗ୍ରାହୀ ଥିଲେ ଓ ମାତୃଭାଷାର ଉନ୍ନତି ନିମିତ୍ତ ସବୁ ପ୍ରକାର ଉଦ୍ୟମ କରୁଥିଲେ। ଫକୀରମୋହନ ସେତେବେଳକୁ ମାତୃଭାଷାର ରକ୍ଷା, ପ୍ରସାର ଓ ଛାପାଖାନା ସ୍ଥାପନ କାର୍ଯ୍ୟ କରି ଶିକ୍ଷିତ ମହଲରେ ସୁପରିଚିତ ହୋଇସାରିଥାନ୍ତି। ରାଜା ନିଜ ରାଜ୍ୟରେ ବନମାଳୀ ସିଂହ ନାମରେ ଜଣେ ନ୍ୟାୟନିଷ୍ଠ ସୁଶିକ୍ଷିତ ଧର୍ମପରାୟଣ ବ୍ୟକ୍ତିଙ୍କୁ ନିଜର ମ୍ୟାନେଜର ପଦରେ ନିଯୁକ୍ତ କରିଥିଲେ। ରାଜ ଶିକ୍ଷକ ଓ ଡାକ୍ତର ମଧ୍ୟ ସୁଯୋଗ୍ୟ ଥିଲେ। ଫକୀରମୋହନ ଢେଙ୍କାନାଳର ସହକାରୀ ମ୍ୟାନେଜର ପଦରେ ନିଯୁକ୍ତି ପାଇବା ବେଳକୁ ରାଜା ଭାଗିରଥି ପରଲୋକ ଗମନ କରିସାରିଥିଲେ।

ସ୍ୱର୍ଗୀୟ ରାଜା ଭାଗୀରଥି ଅପୁତ୍ରିକ ଥିଲେ। ସେ ବୌଦ ରାଜାଙ୍କ ତୃତୀୟ ପୁତ୍ରଙ୍କୁ ପୋଷ୍ୟ ପୁତ୍ର ଭାବେ ଗ୍ରହଣ କରିଥିଲେ। ଦୀନବନ୍ଧୁ ମହୀନ୍ଦ୍ର ବାହାଦୁର ରୂପ ଓ ଗୁଣରେ

ଭାଗୀରଥିଙ୍କର ଉପଯୁକ୍ତ ଦାୟାଦ ଥିଲେ। ତାଙ୍କର ଯେପରି ଲାବଣ୍ୟମୟ ମୂର୍ତ୍ତି ସେହିପରି ପ୍ରଶସ୍ତ ଚିତ୍ତ । ସମସ୍ତ ଲୋକଙ୍କ ପ୍ରତି ତାଙ୍କର ସମଦୃଷ୍ଟି ଓ ଦୟାଭାବ ଥିଲା। ସେ ନାବାଳକ ଥିବା ସମୟରେ ରାଜ୍ୟ ତହବିଲରୁ ତାଙ୍କ ଖର୍ଚ୍ଚ ପାଇଁ ନିର୍ଦ୍ଦିଷ୍ଟ ଭତ୍ତା ଥିଲା। ମାତ୍ର ଅତ୍ୟନ୍ତ ଦାନଶୀଳ ଥିବାରୁ ଏହା ତାଙ୍କୁ ଯଥେଷ୍ଟ ହେଉନଥିଲା। ଗୋପନରେ ସେ ଅନ୍ୟ ଠାରୁ ଧାର କରି ପରେ ପରିଶୋଧ କରୁଥିଲେ। ସିଂହାସନ ପ୍ରାପ୍ତିର ଅଳ୍ପଦିନ ପରେ ସେ ପରଲୋକ ଗମନ କଲେ।

ମହରାଜା ଭାଗୀରଥିଙ୍କର ପରଲୋକ ଗମନ ପରେ ରାଜ କର୍ମଚାରୀଙ୍କ ସଂଖ୍ୟା ଯୁକ୍ତିଯୁକ୍ତ ଭାବରେ ନିରୂପଣ କରିବା, ରାଜ୍ୟ ରାଜସ୍ୱ ନିୟମିତ କରିବା ନିମିତ୍ତ ସୁପରିଟେଣ୍ଡେଣ୍ଟ କମିଶନର ଢେଙ୍କାନାଳ ଆସିଲେ। କେତେକ ବିଭାଗର କର୍ମଚାରୀ ସଂଖ୍ୟା ନିରୁପଣ ଉତ୍ତାରେ ରାଜାଙ୍କର ନିଯୋଗ ଖଟଣି ଭୃତ୍ୟ ବନ୍ଦୋବସ୍ତ ଆରମ୍ଭ ହେଲା। ସେହି ବିଭାଗରେ ୭୨ ଜଣ ଚାକର ଥିଲେ। କମିଶନର ଦେଖିଲେ ଏତେ ଗୁଡ଼ାଏ ଚାକର ରହି ବିଶୃଙ୍ଖଳା କରିବା ଉଚିତ ନୁହେଁ। ସେମାନଙ୍କୁ ସେ କମାଇବାକୁ ପଦକ୍ଷେପ ନେଲେ। କାଠି ଲାଗି ଚାକର ଥିଲେ ଚାରିଜଣ। ଜଣେ ଜଙ୍ଗଲରୁ ଦାନ୍ତକାଠି ସକାଶେ ଡାଳଖଣ୍ଡେ କାଟି ଆଣେ। ଜଣେ କାଠି ପ୍ରସ୍ତୁତି କରେ। ଆଉ ଜଣେ ବାହାର ପାଖୁ ସେ ଦାନ୍ତକାଠି ନେଇ ମଣିମାଙ୍କ କାଠି ଲାଗି ସ୍ଥାନରେ ଥୋଇଦିଏ। ଚତୁର୍ଥ ଚାକରଟି ଶ୍ରୀଛାମୁଙ୍କ ଶ୍ରୀହସ୍ତକୁ କାଠି ବଢ଼ାଇ ଦିଏ। କମିଶନର ଏହାକୁ ଜଣକୁ କମାଇ ଦେଲେ । ବ୍ୟୟ ସଙ୍କୋଚ ନିମିତ୍ତ ଅନ୍ୟ ବିଭାଗରୁ ମଧ ଏହି ମାପରେ ସଂଖ୍ୟା କମାଇଲେ। ଖନ୍ଦା ଘରେ ସୁଆର (ପାଚକ) ବ୍ରାହ୍ମଣ ଥିଲେ ଛଅଜଣ। ଦୁଇ ଜଣଙ୍କୁ ରଖି ସେ ଅନ୍ୟମାନଙ୍କୁ ବିଦା କରିଦେଲେ। ବିଦା ହୋଇଥିବା ସୁଆର ମଧ୍ୟରୁ ଜଣେ କଟକ ଜିଲ୍ଲାର ଲୋକ ଥିଲେ। ଅନେକ ଦିନରୁ ରହି ସେ ଢେଙ୍କାନାଳରେ ନିଜର ଘର କରିଥିଲେ। ତାଙ୍କର ଜୀବିକା ପାଇଁ ଅନ୍ୟକିଛି ଉପାୟ ନଥିଲା। ସେ ସହକାରୀ ମ୍ୟାନେଜରଙ୍କୁ ତାଙ୍କ ପାଇଁ ସୁପାରିଶ କରିବାକୁ ଧରିଲେ। ଫକୀରମୋହନ ପାଚକଟି ରାଜାଙ୍କ ପାଇ ମିଷ୍ଟାନ୍ନ ପ୍ରସ୍ତୁତି କରେ। ପାଉରୁଟି ତିଆରି କରି ଜାଣେ। ସେ ନରହିଲେ ରାଜାଙ୍କର ଚଳିବ ନାହିଁ ବୋଲି ଜଣାଇବାରୁ ସାହେବ ତାଙ୍କୁ ରଖିବାକୁ ହୁକୁମ କଲେ। ମାତ୍ର ସଦାଶୟ ସୁପରିଟେଣ୍ଡେଣ୍ଟ ସାତଟଙ୍କା ତା' ପାଇଁ ଅଳ୍ପ ମଜୁରି ଜାଣି ଏହାକୁ ତିରିଶ ଟଙ୍କା କରିଦେଲେ। ଲୋକଟି ବହୁତ କହି ପୋଛି ପାରେ। ରହିଯିବା ଯୋଗୁ ସେ ଫକୀରମୋହନଙ୍କ ପ୍ରତି କୃତଜ୍ଞ ଥାଏ। ତାଙ୍କ ବସାକୁ ଯାଇ ତାଙ୍କ ଲଡୁ ତିଆରି କରିଦେଇ ଆସେ। ଢେଙ୍କାନାଳ ରାଜ କଚେରୀରେ ଓକିଲ ମୁକ୍ତାର ନଥିଲେ।

ତାର ଓଡ଼ିଆ ଲେଖାପଢ଼ା ଜ୍ଞାନ ଦେଖି ଫକୀରମୋହନ ତାକୁ କଚେରୀରେ ଭଲ ଆୟ କରିବା ଉଦ୍ଦେଶ୍ୟରେ ମୁକ୍ତାର ଲାଇସେନ୍ସ ଦିଆଇଲେ। ମାତ୍ର କିଛିଦିନ ଉତ୍ତାରେ ତାର ଗୋଟିଏ ମକଦ୍ଦମା ଡିସ୍‌ମିସ୍ ହେବାରୁ ସେ ସହକାରୀ ମ୍ୟାନେଜରଙ୍କ ବିରୁଦ୍ଧରେ ଗଲା। ଢେଙ୍କାନାଳ କଚେରୀର ଜମାଦାର ଗୋଟିଏ ଗଞ୍ଜୋଡ଼। କୌଣସି କାମ କରେନାହିଁ। ଗଞ୍ଜେଇ ଖାଇ ବୁଲୁଥାଏ। ନିଶାସକ୍ତ ହୋଇ କଚେରୀରେ ବସି ଗୋଳମାଳ କରେ। ବାରମ୍ବାର ତାଗିଦ ସତ୍ତ୍ୱେ କିଛି ଫଳ ହେଲାନାହିଁ। ଦିନେ ଫକୀରମୋହନ ଇଜଲାସରେ ବସି ସାକ୍ଷୀ ଜମାନବନ୍ଦୀ ନେଉଥିବାବେଳେ ଗୋଳମାଳ କଲାରୁ ଅଦାଲତ ଅବମାନନା ଅଭିଯୋଗରେ ତାକୁ ପାଞ୍ଚ ଟଙ୍କା ଜୋରିମାନା କଲେ। ସେ ମଧ୍ୟ ତାଙ୍କର ଶତ୍ରୁ ହେଲା। କଚେରୀର ମହାଫିଜ ଅମଲା ମଧ୍ୟ ତାଙ୍କର ଶତ୍ରୁତା କଲେ । ଅସୁସ୍ଥ ଥାଇ ଫକୀରମୋହନ କଚେରୀରେ ଅଳ୍ପ ସମୟ ବସୁଥିଲେ। ପେସ୍କାର ତାଙ୍କ ହୁକୁମରେ ଡିସ୍‌ମିସ୍ ସ୍ଥଳେ ଡିଗ୍ରୀ, ଡିଗ୍ରୀକୁ ଡିସ୍‌ମିସ୍, ଜୋରିମାନା ଶହେକୁ ଦଶ ଓ ପାଞ୍ଚକୁ ପଚାଶ କରି ପକ୍ଷମାନଙ୍କ ଠାରୁ ଅର୍ଥ ସଂଗ୍ରହ କରୁଥାଏ। ଅସୁସ୍ଥତା ଥିବାରୁ ସେରସ୍ତାର ରେଜିଷ୍ଟରମାନ ଯାଞ୍ଚ କରିବାକୁ ସେ ଅକ୍ଷମ ଥିବାରୁ ଏହି ଜାଲିଆତି ଦେଖିପାରୁ ନଥିଲେ। ଫଳରେ ରେଜିଷ୍ଟରରେ ଅନେକ ଗୁଡ଼ିଏ କାଟ ଛାଣ୍ଟ ରହିଗଲା। ସୁପରିଟେଣ୍ଡେଣ୍ଟଙ୍କର ଯାଞ୍ଚ ସମୟରେ ଏହା ଜଣାପଡ଼ିଲା । ସଂଶୋଧନ ପାଇଁ ସମୟ ଦେଲେ ମଧ୍ୟ ତ୍ରୁଟି ଦର୍ଶନୀୟ ଭାବରେ ରହିଗଲା। ତାଙ୍କର ଶତ୍ରୁମାନେ ଏକତ୍ର ହୋଇ ସହକାରୀ ମ୍ୟାନେଜର ଲାଞ୍ଚ ନେଉଥିବା, ନିଷ୍ପତ୍ତି ଶୁଣାଇବାର ଅନେକ ଦିନ ପରେ ରାୟ ଲେଖୁଥିବା, ସରଜମିନକୁ ନଯାଇ ପରିଦର୍ଶନ ଲେଖୁଥିବା, ରାୟ ବଦଳାଉଥିବା, ସିରସ୍ତାକୁ ଆୟତ୍ତରେ ରଖିବାକୁ ଅକ୍ଷମ ଥିବା, ବେନାମୀ ଅଭିଯୋଗ ଆଣିଲେ। ତାଙ୍କର ପରମ ହିତୈଷୀ ସହକାରୀ ସୁପରିଟେଣ୍ଡେଣ୍ଟ ନନ୍ଦକିଶୋର ଦାସଙ୍କ ଗୁପ୍ତ ଚିଠିର ପରାମର୍ଶ ଅନୁଯାୟୀ ଫକୀରମୋହନ ଢେଙ୍କାନାଳ ସହିତ ସମ୍ପର୍କ ତ୍ୟାଗ କରି ଚାଲି ଆସିଲେ।

ରାଜା ନାବାଳକ ହୋଇଥିବା ହେତୁ ଢେଙ୍କାନାଳ ବହୁତ ଦିନ କୋର୍ଟ ଅଫ ୱାର୍ଡ଼ସ ଶାସନରେ ଶାସିତ ହେଲା। ଫଳରେ ଅନେକ ଦିନ ପରେ ଭାରତଚନ୍ଦ୍ର ନାୟକ ଢେଙ୍କାନାଳରେ ଦୁଇ ବର୍ଷ ସହକାରୀ ମ୍ୟାନେଜର ଥାଇ ରାଜ୍ୟ ଅନ୍ୟ ପଡ଼ୋଶୀ ଗଡ଼ଜାତ ତୁଳନାରେ ଉନ୍ନତ ବୋଲି ଲେଖିଛନ୍ତି। ସୁଶାସନ ଫଳରେ ରାଜ୍ୟରୁ ବହୁ ଲେଖକ ସାହିତ୍ୟିକ ଜ୍ୟୋତିଷ ଓ ଚିକିତ୍ସକ ବାହାରିଥିଲେ।





ଶେଷ ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜ

# କେନ୍ଦୁଝର ରାଜା

## ଧନଞ୍ଜୟ ନାରାୟଣ ଭଞ୍ଜ ରାଜାବାହାଦୁର

୧

'କ' ଶ୍ରେଣୀ କେନ୍ଦୁଝର ରାଜ୍ୟର ଆୟତନ ପ୍ରାୟ ୩ ହଜାର ୯୬ ବର୍ଗମାଇଲ। ଲୋକସଂଖ୍ୟା ୪ ଲକ୍ଷ ୬୦ ହଜାର। ରାଜ୍ୟର ଆୟ ୯ ଲକ୍ଷ ୪୨ ହଜାର ଓ ରାଜା ସରକାରଙ୍କୁ ୧୭୧୦ ଟଙ୍କା ପେସ୍‌କିସ୍ ଦିଅନ୍ତି। ୧୮୯୧ ମସିହାରେ ଗାଦି ପାଇଥିବା ମହାରାଜା ଧନଞ୍ଜୟ ଜଣେ ବିଚକ୍ଷଣ ଶାସକ ଥିଲେ । ସମଗ୍ର ରାଜ୍ୟର ଭୂଗୋଳ ତାଙ୍କର ନଖ ଦର୍ପଣରେ ଥିଲା। ମୁଖିଆ ଲୋକମାନଙ୍କର ସ୍ୱଭାବ ଚରିତ୍ର ତାଙ୍କୁ ଭଲ ଭାବେ ଜଣାଥିଲା। ରୁଗ୍ଣ କ୍ଷୀଣ ଶରୀରଧାରୀ ଏହି ବାକପଟୁ ଓ କର୍ମବୀର ରାଜା ସକାଳୁ ମଧ୍ୟରାତ୍ର ପର୍ଯ୍ୟନ୍ତ ରାଜକାର୍ଯ୍ୟ ସମାପନ କରୁଥିଲେ। ମହାରାଜା ବିଶେଷ ଅଧ୍ୟୟନଶୀଳ ଥିଲେ। ବଙ୍ଗବାସୀ, ସଞ୍ଜିବନୀ, ଉତ୍କଳ ଦୀପିକା ଆଦି ସମ୍ବାଦପତ୍ର ଗୁଡ଼ିକ ସେ ମନଯୋଗ ସହିତ ପାଠ କରୁଥିଲେ । ତାଙ୍କ ପୁସ୍ତକାଳୟରେ ତତ୍କାଳୀନ ପର୍ଯ୍ୟନ୍ତ ପ୍ରକାଶିତ ଅନେକ ଗୁଡ଼ିଏ ଉପାଦେୟ ବଙ୍ଗଳା ଓ ଓଡ଼ିଆ ପୁସ୍ତକ ସଂଗୃହୀତ ହୋଇଥିଲା। କଟକରେ ରେଭେନ୍ସା

କଲେଜ, ପ୍ୟାରୀମୋହନ ଏକାଡ଼େମୀ ଓ କଟକ ବାଳିକା ଉଚ୍ଚ ବିଦ୍ୟାଳୟକୁ ସେ ମୁକ୍ତ ହସ୍ତରେ ଦାନ କରି ଖ୍ୟାତି ଅର୍ଜନ କରିଥିଲେ। ରାଜ୍ୟ ଶାସନ ସମ୍ପର୍କରେ ସମସ୍ତ କାର୍ଯ୍ୟ ସ୍ୱଚକ୍ଷୁରେ ଦେଖୁଥିଲେ। ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ତାଙ୍କର ବିଶେଷ ଉତ୍ସାହ ଓ ଇଚ୍ଛା ଥିଲା ମାତ୍ର ତାଙ୍କୁ ଉପଯୁକ୍ତ କାର୍ଯ୍ୟ ନିର୍ବାହୀ କର୍ମଚାରୀ ମିଳୁ ନ ଥିବାରୁ ତାଙ୍କ ଆଶାନୁରୂପ ରାଜ୍ୟର ଉନ୍ନତି ହୋଇପାରୁନଥିଲା। ଆନନ୍ଦପୁର ଠାରୁ ଛଅ ମାଇଲ ଦକ୍ଷିଣରେ ଦେଗାଁ ନାମକ ଗ୍ରାମରେ କୁଟଳେଶ୍ୱର ମହାଦେବଙ୍କ ମନ୍ଦିର। ଏହା ଅତି ପ୍ରାଚୀନ। ଉତ୍କଳର ସ୍ୱାଧୀନ ରାଜା ଯଯାତି କେଶରୀଙ୍କ ସମୟରେ ଏହା ନିର୍ମିତ ବୋଲି କୁହାଯାଏ। ମନ୍ଦିରର ଅଳ୍ପ ଦୂରରେ ବ୍ରାହ୍ମଣୀ ନଦୀର କୁଶଭଦ୍ରା ନାମକ ଏକ ଶାଖା ନଦୀ। ଏହାର ପ୍ରବଳ ସ୍ରୋତ କୂଳ ଖାଇ ମନ୍ଦିରକୁ ପ୍ରାୟ ଗର୍ଭସାତ କରିବାକୁ ଆରମ୍ଭ କରିଦେଲା। କୌଣସି ବହୁଦର୍ଶୀ ସ୍ଥପତିର ବିନା ପରାମର୍ଶରେ ମହାରାଜା ନିଜ ତତ୍ତ୍ୱାବଧାନରେ ସାଧାରଣ ପଥର ମିସ୍ତ୍ରୀଙ୍କ ଦ୍ୱାରା ନିଜ କଳ୍ପନାରେ ଉତ୍ତର ଦିଗର ପଥର ବନ୍ଧ ନିର୍ମାଣ କରି ମନ୍ଦିରକୁ ସୁରକ୍ଷା ଦେଇଥିଲେ। କାରିଗର କୁଲି ମୂଲିଆ ଶସ୍ତା ଥିଲେ ମଧ୍ୟ କଟକ କାଠଯୋଡ଼ି ବନ୍ଧ ପରି ଏହାକୁ ନିର୍ମାଣ କରିବାକୁ ସେ ରାଜକୋଷରୁ ଦେଢ଼ ଲକ୍ଷ ଟଙ୍କା ବ୍ୟୟ କରିଥିଲେ। ବ୍ରାହ୍ମଣୀ ନଦୀର ଉପତ୍ତିସ୍ଥଳ ଗୋନାସିକା ଘନ ଅରଣ୍ୟ ମଧ୍ୟରେ। ସେଠାରେ ତାଙ୍କ ତତ୍ତ୍ୱାବଧାନରେ ଗୋଟିଏ ବିଶାଳ ମନ୍ଦିର ଓ ନିଜ ଗଡ଼ରେ ବିରାଜିତ ଶ୍ରୀ ବଳଦେବ ଜିଉଙ୍କର ବିଶାଳ ଗୁଣ୍ଡିଚା ମନ୍ଦିର ସେ ତିଆରି କରାଇଥିଲେ। କେନ୍ଦୁଝର ରାସ୍ତା ସମୀପ ବୁଢ଼ାପଥର ନାମକ ସ୍ଥାନରେ ପୁରାତନ ନୀଳକଣ୍ଠ ମହାଦେବ ବିରାଜିତ। ସେଠାକୁ ଯିବାକୁ କୌଣସି ରାସ୍ତା ନଥିଲା। ପୂଜକ ଓ ଦର୍ଶକ ଭକ୍ତମାନେ ଲୁହା ଶିକୁଳି ଅବଲମ୍ବନ କରି ପଥର ଉପରକୁ ଉଠୁଥିଲେ। ମହାରାଜା ଧନଞ୍ଜୟ ମହାଦେବଙ୍କର ମନ୍ଦିର ଓ ଉଠିବାକୁ ୨୫୦ ହାତର ଉଚ୍ଚ ଶିଡ଼ି ନିର୍ମାଣ କରାଇ ଦେଇଥିଲେ। ଭୂୟାଁପୀଢ଼ ନିକଟ ପାଟଣାଣଠାରେ ବିରାଜିତ ପାଟେଶ୍ୱର ମହାଦେବଙ୍କ ବିଶାଳ ମନ୍ଦିର ମଧ୍ୟ ମହାରାଜା ନିଜ ତତ୍ତ୍ୱାବଧାନରେ କରାଇଥିଲେ। ମାତ୍ର ରାଜ୍ୟର ଅଧିକାଂଶ ରାଜକର୍ମଚାରୀ ଦୁଷ୍ଚରିତ୍ର ଅତ୍ୟାଚାରୀ ଓ ସ୍ୱାର୍ଥପର ହେତୁ ମହାରାଜାଙ୍କୁ ସୁନାମ ମିଳୁ ନଥିଲା। ରାଜ୍ୟଟି ପୂର୍ବାଞ୍ଚଳ ଆନନ୍ଦପୁର ଓ ପଶ୍ଚିମ ନିଜଗଡ଼ ଦୁଇ ଭାଗରେ ବିଭକ୍ତ ଥିଲା । ଆନନ୍ଦପୁର ରାଜ୍ୟର ଭୂଷଣ ସ୍ୱରୂପ ଥିଲା। ସବୁ ସ୍ୱଚ୍ଛଳ କୃଷକ ଓ ଅନେକ ବ୍ୟବସାୟୀ ଏହି ଅଞ୍ଚଳରେ ବାସିନ୍ଦା ଥିଲେ। ପଶ୍ଚିମ ବିଶେଷ କରି ଭୂୟାଁମାନଙ୍କର ପୀଠସ୍ଥଳୀ । ଆନନ୍ଦପୁରର ଆୟ ବେଶୀ। ଦେୱାନ ଏହାର ଭାରପ୍ରାପ୍ତ କର୍ମଚାରୀ ଥିଲେ।

ନିଜ ଗଡ଼ ନିକଟରେ ମାଛ କାନ୍ଦଣା ନାମରେ ଗୋଟିଏ ଜୋର। ଏହା ଉତ୍ତର ଦିଗରୁ ବହି ଯାଇ ବୈତରଣୀ ନଦୀରେ ପଡ଼ିଅଛି। ନିଜଗଡ଼ ମୁକାମରୁ ପାହାଡ଼ିଆ ଅଞ୍ଚଳକୁ ଯିବାକୁ ଯେଉଁ ବାଟ ଅଛି ସେଥିରେ ଅଳ୍ପବାଟ ଗଲେ ଏହି ଜୋର ପଡ଼େ। ପର୍ବତ ଶୃଙ୍ଗର ଅତି ଅଳ୍ପ ଅଂଶ ଭାଙ୍ଗି ଦେଇ ପୂର୍ବ ଦିଗକୁ ଗୋଟିଏ ମାହାରା ଖୋଲିଲେ ଜଳ ଉତ୍ତରକୁ ନ ବହି ପୂର୍ବ ଦିଗକୁ ଯାଇ ଗଡ଼ ନିକଟ ବିଲ ମାନଙ୍କରେ ପାଣି ମାଡ଼ି ଯାଆନ୍ତା। ସେଥିପାଇଁ ଯୋର ଖୋଳା କାମ ଚାଲିଥିବା ବେଳେ ଦେୱାନ ଫକୀରମୋହନ କାମ ଦେଖିବାକୁ ଯାଇଥିଲେ। ସେ ଜୋରର ସ୍ରୋତ ଅଟକାଇ ଗୋଟିଏ ବନ୍ଧ ବାନ୍ଧି ହ୍ରଦ ପରି ପାଣି ଜମାକରି ତାହା ଜଳପୂର୍ଣ୍ଣ କଲେ ଏହା ଜଳସେଚନ ଓ ଗଡ଼ବାସୀମାନଙ୍କର ସ୍ନାନ, ପାନ ଓ ପରିବା ଫସଲ ଉତ୍ପାଦନରେ ସହାୟକ ହେବ ବୋଲି ଯୋଜନା କଲେ। ସେଥିରେ ଆନୁମାନିକ ୧୦ ହଜାର ଟଙ୍କା ଖର୍ଚ୍ଚ ହେବ ବୋଲି ତାଙ୍କ ସହିତ ଥିବା ବିଚିତ୍ରାନନ୍ଦ ଦାସ ନାମକ ଜଣେ ସହକାରୀ ମ୍ୟାନେଜରଙ୍କୁ ଜଣାଇଲେ । ସେ ମହାରାଜାଙ୍କୁ ଜଣାଇଲେ ୧୦ ହଜାର ଟଙ୍କା ଖର୍ଚ୍ଚ ହେବ। ପ୍ରକୃତରେ ନିର୍ଦ୍ଦିଷ୍ଟ ଯୋଜନା ଯାହା ଥିଲା ତାହା ତାଙ୍କୁ ଜଣାଇଲେ ନାହିଁ। ମହାରାଜା କହିଲେ ସବୁଥିରେ ମ୍ୟାନେଜର ଖାଲି ଟଙ୍କା ଖର୍ଚ୍ଚ କରିବାକୁ ଚାହାଁନ୍ତି। ଏ ବିଷୟରେ ତାଙ୍କ ସହିତ ମହାରାଜା ଆଲୋଚନା କଲେ ନାହିଁ। କଟକରୁ ଖୁବ ମୋଟା ଚିତାଏ ଉଚ୍ଚର ଇସ୍ପାତ ଲୁହାଶାବଳ ଫକୀରମୋହନ ମଗାଇଲେ। ପର୍ବତ ଶୃଙ୍ଗ ଭାଙ୍ଗି ନିଜଗଡ଼ ବିଲକୁ ପାଣି ଯିବାକୁ ମାହାରା ଖୋଳା ଚାଲିଲା। ସହକାରୀ ମ୍ୟାନେଜର ବିଚିତ୍ରାନନ୍ଦଙ୍କ ତତ୍ତ୍ୱବଧାନରେ ଓ ତାଙ୍କ ଇଞ୍ଜିନିୟିର ଜ୍ଞାନରେ ଏହି କାମ ଚାଲିଲା। ଭୂୟାଁ ପ୍ରଜାମାନଙ୍କୁ ବେଠିରେ ଧରି ଆଣି ଏହି କାମରେ ଲଗାଗଲା। ବିଚିତ୍ରାନନ୍ଦ ଖୁବ ପରିଶ୍ରମୀ ଓ କର୍ମଠ ଥାଇ ପେସକାରରୁ ଉଠି ସହକାରୀ ମ୍ୟାନେଜର ହୋଇଥାଆନ୍ତି। କାମ କରିବାରେ ତାଙ୍କର ଅଦମ୍ୟ ଉତ୍ସାହ। ଭୂୟାଁ ଖୋଳିବାରେ ଲାଗି ଥାଆନ୍ତି। ୧୦/୧୫ ସେର ଓଜନ ଲୁହା ଶାବଳରେ ପଥର ଭାଙ୍ଗିବାକୁ ପଡ଼େ। ଦିନରେ ବାରଟା ପରେ ଖାଇବାକୁ ଦୁଇ ଘଣ୍ଟା ଛୁଟି ମିଳେ। ଯେଉଁ ବେଠିଆ କାମ ପାଇଁ ଘରୁ ଚାଉଳ ବାନ୍ଧି ଆଣିଥାଏ ସେ ରୋଷେଇ କରି ଖାଏ। ଯେଉଁ କାଙ୍ଗାଳର ଘରେ କିଛି ନାହିଁ ସେଇଟା ଉପାସରେ ରହେ। ବେଠିଆକୁ ପୁଣି ଚାଉଳ କଣ ଦିଆଯିବ ? ଏଇ ନୀତିରେ କାମ ଚାଲେ। ସକାଳୁ ସଞ୍ଜ ଯାଏ ପଥର ଭଙ୍ଗା କାମ ଚାଲେ। କାମରେ କିଞ୍ଚିତ ଢିଲା କଲେ ବେଠିଆ ମାଡ଼ ଖାଏ । ଭୂୟାଁମାନେ ଅପରାଧ ପରାୟଣ। ବଣୁଆଁ ହାଣ୍ଡିଆଖିଆ ଓ ସାମାନ୍ୟ କାରଣରେ ଉତ୍ତେଜିତ ହୋଇ ଶର ତରବାରୀ ଚାଳନା କରିଥାଆନ୍ତି। ଏହି ମହାରାଜାଙ୍କ ଗାଦିନସିନ ସମୟରେ ସେମାନେ

ରାଜ୍ୟର ଦେଓ୍ଵାନଙ୍କୁ ହତ୍ୟା କରିଥିଲେ। ନିତାନ୍ତ ଆରଣ୍ୟକ। ନିଜ ରାଜ୍ୟ ବାହାରକୁ ଯିବା ନଥାଏ। ଅନ୍ୟ ଦେଶର ଅସ୍ତିତ୍ୱ ଜଣାନଥାଏ। ସେମାନଙ୍କର ବିଶ୍ୱାସ ଥିଲା ଜଣେ ମହାରାଣୀ ଅଛନ୍ତି। ପୃଥିବୀର ସବୁ ରାଜାଙ୍କ ଉପରେ ସେ ଅଧିଶ୍ୱରୀ। ତାଙ୍କ ରାଜଧାନୀ କଟକରେ। ଅତ୍ୟାଚାରୀ ରାଜା ବଦଳରେ ସେ ମହାରାଣୀ ତାଙ୍କ ପୋଷ୍ୟପୁତ୍ର ଧରଣୀଧରକୁ ମହାରାଜା ପଦରେ ନିଯୁକ୍ତ କରିଅଛନ୍ତି। କଷ୍ଟ ପାଇ ବିରକ୍ତ ହୋଇ ସେମାନେ ଏକଯୋଟ ହୋଇ ମେଳି କଲେ। ସେମାନଙ୍କର ଇଚ୍ଛା ଅତ୍ୟାଚାରୀ ବିଚିତ୍ରାନନ୍ଦଙ୍କୁ ହାଣି ପକାଇବେ ଓ ସେମାନେ ରାଜଗାଦିରେ ବସାଇଥିବା ରାଜାଙ୍କୁ ଅତ୍ୟାଚାର କରୁଥିବାରୁ ନିକାଲି ଦେବେ। କେନ୍ଦୁଝରର ରାଜା ସିଂହାସନରେ ବସିବା ବେଳେ ଭୂୟାଁମାନେ ପ୍ରଧାନ ଭୂମିକା ରଖନ୍ତି । ଏହାର ଐତିହାସିକ କାରଣ ଥିଲା, ଏକ ସମୟରେ ମୟୂରଭଞ୍ଜ କେନ୍ଦୁଝର ଗୋଟିଏ ରାଜ୍ୟ ଥିଲା। ରାଜଧାନୀ ଭୂୟାଁ ମାନଙ୍କୁ ଦୂରହେଲା । ସେମାନେ ହାରିଗୁହାରି ଶୁଣାଇବାକୁ ଯାଇପାରୁନଥିଲେ। ରାଜବଂଶର ଗୋଟିଏ ପିଲାକୁ ସେମାନେ ଚୋରାଇ ଆଣି ତାକୁ ତାଙ୍କର ରାଜା କଲେ। ରାଜଗାଦିରେ ବସାଇବାକୁ ଯିବାବେଳେ ସେମାନଙ୍କର ଘୋଡ଼ା ହାତୀ ନଥିଲେ। ଯୋଡ଼ାଏ ଭୂୟାଁ ଆଣ୍ଠେଇ ହାତୀ ଘୋଡ଼ା ହେଲେ। ଅପହୃତ ରାଜା ସେମାନଙ୍କ ଉପରେ ବସିଲେ ଓ ଗାଦୀନସିନ ହେଲେ। ଗୋଟାଏ କଳ୍ପିତ ଅପରାଧି ସିଂହାସନ ଆଗରେ ଲମ୍ବ ଭାବରେ ପଡ଼ିଗଲା। ଶିଶୁରାଜା ତା' ବେକରେ ଗୋଟିଏ ଲଙ୍ଗା ତରବାରୀ ଝୁଲାଇ ଦେଲେ, ଅପରାଧ କଲେ ଭୂୟାଁକୁ ହାଣି ପକାଇବାର କ୍ଷମତା ତାକୁ ଦିଆଗଲା। ଏହା ତାହାର ପ୍ରତୀକ ହେଲା। ବର୍ତ୍ତମାନ ମଧ କେନ୍ଦୁଝର ରାଜା ଗାଦିରେ ବସିବା ବେଳେ ଭୂୟାଁମାନେ ଏହି ଅଭିନୟ କରିଥାଆନ୍ତି। ଧରଣୀଧର ଗୋଟିଏ ଭୂୟାଁ ପିଲା। ଜନ୍ମ ୧୮୬୪ ମସିହାରେ। ମହାରାଜା ଧନଞ୍ଜୟ ତାକୁ କଟକ ସର୍ଭେ ସ୍କୁଲରେ ପାଠ ପଢ଼ାଇଥିଲେ। ସ୍କୁଲରୁ ପାସ୍ କରି ସେ କେନ୍ଦୁଝର ଦରବାରରେ କିଛିଦିନ ସର୍ଭେୟର କାର୍ଯ୍ୟ କରିଥିଲା। ସେ ପ୍ରଚାର କରିଦେଲା ଯେ ମହାରାଜା ପ୍ରଜା ପୀଡ଼କ ଓ ଅତ୍ୟାଚାରୀ। ସେ କଟକରୁ ମହାରାଣୀଙ୍କର ଧର୍ମପୁତ୍ର ହୋଇ ଆସିଛି। ରାଜ୍ୟରେ ନ୍ୟାୟ ବିଚାର କରିବ। ଭୂୟାଁ ସର୍ଦ୍ଦାର ପ୍ରଜାମାନେ ନାନା କାରଣରୁ ମହାରାଜାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ। ସମସ୍ତେ ତାହାର ବଶତା ସ୍ୱୀକାର କରି ତାକୁ ସର୍ଦ୍ଦାର ମାନି ରାଜଶକ୍ତିକୁ ଅମାନ୍ୟ କରିବାରେ ଲାଗିଲେ। ମେଳିଆମାନେ, ଧରଣୀଧର ଆଦେଶ ଅମାନ୍ୟକାରୀ ଅନ୍ୟ ପ୍ରଜାମାନଙ୍କର ଓ ରାଜାଙ୍କ ଖମାରଘର ଲୁଟତରାଜ କରିବାକୁ ଲାଗିଲେ। କେତେକ ପୁଲିସ୍ କର୍ମଚାରୀଙ୍କୁ ଧରି ନେଇ କଏଦୀ କରି ରଖିଲେ। ସିଂହଭୂମି ଆଡୁ ମହାପାତ୍ର

ନାମରେ ଗୋଟିଏ ଭୂୟାଁ ଆସି ଧରଣୀଧର ସହିତ ଯୋଗଦେଲା। ସେ ବୁଦ୍ଧିମାନ ଓ ମାଲିମକଦ୍ଦମାର ଅବସ୍ଥା ବୁଝିବାରେ ସକ୍ଷମ ଥିଲା। ବିଦ୍ରୋହ ବ୍ୟାପିବାରେ ଲାଗିଲା। ମହାରାଜା ନିଜଗଡ଼ କେନ୍ଦୁଝର ଛାଡ଼ି ଆନନ୍ଦପୁରକୁ ଚାଲିଆସିଲେ। ଆନନ୍ଦପୁର ପ୍ରଜାମାନେ ଏହି ବିଦ୍ରୋହରେ ଯୋଗ ଦେଇ ନଥିବାରୁ ରାଜା ଓ ରାଜ ପରିବାର ପାଇଁ ଏଠାରେ ରହିବା ନିରାପଦ ଥିଲା। ନିଜଗଡ଼ ଠାରୁ ଆନନ୍ଦପୁର ପର୍ଯ୍ୟନ୍ତ ଡାକ ଚଳାଚଳ ବନ୍ଦ ହୋଇଗଲା। ମେଳିଆମାନେ ଗୋଟିଏ ଦିନରେ ଡାକଥଳି ଲୁଟ୍ କରି ନେଇଗଲେ। ବାଟରେ ସ୍ଥାନେ ସ୍ଥାନେ ମେଳିଆମାନେ ଜଗୁଆଳୀ ଘାଟି ବସାଇ ଶାସନକୁ ଅଚଳ କରି ଦେବା ଉଦ୍ୟମରେ ଥାଆନ୍ତି । ରାଜ ପରିବାରର ଅନ୍ୟ ମାନଙ୍କୁ ଛାଡ଼ି ମହାରାଜ ହାତୀ ଚଢ଼ି ବିଶ୍ୱସ୍ତ ବିଚିତ୍ରାନନ୍ଦଙ୍କ ସହିତ ଆନନ୍ଦପୁରକୁ ପଳାଇ ଆସିଲେ। ଦେଓ୍ୱାନ ନିଜେ ରାଜାଙ୍କୁ ଧରି କଟକ ଯାଇ ସେଠାରେ ସହକାରୀ ସୁପରିଟେଣ୍ଡେଣ୍ଟ ନନ୍ଦକିଶୋର ଦାସ ଓ କମିଶନର ଟୟନବିଙ୍କୁ ମେଳି ବିଷୟ ଅବଗତ କରାଇଲେ। ନନ୍ଦକିଶୋର ଫକୀରମୋହନଙ୍କର ହିତୈଷୀ ଥିଲେ। ମାତ୍ର କମିଶନର ସାହେବ ରାଜା ଅତ୍ୟାଚାରୀ ବିଦ୍ରୋହ ଯଥାର୍ଥ ବୋଲି ପୂର୍ବରୁ ଧରିଥିଲେ ମଧ ରାଜା ଓ ଦେଓ୍ୱାନଙ୍କର ଅନୁରୋଧ କ୍ରମେ ବିଶେଷ ରକ୍ତପାତ ନିବାରଣ ନିମିତ୍ତ ଚାହିଁବାରୁ ମିଲଟାରୀ ଫୌଜ ପଠାଇବାକୁ ନିର୍ଦ୍ଦେଶ ଦେଇଥିଲେ। ସେମାନେ ଆନନ୍ଦପୁର ଆସିଲେ । ଖବର ପାଇଲେ ଗଡରେ ରାଣୀ ରାଜାଙ୍କ ଶିଶୁ ସନ୍ତାନ ଓ ରାଜ ପରିବାରର ସଦସ୍ୟମାନଙ୍କୁ ରାଜାଙ୍କ ଅନୁପସ୍ଥିତିରେ ମେଳିଆମାନେ କାବୁ କରିବାକୁ ଉଦ୍ୟମ କରୁଥିବା ବେଳେ ବିଶ୍ୱସ୍ତ ପାଇକମାନଙ୍କର ଫାଙ୍କା ବନ୍ଧୁକ ଆବାଜରେ ତ୍ରସ୍ତ ହୋଇ ପଳାଇ ଯାଇଥିଲେ। ଏହି ଖବର ପାଇବା ପରେ ରାଜା ଆନନ୍ଦପୁର ଓ ମେନେଜର ନିଜଗଡ଼କୁ ଯାଉଥାଆନ୍ତି । ତାଙ୍କ ସାଙ୍ଗରେ ଦୁଇ ଶହ ପାଇକ ମଧ୍ୟ ଶ୍ରେଣୀ ବନ୍ଧୁକ ଧରି ଯାଉଥାଆନ୍ତି। ସେମାନେ ବେଠିଆ ପାଇକ । ବିଶେଷ କର୍ମଠ ନଥିଲେ ଓ ବନ୍ଧୁକ ଗୁଡ଼ିକ ପୁରୁଣା କାଳିଆ ଥାଇ ଭୂୟାଁମାନଙ୍କ ତୀର ଚାଳନା ଆଗରେ ବିଶେଷ କାର୍ଯ୍ୟକାରୀ ହେବା ପରି ଜଣାପଡୁ ନଥିଲା। ତଥାପି ସେମାନେ ଗଡ଼ ଅଭିମୁଖେ ଚାଲିଲେ। ଗଡ଼ ଆଉ ପାଞ୍ଚ କୋଶ ବାଟ ଅଛି ବସନ୍ତପୁର ବୋଲି ଗୋଟିଏ ଜାଗାରେ ସେମାନେ ବିଶ୍ରାମ ନେଲେ। ଦରବାର ଅତ୍ୟାଚାର ହେତୁ ସେମାନଙ୍କର ନିଜ ଫୌଜଦାର ମଧ ମେଳିଆମାନଙ୍କୁ ପରୋକ୍ଷରେ ସହଯୋଗ କରୁଥାଆନ୍ତି। ମ୍ୟାନେଜର ବସନ୍ତପୁର ଫୌଜଦାରକୁ ଘାଟି ନିରାପଦ କି ନା ବୁଝିବାକୁ ପଠାଇଲେ। ମାତ୍ର ସେ ମେଳିଆମାନଙ୍କୁ ଦରବାର ଫୌଜ, ବନ୍ଧୁକ ସଂଖ୍ୟା ଅସ୍ତ୍ରଶସ୍ତ୍ର ବିବରଣ ସବୁ ଜଣାଇ ଦେଲା। ଘାଟି ନିରାପଦ

ବୋଲି ଆସି ଖବର ଦେଲା। ସେମାନେ ଅଛ ବାଟ ଯିବା ପରେ ମେଳିଆମାନେ ଆସି ମ୍ୟାନେଜରଙ୍କୁ ଘେରି ଗଲେ। ସେ ନିଜର ଅସହାୟ ଅବସ୍ଥା ଜାଣି ପାରିଲେ। ସେମାନେ ତାଙ୍କୁ ଧରଣୀଧରବାବୁଙ୍କ ପାଖକୁ ଯିବାକୁ କହିଲେ। ହାତୀରେ ଚଢ଼ି ଫୌଜ ଧରି ସେମାନେ ମେଳିଆଙ୍କର ଗୋଟାଏ ଖଟି ଜାଗା ବସାଘର ଗଲେ। ଧରଣୀଧରର ଭାଇ ଗୋପାଳିଆ ସେହି ଘାଟିର ସେନାପତି। ଛଅ ମାସ ଆଗେ ତାକୁ ଜେଲ୍‌ରେ ଫକୀରମୋହନ ଦେଖିଥିଲେ। ଗୋଡ଼ରେ ଗୋଟାଏ ମୋଟା ଲୁହା ବେଡ଼ି ପିନ୍ଧି ସେ ହରିକାଠିରେ ବନ୍ଧା ଥିଲା। ଦେଖିବାକୁ ସେ ଭୟଙ୍କର ଥିଲା। ଗୋଟାଏ ପୋଢ଼ ପରି ବଳୁଆ। ଯେମିତି ମୂର୍ଖ ସେମିତି ନୃଶଂସ। ସେ ଗୋଟାଏ ପଥର ଉପରେ ବସିଥାଏ। ତା ଚାରିପାଖରେ ଖୋଲା, ତରବାରୀ ବାଉଁଶ କାଣ୍ଡ ସବୁ ରଖାଯାଇଥାଏ। ସେ ତା'ର କ୍ଷୁଦ୍ର ଆଖିରେ ଅନେକ ବେଳ ଯାଏ ମ୍ୟାନେଜରଙ୍କୁ ଅନେଇଲା। ଅନେକ ଗୁଡ଼ିଏ ଭୂୟାଁ କାଣ୍ଡ ବାଉଁଶ ଟାଙ୍ଗିଆ ତରବାରୀ ଧରି ତା ହୁକୁମ ଅପେକ୍ଷାରେ ରହିଥାଆନ୍ତି। ବନ୍ଦୀକୁ ଦେଖି ସାରି ସେ ହୁକୁମ କଲା। ଚାଲ ଧରଣୀଧରବାବୁ ପାଖକୁ ରାଇସୁଆଁ। ମେନେଜର ହାତୀରେ ବସିଲେ ଦୁଇ ହାତରେ ଦୁଇଟା ଖୋଲା ତରବାରୀ ଧରି ସେ ତାଙ୍କ ପାଖରେ ବସିଲା। ପଚାରିଲା ତୋ ପାଖରେ ପିସ୍ତଲ ଅଛି ? ମ୍ୟାନେଜର ନାଁ କହିବାରୁ ସେ ଶୁଣାଇଲା ଯଦି ପଳେଇବାକୁ ବସୁ ତୋତେ ହାଣି ଦି'ଗଡ଼ କରି ଦେବି। ଅଧାବାଟ ସେମାନେ ଯାଇଛନ୍ତି ପଂଝାକୁ ପଂଝା ଲୋକ ରାଇଁସୁଆ ଆଡୁ ଆସୁଥାନ୍ତି। ତାଙ୍କୁ ଦେଖି ପହରୀ ଡାକେ ହୁସିଆର। ଆଗନ୍ତୁକ ଡାକ ଦିଏ ହୁସିଆର। ତାକୁ ଛାଡ଼ ଦିଆଯାଏ ତଫାତ୍ ତଫାତ୍। ଗୋଟାଏ ଭୀଷଣାକୃତି ମେଳିଆ କାଣ୍ଡ ବସାଇ ମ୍ୟାନେଜରଙ୍କୁ କହିଲା ବିଚିତ୍ରାନନ୍ଦ ସକାଳୁ ସଞ୍ଜଯାଏ ମୋତେ ଉପାସରେ ବେଠି ଖଟାଇଥିଲା। ତୋତେ ଆଜି ନିଶ୍ଚୟ ମାରିବି। ସେ ଗୁଣ ଭିଡ଼ିଛି ତୀର ଛାଡ଼ିବା ବେଳକୁ ପଛରୁ ଜଣେ ଲୋକ ଆସି ତାକୁ ଆୟତ୍ତ କରିନେଲା। ସେମାନେ ଏମିତି ଭାବରେ ସଦଳବଳେ ଦିନ ୩ଟା ବେଳେ ଘାଟିକିଆ ଠାରେ ପହଞ୍ଚିଲେ । ହାତୀରୁ ଓହ୍ଲାଇବା ପରେ ଧରଣୀଧର ଆସି ହୁକୁମ ଦେଲା ମୋ ଗୋଡ଼ ତଳେ ପଡ଼। ମ୍ୟାନେଜର ଦୋଦୋପାଞ୍ଚ ହେଉଥାନ୍ତି। ତାଙ୍କ ଅଧିନରେ ଏଇ ଲୋକଟା ଦିନେ ସର୍ଭେୟର ପାଇଟି କରୁଥିଲା ସେ ଗୋଡ଼ତଳେ ନ ପଡ଼ି ନମସ୍କାର କଲେ। ଧରଣୀ ଧାଇଁ ଆସି ହାତ ଧରି ନେଇ ତାକୁ ବିଛଣାରେ ବସାଇଲା। ଦିନ ଶେଷ ବେଳକୁ ସ୍ନାନ ଆହାରକୁ ଅନୁମତି ମିଳିଲା। ବନ୍ଦୀମାନେ ଧରା ହୋଇ ଆସିଲେ ସେମାନେ ରହିବାକୁ ଶାଳଗଜା ବାଡ଼ ଛାମୁଡ଼ିଆ ହୋଇଥାଏ। ଜନ୍ଦାମାନଙ୍କ ଉତ୍ପାତରେ ନିଦ ହେଲା ନାହିଁ। ମେଳିଆମାନଙ୍କର ଭାରି ଆନନ୍ଦ। ମ୍ୟାନେଜର

ଧରା ପଡ଼ିଛି । ମହାପାତ୍ର ଭୂୟାଁର ଇଚ୍ଛା ମ୍ୟାନେଜର ରଜାଘର ଲୋକ । ଏହାକୁ ସଫା କରି ଦେବା ଦରକାର । ଧରଣୀଧର କିନ୍ତୁ କହୁଥାଏ ମୋର ଗୋଟାଏ ବୁଦ୍ଧିଆ ମନ୍ତ୍ରୀ ଦରକାର । ସେମିତିଆ ଜଣେ ଚାଲାକ ଚତୁର ଲୋକ ନରହିଲେ ଏଡ଼େ ବଡ଼ ରାଜ୍ୟ ଚଳିବ କେମିତି । ତୁମ ଭିତରୁ ସେମିତିଆ ଜଣେ ଲୋକ ବାହାରିଲେ ମ୍ୟାନେଜରଙ୍କୁ ନିକାଲି ଦେବି । ଭୂୟାଁମାନେ ତାକୁ ଦେବତା ପରି ମାନୁଥିଲେ । ଅନେକ ସର୍ଦ୍ଦାରଙ୍କର ଇଚ୍ଛା ନଥିଲେ ମଧ୍ୟ ଧରଣୀଧର ହୁକୁମ କେହି ଟାଳି ପାରିଲେନାହିଁ । ମ୍ୟାନେଜର ଫକୀରମୋହନ ମନ୍ତ୍ରୀ ପଦରେ ନିଯୁକ୍ତ ହେଲେ । ନିଯୁକ୍ତି ପତ୍ରରେ ମହାରାଣୀ ପୁତ୍ର ଧରଣୀଧର ଭୂୟାଁ ଦସ୍ତଖତ କରିଦେଲେ । ନିଷ୍ପତ୍ତି ହୋଇଥାଏ କେହି କର୍ମଚାରୀ ଦରମା ପାଇବେ ନାହିଁ । ମହାରାଣୀ ପୁତ୍ର କହୁଥିଲେ ଆମେ ରାଜ୍ୟରେ ନ୍ୟାୟ ବିଚାର କରିବାକୁ ଆସିଛୁ । କେହି ପ୍ରଜା ଖଜଣା ଦେବେନାହିଁ କି ଦରମା ନେବେନାହିଁ । ଫକୀରମୋହନ ଧରଣୀଧରକୁ କହିଥାଆନ୍ତି ମୁଁ ଚାକିରି କରିବାକୁ କେନ୍ଦୁଝର ଆସିଥିଲି । ରାଜ୍ୟ ଆପଣଙ୍କର । ମୋତେ ରଖିଲେ ରହିବି ନହେଲେ ଘରକୁ ଲେଉଟି ଯିବି । ଏବେ କହିଲେ ମୋର ପିଲାଛୁଆ ବାଲେଶ୍ୱରରେ ଅଛନ୍ତି । ଦରମା ନ ମିଳିଲେ ଚଳିବେ କେମିତି । ଶେଷକୁ ଭୂୟାଁ ଦରବାରରେ ନିଷ୍ପତ୍ତି ହେଲା ବେତନ ସ୍ୱରୂପ ସାତ ମାଣ ଜମି ନିଷ୍କର ଭୋଗ ଦିଆଗଲା । ବନ୍ଦୀ ହେବାର ତୃତୀୟ ଦିନରେ ଗାଁ ପ୍ରଧାନ ଗୋଟାଏ ଦଉଡ଼ିଆ ଖଟିଆ ଦେଲା । ତା' ଉପରେ ଶୋଇବାକୁ ଆରାମ ହେଲା । ମେଳିଆଙ୍କ ଭିତରେ ପ୍ରଚାର ହୋଇଗଲା । ମ୍ୟାନେଜର ଧରାପଡ଼ିଛି ଓ ସେ ମହାରାଣୀ ପୁତ୍ରଙ୍କ ମନ୍ତ୍ରୀ ହୋଇଛି । ଦଳ ଦଳ ହୋଇ ସ୍ତ୍ରୀଲୋକମାନେ ଆସି ଶଙ୍ଖ ବଜାଇ ହୁଳହୁଳି ଦେଇ ଧରଣୀର ପୂଜା କରିବାରେ ଲାଗିଲେ । ହଳଦୀ ପାଣିରେ ତା'ର ଗୋଡ଼ ଦେଇ ଦିଅନ୍ତି । ମନ୍ତ୍ରୀଙ୍କୁ ମଧ୍ୟ ଏ ସମ୍ମାନ ମିଳେ । ହେଲେ ସେ କହନ୍ତି ମୁଁ ଜଣେ ଚାକର ମୋର ଏ ପୂଜା କଣ । ଧରଣୀଧର ଏହା ଶୁଣେ । ତାକୁ ସୁଖ ଲାଗେ । ମନ୍ତ୍ରୀଙ୍କ ବସାଘରକୁ ଆସି ତାଙ୍କ ଠାରୁ ପାନ ଖାଏ । ମନ୍ତ୍ରୀଙ୍କ ଛାମୁଡ଼ିଆ ଚାରି ପାଖରେ ପହରା । ଟାଙ୍ଗିଆ କାଣ୍ଡ ବାଉଁଶଧାରୀ ପ୍ରହରୀ । ମହାରାଣୀ ପୁତ୍ରଙ୍କର ଟଙ୍କା ଦରକାର । ନ ହେଲେ ରାଜ୍ୟ ଚଳିବ କେମିତି । ଦିନେ ଗୋଟାଏ ବଡ଼ ଦରବାର ବସିଲା । ସବୁ ସର୍ଦ୍ଦାରମାନେ ଭୂୟାଁ ପିଢ଼ର ଏକାଠି ହୋଇଛନ୍ତି । ମହାପାତ୍ର ଭୂୟାଁ ପାଇକ ଦଳପତି ଗୋପାଳିଆ ଆସି ବସିଲେ । ଦରବାରରେ ସ୍ଥିର ହେଲା ଟାଙ୍ଗିଆ ତରବାରୀ ଅଣ୍ଟାରେ ବାନ୍ଧି କାଣ୍ଡ ବାଉଁଶ ଧରି ଚାରି ପାଞ୍ଚ ହଜାର ପାଇକ ବଣୁଆ ଦିନେ ସକାଳେ ଆସି ପହଞ୍ଚିବେ । ସେମାନେ କେନ୍ଦୁଝର ରାଜା ନଅର ବେଢ଼ି ଯିବେ । ପାଚେରୀ ପୋଡ଼ି ଦେଇ ଭାଙ୍ଗି ଭିତରେ ପଶି

ନଅର ପରିଜନଙ୍କୁ ଧରି ଆସିବେ। ସେଠାରେ ଲକ୍ଷ ଲକ୍ଷ ଟଙ୍କା ଅଛି। ତାହା ସବୁ ଲୁଟି ଆଣିବେ। ମନ୍ତ୍ରୀ ଫକୀରମୋହନଙ୍କର ରାଜ ପରିବାର ରକ୍ଷା ବଡ଼ ଚିନ୍ତା ହେଲା। ସେ ବୁଦ୍ଧି ପାଞ୍ଚି ସମୟ ଟାଳଟୁଳ ଉପାୟ କଲେ। ବୁଝାଇ ଦେଲେ - ବାଘଛୁଆ ଧରି ଆଣିବାକୁ ଯେଉଁମାନେ ଯିବେ ସେମାନଙ୍କୁ ଯେମିତି ବାଘ ନ କାମୁଡ଼େ ତାହା ଦେଖିବେ। ଯଦି ବାଘ ବେକ ମୋଡ଼ି ଦେବ ବାଘଛୁଆ ତ ଧରା ପଡ଼ିବନାହିଁ ଓଲଟି ଶିକାରୀ ଜଣେ ମରିବ। ତୁମେମାନେ ବାଘ ଧରିବ! ଗଡ଼ରେ ପାଚେରୀ ମୂଳରେ ୨୦୦/୩୦୦ ହେବ ପାଇକ ବନ୍ଧୁକ ଧରି ଅଛନ୍ତି। ବନ୍ଧୁକ ଫୁଟାଇଲେ ଭୂୟାଁ ଫୌଜ ଟଳି ପଡ଼ିବେ। ପୁଣି ଗଡ଼ ଦୁଆରେ ତୋପ ଅଛି। ତାହା ଫୁଟିଲେ ଶହ ଶହ ଲୋକ ମରିଯିବେ। ଆଗରେ ତ ସର୍ଦ୍ଦାରମାନେ ଥିବେ, ପଛରେ ସିନା ପାଇକ। ହେଲେ ସେଇମାନଙ୍କର ଜୀବନ ଯିବ । ସବୁରି ଭାଳେଣି ପଡ଼ିଲା। ମନ୍ତ୍ରୀଙ୍କ ପରାମର୍ଶ ଶୁଣି କଣ କରାଯିବ। ମନ୍ତ୍ରୀ ଜଣାଇଲେ କଲିକତାରୁ ବୋମା ଡିନାମାଇଟ୍ ଅଣାଇବା। ସର୍ଦ୍ଦାରମାନେ ଗଡ଼ ପଛପଟ ପାହାଡ଼ ଉପରେ ଲୁଚି କରି ଗୋଟିଏ ବୋମା ପକାଇଲେ । ସେଥିରେ ଗଡ଼ ଧୂଳିରେ ମିଶିଯିବ। ସବୁ ପାଇକ ବନ୍ଧୁକଧାରୀ ମଧ୍ୟ ସେଇ ଡିନାମାଇଟ୍ ବୋମା ମାଡ଼ରେ ଖଣ୍ଡ ଖଣ୍ଡ ହୋଇଯିବେ। କଥାଟା ସବୁରି ମନକୁ ପାଇଲା। ଲୋକ ଯିବ କଲିକତାରୁ ଆମର ଦରକାରଠାରୁ ବେଶି ବୋମା କିଣି ଆଣିବ। ଆମେ ତାକୁ ରଖି ପୁରା ଗଡ଼ ଦଖଲ କରି ନେଇଯିବା। ହେଲେ ଟଙ୍କା କୁଆଡୁ ଆସିବ। ସବୁ ସର୍ଦ୍ଦାରମାନଙ୍କ ପାଖକୁ ଟଙ୍କା ଦେବାକୁ ପରୱାନା ଗଲା। ସବୁ ହୁକୁମରେ ମହାରାଣୀ ପୁତ୍ର ଧରଣୀଧରଙ୍କ ଦସ୍ତଖତ। ସେ କାମ ପାଇଁ ସମୟ ଲାଗିଲା। ଗଡ଼ ଦଖଲ ତେଣୁ ବିଳମ୍ବ ହେବାରେ ଲାଗିଲା। ଫକୀରମୋହନଙ୍କ ଚିନ୍ତା ଚାଇଁବସାରୁ ଯେଉଁ ଫୌଜ ଆସିବାର ଥିଲା ତାହା ବିଳମ୍ବ ହେଉଛି କାହିଁକି ?

ଧରଣୀଧର ତାଙ୍କ ବସାକୁ ଆସି ପାନ ଖାଏ । ଦିନେ ତାକୁ ଜଣାଇଲେ ପାନ ସରିଗଲାଣି। ପାନଗୁଆ ପାଇ ମୁଁ ଚିଠି ଦେବି। ବାଲେଶ୍ୱରରୁ ମଗେଇ ଦେବ। ମୋର ଭଦ୍ରକରେ ଆଖୁଚାଷ ଥିଲା। ମୁଁ ତ ଚାଲି ଆସିଲି। ପାଣି ନ ପାଇ ଆଖୁଗଛ ମରିଯିବ। ସେଥିପାଇଁ ଚିଠିରେ ଲେଖିବି। ଧରଣୀଧର ଚିଠି ଶୀଘ୍ର ଲେଖିବାକୁ ହୁକୁମ କଲା। ଆନନ୍ଦପୁର ଅଫିସରେ ଭୋଳାନାଥ ଦେ ନାମରେ ଜଣେ ସର୍ଭେୟର ଥିଲେ। ତାଙ୍କୁ ଖବର ଦେଲେ ସେ ମହାରାଜା ଯେଉଁଠି ଥାଆନ୍ତୁ ଜାଣିଥିବେ ଗୋଟାଏ ବ୍ୟବସ୍ଥା ହେବ। ତେଣୁ ଫକୀରମୋହନ ଚିଠି ଲେଖିଲେ :-

ମଇମାସ ୧୬ ତାରିଖ ୧୮୮୧ ସନ
ମୁକାମ ରାଇସୁଆଁ

ଭୋଳାନାଥ ଖମାରିଆ ଜାଣିବୁ,

ମହାରାଣୀ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର। ଅତିଶୀଘ୍ର ଶହେ ହେଲେ ପାନ ଦୁଇଶହ ଗୁଆ ପଠାଇବୁ। ପଶ୍ଚିମ ପଟରୁ ମାହାରା କରି ଆଖୁ ବାଡ଼ିକୁ ଶୀଘ୍ର ପାଣି ବୁହାଇବୁ। ନୋହିଲେ ଆଖୁବାଡ଼ି ବିନାଶ ଯିବ ବୋଲି ଜାଣିବୁ।

॥ ଇତି ॥
ଫକୀରମୋହନ ସେନାପତି

ମହାରାଣୀ ପୁତ୍ରଙ୍କ ଆଗରେ ଚିଠି ପଢ଼ାଗଲା। ସେ ଛାଡ଼ ପତ୍ରରେ ଦସ୍ତଖତ କଲେ। ନିଜ ଗଡ଼ଠାରେ ଆନନ୍ଦପୁର ଦାଣ୍ଡରେ ତିନି ଚାରିଟା ଘାଟୀ ବସିଛି। ମହାରାଣୀ ପୁତ୍ରଙ୍କ ଦସ୍ତଖତ ଛାଡ଼ପତ୍ର ନ ଥିଲେ କେହି ଯା'ଆସ କରି ପାରିବେ ନାହିଁ। ଘାଟୀରେ ବାଟୋଇ ମାନଙ୍କର ଲୁଗାପଟା ଝାଡ଼ି ତଦାରଖ କରାଯାଉଥିଲା। ଚାରିଜଣ ବଳୁଆ ପାଇକଙ୍କ ହାତରେ ଚିଠି ପଠାଗଲା।

ଆନନ୍ଦପୁରରେ ଭୋଳାନାଥ ବାବୁଙ୍କ ହାତରେ ଚିଠି ଦେବାକୁ ସେମାନଙ୍କୁ କୁହାଗଲା। ସେମାନେ ବନ୍ଦୀ ଥିଲେ। ଘରକୁ ଯିବେ ଜାଣି ଦିନରାତି ନ ମାନି ଯାଇ ଆନନ୍ଦପୁରରେ ପହଞ୍ଚି ଚିଠି ଦେଲେ। ମହାରାଜା ଖବର ପାଇଲେ। ସଙ୍କେତରେ ପାନ ଅର୍ଥ ସିପାହୀ, ଗୁଆ ଅର୍ଥ ଗୁଳି ବନ୍ଧୁକଧାରୀ ସିପାହୀ। ଆଖୁବାଡ଼ି ଅର୍ଥ ଗଡ଼ । ଚିଠିର ଅର୍ଥ ହେଲା ଶହେଜଣ ହେଲେ ବନ୍ଧୁକଧାରୀ ସିପାହୀ ପଶ୍ଚିମ ଦିଗରୁ ଯାଇ ନ ପହଞ୍ଚିଲେ ଗଡ଼ ଲୁଟପାତ ଓ ନଷ୍ଟ ହୋଇଯିବ। ସିପାହୀମାନେ ଚାଇଁବସାରୁ ଆସିଲେ ଉତ୍ତରପଟ ହେବ ମାତ୍ର ପଶ୍ଚିମ ପଟ କି ସକାଶେ ଲେଖା ବୁଝାଗଲା ନାହିଁ।

ବନ୍ଦୀ ହୋଇ ମ୍ୟାନେଜର ଏବେ ଧରଣୀଧରଙ୍କର ମନ୍ତ୍ରୀ। ଫକୀରମୋହନଙ୍କର ଅଷ୍ଟମ ଦିନରେ ଭୂୟାଁ ଗୁପ୍ତଚର ଖବର ଦେଲା, ସରକାରୀ ଫୌଜ ଜୟନ୍ତୀ ଗଡ଼ଠାରେ ପହଞ୍ଚିଲେଣି। ଫୋର୍ସର କାପ୍ତାନ ରାଇସ ସାହେବ ଧରଣୀଧରଙ୍କୁ ଚିଠି ପଠାଇଲେ। ସାହେବଙ୍କୁ ସାକ୍ଷାତ କରିବାକୁ ଚିଠି ଦରବାରରେ ପଢ଼ାଗଲା। ବୁଦ୍ଧିମାନ ମନ୍ତ୍ରୀ ପରାମର୍ଶ ଦେଲେ ସେ ନିଜେ ଆସି ମହାରାଣୀ ପୁତ୍ରଙ୍କୁ ସାକ୍ଷାତ କରୁ। ଏମିତି ଟାଳଟୁଳ ମଧ୍ୟରେ ନବମ ଦିନ ସକାଳେ ସାହେବମାନେ ଆସି ବିଦ୍ରୋହୀ ଭୂୟାଁ କ୍ୟାମ୍ପ ଦଖଲ କଲେ। ଧରଣୀଧର ଗୋପାଳିଆ ଆଦି ସବୁ ସର୍ଦ୍ଦାରଙ୍କୁ ବନ୍ଦୀକରି ନେଲେ । ମହାପାତ୍ର ଥିଲା

ବେଶୀ ଧୂର୍ତ୍ତ । ସେ ଖବର ପାଇ ଆଗରୁ ପଳାଇଗଲା । ମ୍ୟାନେଜରଙ୍କର ସାଙ୍ଗରେ ଦରବାରର ଦୁଇଶହ ଯାଏ ପାଇକ ବନ୍ଦୀ ହୋଇଥିଲେ । ସେମାନଙ୍କୁ ଗଡ଼କୁ ଯିବାକୁ ନିର୍ଦ୍ଦେଶ ଦିଆଗଲା । ହାତୀ ପ୍ରସ୍ତୁତ ଥିଲେ । ଫକୀରମୋହନ ଗଡ଼କୁ ମୁକ୍ତି ପାଇ ଚାଲିଗଲେ । ମେଳିଆ ଭୂୟାଁମାନେ ମିଲିଟାରୀ ପୋଲିସ୍‌ର ବାଟ ଓଗାଳିଲାରୁ ଯୁଦ୍ଧ ହେଲା । କେତେ ଭୂୟାଁ ମଲେ । କେତେକ ଖଣ୍ଡିଆ ଖାବରା ହୋଇ ବଣକୁ ପଳାଇଗଲେ । ରାଇସ ସାହେବଙ୍କ ସହିତ ସୁରକ୍ଷିତ ମହାରାଜା ଧନଞ୍ଜୟ ଗଡ଼ରେ ପହଞ୍ଚିଲେ ।

ଧୃତ ଅପରାଧି ମାନଙ୍କର ବିଚାର ନିମିତ୍ତ କଟକରୁ ସୁପରିଟେଣ୍ଡେଣ୍ଟ ସାହେବ ଚାନ୍ଦବାଲି କଲିକତା ଚକ୍ରଧରପୁର ହୋଇ ସେଠାରୁ ହାତୀ ଚଢ଼ି ଗଡ଼ରେ ପହଞ୍ଚିଲେ । ସାଙ୍ଗରେ ଜଣେ ମାତ୍ର ଖାନସମା । ଧରଣୀଧର ଓ ତା' ସହିତ ଧୃତ ଚାରିଜଣଙ୍କର ବିରୁଦ୍ଧରେ ରାଜଦ୍ରୋହ ଓ ଅନ୍ୟାୟ ଭାବରେ ରାଜକର୍ମଚାରୀଙ୍କୁ ଅଟକ ରଖିବା ଅପରାଧରେ ମକଦ୍ଦମା ବିଚାର ହେଲା । ମ୍ୟାନେଜର ଫକୀରମୋହନ ଟୟନବି ସାହେବ ସୁପରିଟେଣ୍ଡେଣ୍ଟଙ୍କୁ କଚେରୀରେ ସାହାଯ୍ୟ କଲେ । ବିଚାରରେ ଧରଣୀକୁ ଓ ଅନ୍ୟମାନଙ୍କୁ ଉଭୟ ଅପରାଧରେ ଦୋଷୀ ସାବ୍ୟସ୍ତ କରି ଧରଣୀଧରକୁ ପାଞ୍ଚବର୍ଷ ଓ ଅନ୍ୟମାନଙ୍କୁ ତିନି ବର୍ଷ ସଶ୍ରମ କାରାଦଣ୍ଡ ଆଦେଶ ହେଲା । କେନ୍ଦୁଝର ରାଜାଙ୍କୁ ମେଳି ଦମନରେ ଅପାରଗତା ଓ କୁଶାସନ ନିମିତ୍ତ ସୁପରିଟେଣ୍ଡେଣ୍ଟଙ୍କୁ ଗଡ଼ ଛାଡ଼ି ତୁରନ୍ତ ଚାଲି ଯିବାକୁ ନିର୍ଦ୍ଦେଶ ଦେଲେ । ଏହି ଆଦେଶ ତାଙ୍କ ମ୍ୟାନେଜର ଫକୀରମୋହନ ଦସ୍ତଖତରେ ପଠାଯାଇଥିବା ହେତୁ ରାଜା ସାହେବ କ୍ଷୁବ୍ଧ ହେଲେ । ଫକୀରମୋହନ ପରାମର୍ଶ ଦେଲେ ରଥଯାତ୍ରା ସମାପନ କରି ରାଜ୍ୟ ଛାଡ଼ି ଚାଲି ଯିବାକୁ । ସୁପରିଟେଣ୍ଡେଣ୍ଟ ସେ ଆଦେଶର ପୁର୍ନ ବିଚାର କଲେ । ରାଜା ଯାଇ କଟକରେ ରହିଲେ । ତାଙ୍କ ତରଫରୁ ଓକିଲ ଶ୍ରୀଯୁକ୍ତ ଦାସ (ମଧୁସୂଦନ ଦାସ) ତାଙ୍କର ନିର୍ଦ୍ଦୋଷତା ସାବ୍ୟସ୍ତ କରିବା ପାଇଁ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କର ଦରବାରରେ ଅପିଲ୍ କଲେ । ଆନନ୍ଦପୁରର ପ୍ରଜାମାନେ ମଧ ରାଜାଙ୍କୁ ସମର୍ଥନ ଜଣାଇ ଲାଟ ସାହେବଙ୍କୁ ଦରଖାସ୍ତ କଲେ । ସୁପରିଟେଣ୍ଡେଣ୍ଟଙ୍କ ଆଦେଶ ବାତିଲ ହେଲା । ରାଜା ରାଜ୍ୟ ଫେରି ପାଇଲେ ।

ରାଜ୍ୟରେ କର୍ମଚାରୀମାନଙ୍କର ବଳ ପ୍ରୟୋଗ ଓ ପ୍ରଜାମାନଙ୍କୁ ନିର୍ଯ୍ୟାତନା କେନ୍ଦୁଝର ମେଳିର ମୂଳ କାରଣ ଥିଲା । ରାଜା ମଧ ପ୍ରଜାମାନଙ୍କ ଦୁଃଖ ଦୁର୍ଦ୍ଦଶା ବେଠି ଶ୍ରମର କୁପରିଣାମ ଉପଲବ୍ଧି କରିବାରେ ଅକ୍ଷମ ଥିଲେ । ଅନେକ ଓଡ଼ିଶା ଗଡ଼ଜାତରେ ପ୍ରଜା ମେଳିର ମୁଖ୍ୟ କାରଣ ରାଜକର୍ମଚାରୀ ମାନଙ୍କର ଶୋଷଣ ଓ ରାଜାଙ୍କର ନିଷ୍କ୍ରିୟତା ଯୋଗୁଁ ହେଉଥିଲା ।



# ଶେଷ ଗଡ଼ଜାତ ରାଜା



ଶ୍ରୀ ଶ୍ରୀ ରାଜା ଅନନ୍ତନାରାୟଣ
ମାନସିଂହ ହରିଚନ୍ଦନ ମହାପାତ୍ର
(ନରସିଂହପୁର)



ରାଜା ବୀରଚନ୍ଦ୍ର ଯଦୁମଣୀଦେଓ ଜେନାମଣୀ
(ରେଢ଼ାଖୋଲ)



ରାଜା ନବକିଶୋର ଚନ୍ଦ୍ର ସିଂ
ମର୍ଦ୍ଦରାଜ ଜଗଦେବ (ହିନ୍ଦୋଳ)



ରାଜା ହୃଦୟଚନ୍ଦ୍ର ଦେବ ବୀରବର ହରିଚନ୍ଦନ
(ତାଳଚେର)

# ଶେଷ ଗଡ଼ଜାତ ରାଜା



ରାଜା ବ୍ରଜେନ୍ଦ୍ର ଚନ୍ଦ୍ର ସିଂଦେଓ ବଜ୍ରଧର
ନରେନ୍ଦ୍ର ମହାପାତ୍ର (ରଣପୁର)



ରାଜା କିଶୋରଚନ୍ଦ୍ର ଦେବ
(ଆଠମଲ୍ଲିକ)



ରାଜା ଶ୍ରୀ ନାରାୟଣ ଦେବ (ବୌଦ୍ଧ) - 'କ' ଶ୍ରେଣୀ

# ଅସ୍ତଗାମୀ ରାଜାଙ୍କ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ସଂସ୍ଥା

## (Eastern State Union)

ଇଂରେଜମାନେ ଦେଶ ଛାଡ଼ି ଚାଲିଯିବା ସୁନିଶ୍ଚିତ ହେଲା । ଏହାପରେ ରାଜାମାନଙ୍କ ସୁରକ୍ଷା ପାଇଁ ସାର୍ବଭୌମ ଶକ୍ତି ଆଉ ରହିବ ନାହିଁ । ରାଜ୍ୟରେ ପ୍ରଜାମାନେ ପୁରୁଷ ପୁରୁଷ ଧରି ଶୋଷଣର ପ୍ରତିବାଦରେ ପ୍ରଜାମଣ୍ଡଳ ଜରିଆରେ ସେମାନଙ୍କ ଉପରେ ପ୍ରତିଶୋଧ ନେବେ । ଏହା ରାଜ୍ୟର ସାନ ବଡ଼ ସବୁ ରାଜାମାନେ ବୁଝି ପାରିଥିଲେ । ଓଡ଼ିଶା ଓ ଛତିଶଗଡ଼ ଗଡ଼ଜାତର ରାଜାମାନେ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ସଙ୍ଗଠନ (Eastern State Union) ୧ ଅଗଷ୍ଟ ୧୯୪୭ରୁ ଗଢ଼ିଲେ । କୋରିଆ ରାଜା ସେମାନଙ୍କର ଅଧ୍ୟକ୍ଷଥିଲେ । ମୟୂରଭଞ୍ଜ ଓ ବସ୍ତର ସହିତ ଆଉ କେତୋଟି ଛୋଟ ରାଜ୍ୟ ଏଥିରେ ମିଶି ନଥିଲେ । ନିଜର ପ୍ରଧାନମନ୍ତ୍ରୀ, ମୁଖ୍ୟ ଶାସନ ସଚିବ ଓ ଜଣେ ଆଇଜିଙ୍କ ଅଧିନରେ ପୋଲିସ୍ ବାହିନୀ ଓ ହାଇକୋର୍ଟ ରହିଲା । ମାତ୍ର ବିଧାନସଭା ନଥିଲା । ପୁଲିସ୍ ବାହିନୀରେ ମୁଖ୍ୟତଃ ପଞ୍ଜାବୀ ଓ ପଠାଣ ପୁଲିସ୍ ନିଯୁକ୍ତ ହୋଇଥିଲେ । ଏହା ସବୁ ରାଜ୍ୟର ପ୍ରଜା ଓ ପ୍ରଜା ମଣ୍ଡଳକୁ ରଗେଇ ଦେଲା । ଏହାକୁ ପ୍ରତିହତ କରିବାକୁ ରାଜନ୍ୟ ମଣ୍ଡଳ ନିଜର କାର୍ଯ୍ୟ ପ୍ରଚାର ନିମିତ୍ତ ଗୋଟିଏ ପ୍ରଚାର ସଂସ୍ଥା ଗଢ଼ିଲେ । ବୌଦ୍ଧର ରାଜା ନାରାୟଣ ପ୍ରସାଦ ସିଂହ ଦେଓ ଏହାର ସଭାପତି ଥିଲେ । ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟିକ ପଦ୍ମ ଭୂଷଣ କାଳିନ୍ଦୀଚରଣ ପାଣିଗ୍ରାହୀ (୧୯୦୧-୧୯୯୧)ଙ୍କୁ ସେମାନେ ଏହାର ପ୍ରଚାରକ ଭାବେ ନିଯୁକ୍ତି ଦେଲେ । ସେ ଆଗରୁ ଓଡ଼ିଶା ସରକାରଙ୍କର ପ୍ରେସ୍‌ରେ ହେଡ଼ରିଡ଼ର ଭାବେ କାର୍ଯ୍ୟ କରିଥାଆନ୍ତି । ତାଙ୍କ ଆତ୍ମଜୀବନୀ "ଅଙ୍ଗେ ଯାହା ନିଭାଇଛି"ରେ ସେ ଏହି ସଂସ୍ଥାରେ ନିଜର ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଇ ସ୍ୱନାମଧନ୍ୟ କମ୍ୟୁନିଷ୍ଟ ନେତା ଭଗବତୀ ଚରଣ ପାଣିଗ୍ରାହୀ(୧୯୦୭-୧୯୪୩) ଏହି ସମୟରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ଜେଲ୍ ଭୋଗୁଥାଆନ୍ତି । କାଳିନ୍ଦୀଚରଣଙ୍କର ନିଯୁକ୍ତି ତାଙ୍କ ବନ୍ଧୁମାନଙ୍କୁ ବିସ୍ମିତ କରିଥିଲା ।

ଆଠ ମଲ୍ଲିକ, ଢେଙ୍କାନାଳ, ବାମଣ୍ଡା, ବଡ଼ମ୍ବା, ନରସିଂହପୁର, ହିନ୍ଦୋଳ, ବୌଦ୍ଧ, ଦଶପଲ୍ଲା, ପାଟଣା, ରେଢ଼ାଖୋଲ, କଳାହାଣ୍ଡି, ଷଢ଼େଇକଳା, ଖରସୁଆଁ, ତାଳଚେର ଏବଂ ନୟାଗଡ଼ ପ୍ରଭୃତି ରାଜ୍ୟମାନ ସେ ବୁଲିଲେ। ସେ ରାଜାମାନଙ୍କର ଅକୁଣ୍ଠ ଆତିଥେୟତା ପାଇବା ସହିତ ସେମାନଙ୍କ ସହିତ ସଦାଳାପ କଲେ। ଉତ୍କଳର ପ୍ରାଚୀନ ଐତିହ୍ୟର ପ୍ରତୀକ ରୂପେ ପ୍ରତ୍ୟେକ ରାଜା ମହାରାଜାଙ୍କର ଉଦ୍ରତା ଓ ମଧୁର ବ୍ୟବହାର ତାଙ୍କୁ ମୁଗ୍ଧ କଲା। କିନ୍ତୁ ସେମାନେ ପୁରାପୁରି ତାଙ୍କୁ ବିଶ୍ୱାସକୁ ନେଉନଥିଲେ । ତାଙ୍କ ଭାଇ ଭଗବତୀ କମ୍ୟୁନିଷ୍ଟ ଥିବା ଏହାର କାରଣ ହୋଇପାରେ। ପୂର୍ବାଞ୍ଚଳ ରାଜ୍ୟସଂସ୍ଥାର ରାଜ୍ୟମଣ୍ଡଳୀର ଏକ ଅଧିବେଶନ ଖୁବ୍ ତନାଘନା ସହିତ ରାୟପୁରରେ ଚାଲିଥାଏ। ରାଜା ମାନଙ୍କର ଏକ ଚାହା ଭୋଜି ଖୁବ୍ ଆନନ୍ଦ ଉଲ୍ଲାସରେ ମୁଖରିତ ହୋଇ ଉଠୁଥାଏ। ସେହି ଭୋଜିରେ ଢେଙ୍କାନାଳ ରାଜା ଅନ୍ୟ ରାଜାମାନଙ୍କୁ ପ୍ରଚାରକଙ୍କର ପରିଚୟ ଦେଇ କହିଲେ ସେ ଜଣେ କମ୍ୟୁନିଷ୍ଟ। ଫଳରେ ହସର ଏକ ଫୁଆର ଉଠିଲା। ସମ୍ମିଳନୀ ଶେଷରେ ପ୍ରଚାର ସଂସ୍ଥା ସଭାପତି ବୌଦ୍ଧ ରାଜା କାଳିନ୍ଦୀଚରଣଙ୍କୁ ଡ଼ାକି କହିଲେ ଢ଼େଙ୍କାନାଳଙ୍କର କାଣ୍ଡଜ୍ଞାନ ନାହିଁ । ତାଙ୍କୁ କମ୍ୟୁନିଷ୍ଟ କହିବାରେ ବୌଦ୍ଧରାଜା ବିବ୍ରତ ଓ ଦୁଃଖିତ ହୋଇ ତାଙ୍କ ପ୍ରତି ସହାନୁଭୂତି ଜଣାଇଲେ। ମାତ୍ର କାଳିନ୍ଦୀଚରଣ ଆଦୌ ଦୁଃଖିତ ନ ଥିଲେ। ଢେଙ୍କାନାଳ ରାଜାଙ୍କ ସହିତ ତାଙ୍କର ରାଜବାଟିରେ ପ୍ରଥମ ସାକ୍ଷାତ ଅବସରରେ ସେ ଦେଖିଲେ - ଜଣେ ପରିଚାରକ ତାଙ୍କୁ ତେଲ ମାଲିସ୍ କରୁଥାଆନ୍ତି। ତାଙ୍କ ପାଖରେ ରାଜ୍ୟର ସର୍ବୋଚ୍ଚ ପୁଲିସ୍ କର୍ମଚାରୀ ଗଙ୍ଗାଧର ମିଶ୍ର ଥାଆନ୍ତି। ସେହିଦିନ ରାଜବାଟିରେ ତାଙ୍କର ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା କରାଗଲା। ସେ କହିଲେ ଡାକ ବଙ୍ଗଳାରେ ତାଙ୍କର ଭୋଜନ ବ୍ୟବସ୍ଥା ହୋଇଛି। ମାତ୍ର ସେଥିପାଇଁ ଆପଣଙ୍କର ଭାବିବାର ନାହିଁ ବୋଲି ରାଜା ସାହେବ କହିଲେ। କଥା ପ୍ରସଙ୍ଗରେ ସେ ପ୍ରଚାରକଙ୍କୁ କହିଲେ ଓଡ଼ିଶା ରାଜନୀତିରେ ମୁଁ ତିନିଜଣ ନେତାଙ୍କୁ ଉଚ୍ଚ ସ୍ଥାନ ଦିଏ। ସେମାନେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଓ ଭଗବତୀ ଚରଣ ପାଣିଗ୍ରାହୀ। କଥାରେ ଅଛି ନୃପତି ଭାଷିଲେ ଭାଷିବ ଅର୍ଥାତ ନିଜେ କିଛି କହିବ ନାହିଁ। ରାଜା ପଚାରିଲେ ତା'ର ଉତ୍ତର ଦେବ। ମଧ୍ୟାହ୍ନ ଭୋଜନରେ ବ୍ୟାପୃତ ଥାଇ ସେ ରାଜାଙ୍କ କଥା ଶୁଣୁଥାଆନ୍ତି ? ରାଜାସାହେବ ତାଙ୍କୁ ପଚାରିଲେ "ଆଚ୍ଛା କୁହନ୍ତୁ ତ ଦେଖି - ଭଗବାନ ମଣିଷ ହାତରେ ଏ ଯେଉଁ ପାଞ୍ଚଟା ଆଙ୍ଗୁଠି ଦେଇଛନ୍ତି ତାହା ଭିତରୁ କିଏ କାହା ସାଙ୍ଗରେ ସମାନ। ସମାନ ହୋଇଥିଲେ ଆପଣ ଏଠାରେ ଯେତେ ସହଜରେ ଭୋଜନ କରିପାରୁଛନ୍ତି ତାହା କଣ ସମ୍ଭବ ହୁଅନ୍ତା ?" ଗଙ୍ଗାଧର ମିଶ୍ର ମଧ୍ୟ ରାଜାଙ୍କ ଅନ୍ନ ସେବନ

କରୁଥାଆନ୍ତି । କାଳିନ୍ଦୀଚରଣ କୌଣସି ଉତ୍ତର ଦେଲେନାହିଁ । ପ୍ରଶ୍ନର ଉତ୍ତର ଯେ ସାମ୍ୟବାଦ ବିରୁଦ୍ଧରେ ଯିବ ଏହା ତାଙ୍କ ଚତୁର ପ୍ରଶ୍ନରୁ ବୁଝିପାରି ସେ ହସି ଉଠିଲେ । ରାଜା ଓ ଗଙ୍ଗାଧର ମିଶ୍ର ହସରେ ଯୋଗ ଦେଲେ । ପୁଲିସ୍ ହାକିମ ଗଙ୍ଗାଧର ଭଗବତୀ କିପରି ଢେଙ୍କାନାଳ ରାଜା ଓ ତାଙ୍କ ଶାସନ ବିରୁଦ୍ଧରେ ଭାଷଣ ଦେଲାବେଳେ ପାଞ୍ଚ ଆଙ୍ଗୁଠିକୁ ମୁଠା କରି ଦେଖାନ୍ତି । ସେ ତାହା ବର୍ଣ୍ଣନା କରି ନିଜ ହାତମୁଠା ମଧ୍ୟ ଦେଖାଇଲେ । ଢେଙ୍କାନାଳ ସମେତ ଦେଶୀୟ ରାଜ୍ୟର ଅଧିକାଂଶ ରାଜାଙ୍କ ସମ୍ଭ୍ରାନ୍ତ ବ୍ୟବହାର ଓ ସଦାଶୟ ଆତିଥେୟତା ବ୍ୟତୀତ ପ୍ରଜାକୁଳର ପରିସ୍ଥିତି ବା ଅବସ୍ଥା ଦେଖିବା ସୁଯୋଗ ତାଙ୍କୁ ମିଳି ନଥିଲା । ମାତ୍ର ଢେଙ୍କାନାଳର ଗାଁ ଗୁଡ଼ିକ ବୁଲି ସ୍କୁଲଘରମାନ ଦେଖିଲେ କଟକ ପୁରୀ ଜିଲ୍ଲାର ଗାଁ ଠାରୁ ସେମାନେ ଯେ ଅନୁନ୍ନତ ଏହା ଜଣାପଡୁ ନଥିଲା । କାଳିନ୍ଦୀଚରଣଙ୍କ ମତରେ ଢେଙ୍କାନାଳ ହିଁ ରାଜୁଡ଼ା ଶାସନର ଅନ୍ତିମ ଭବିଷ୍ୟତ ଦ୍ରଷ୍ଟା ଥିଲେ । ସମାଜବାଦକୁ ତ୍ୱରାନ୍ୱିତ କରାଇବାରେ ତାଙ୍କର ପ୍ରତିରୋଧ ପ୍ରତିକ୍ରିୟା ଯେ ଅଧିକ ଫଳପ୍ରସୂ ହୋଇଛି ଏକଥା ସମାଜବାଦର ବୈଜ୍ଞାନିକ ତତ୍ତ୍ୱବିଦମାନେ ଅବଶ୍ୟ ସ୍ୱୀକାର କରିବେ ଓ ଏହାକୁ ପ୍ରତିକ୍ରିୟାଶୀଳ ବୋଲି ବିଚାରିବେ ।

କାଳିନ୍ଦୀଚରଣ ସବୁ ରାଜ୍ୟ ବୁଲିଥିଲେ । ସବୁ ରାଜାଙ୍କର ଆତିଥ୍ୟ ଗ୍ରହଣ କରିଥିଲେ ମାତ୍ର ଏକମାତ୍ର ଢେଙ୍କାନାଳ ରାଜା ଶଙ୍କରପ୍ରତାପ ଅନାହୁତ ଭାବରେ ଆସି ତାଙ୍କର କଟକ ଘରେ ତାଙ୍କର ଆତିଥ୍ୟ ଗ୍ରହଣ କରିଥିଲେ । ଭାରତର ସ୍ୱାଧୀନତା ପରେ ରାଜା ଶଙ୍କର ପ୍ରତାପ ଥରେ କାଳିନ୍ଦୀଚରଣଙ୍କୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ସହିତ ସାକ୍ଷାତର ବ୍ୟବସ୍ଥା କରି ତାଙ୍କୁ ପରିଚୟ କରାଇ ଦେବାକୁ ଅନୁରୋଧ କଲେ । ମହତାବ ତୁଳସୀ ପୁରରେ ରହୁଥାଆନ୍ତି । ରାଜାଙ୍କ ସହିତ ତାଙ୍କ ନିକଟକୁ ଯାଇ ସେ ଖବର ଦେବା ମାତ୍ରେ ମହତାବ ଘର ଭିତରୁ ବାହାରି ଆସି ସାକ୍ଷାତ ଦିଅନ୍ତି । ସାକ୍ଷାତ ସମୟରେ ରାଜା ଶଙ୍କର ପ୍ରତାପ ଟିକେ ପିଇବା ପାଣି ମାଗିବାରୁ ମହତାବ ନିଜେ ଉଠିଯାଇ ପାଣି ଗିଲାସେ ଆଣି ତାଙ୍କ ହାତକୁ ବଢ଼ାଇ ଦେଲେ । ରାଜନୀତି ବା ସେହି ସମ୍ପର୍କୀୟ କୌଣସି ବିଷୟ ଉତ୍‌ଥାପିତ ହେଲେ ତାଙ୍କ ଠାରୁ ବିଦାୟ ଘେନିବାକୁ ହୁଏ । ଢେଙ୍କାନାଳ ରାଜାଙ୍କ ସହିତ ସାକ୍ଷାତକାରର ଶେଷ ପର୍ଯ୍ୟାୟରେ ସେ କାଳିନ୍ଦୀଚରଣଙ୍କୁ ବାରମ୍ବାର 'ସାର୍' ସମ୍ବୋଧନ କରୁଥାଆନ୍ତି । ତାଙ୍କ ମୁହଁରୁ ଏ ସମ୍ବୋଧନ ଅଡୁଆ ଓ ଅସ୍ୱଭାବିକ ଶୁଣାଯାଉଥାଏ ।

ଦେଶୀୟ ରାଜ୍ୟ ବୁଲିବା ସମୟରେ ସେଇ ଢେଙ୍କାନାଳ ରାଜ୍ୟରେ ତାଙ୍କର ସହଯାତ୍ରୀ ହୁଅନ୍ତି ଉଚ୍ଚ ପୁଲିସ୍ ଗୋଇନ୍ଦା ବିଭାଗର କର୍ମଚାରୀ ଦାମୋଦର ଦାସ । ଜଣେ

ଦକ୍ଷ ଗୋଇନ୍ଦା କର୍ମଚାରୀ ଭାବରେ ସେ କେନ୍ଦ୍ର ସରକାରଙ୍କ ତରଫରୁ କାମ କରୁଥିଲେ ଓ ଯେତେବେଳେ ସ୍ୱାଧୀନ ଭାରତରେ ଭାରତୀୟ ପୁଲିସ୍ ସେବା ଗଠିତ ହେଲା ଏହାର ପ୍ରଥମ ତାଲିକାରେ ତାଙ୍କୁ ନିଯୁକ୍ତି ଦିଆଯାଇଥିଲା। ଦାମବାବୁଙ୍କ ସହିତ ଏକାଧିକ ଅତିଥି ଭବନରେ କାଳିନ୍ଦୀଚରଣ ରହିଥିଲେ। ପୁରୀ ଜିଲ୍ଲା ସ୍କୁଲରେ ତାଙ୍କର ପୁରୁଣା ବନ୍ଧୁ ଥିବାରୁ ଦେଶୀୟ ରାଜ୍ୟମାନଙ୍କର ଶାସନର କେତେକ କୌତୁହଳ କାହାଣୀ ତାଙ୍କ ଠାରୁ ଶୁଣିଥିଲେ। ଗୋଟିଏ ରାଜ୍ୟର ରାଜା ଥରେ ତାଙ୍କ ବିଚାରପତିଙ୍କୁ ନିର୍ଦ୍ଦେଶ ଦେଲେ ସେ ରଥଯାତ୍ରାରେ ଡାହୁକ କାର୍ଯ୍ୟ କରିବେ । ସେହି ଆଦେଶକୁ ବିଚାରପତି ସସମ୍ମାନେ ପାଳନ କଲେ। ଅନ୍ୟ ଏକ ରାଜ୍ୟର ବିଚାରପତିଙ୍କୁ ରାତ୍ରି ଭୋଜନ ପରେ ଅନୁରୋଧ କରାଯାଏ ଟେବୁଲ ଉପରେ ମର୍କଟ ଭଳି ନୃତ୍ୟ କରିବାକୁ। ଦେଶୀୟ ରାଜ୍ୟ ମାନଙ୍କର କ୍ରୀଡ଼ା କୌତୁକ ପରିହାସ ସୃଷ୍ଟିର ଏମିତି ବହୁ ବିବରଣୀ ଲିପିବଦ୍ଧ। ଏଭଳି କୌତୁକ ସୃଷ୍ଟି କରିବା ଦ୍ୱାରା ଯେପରି ଆମୋଦ ପ୍ରମୋଦର ସଞ୍ଚାର ହୁଏ, ସେହିପରି ତାହା କେବଳ ଶାସନ କ୍ଷେତ୍ରରେ ଅଧିଷ୍ଠିତ ସର୍ବୋଚ୍ଚ କର୍ତ୍ତାଙ୍କର ମଧ୍ୟଯୁଗୀୟ କ୍ରୀଡ଼ା ବିଳାସର ପରିଚୟ ଦିଏ। ଆଧୁନିକ ଯୁଗରେ ମଧ୍ୟ ଏହିପରି ଆମୋଦ ପ୍ରମୋଦର ଉଦାହରଣ ବିରଳ ନୁହେଁ। ଏହି ପ୍ରକାର ସ୍ଥିତିସ୍ଥାପକ ଅଧିକାରୀମାନେ ରାଜ୍ୟ ମିଶ୍ରଣ ଫଳରେ ଓଡ଼ିଶା ଶାସନରେ ଉଚ୍ଚ ସ୍ଥାନ ଅଧିକାର କରିପାରିଥିଲେ। କାଳିନ୍ଦୀଚରଣ ଆଉ ଗୋଟିଏ ତାଙ୍କ ଅଭିଜ୍ଞତା ଲେଖିଅଛନ୍ତି।

ରାଜଦ୍ୱାରରେ ଜଣେ ସନ୍ନ୍ୟାସୀ ଧୁନି ଜାଳି ଧ୍ୟାନ କରୁଥିବା ଦେଖି ରାଜାଙ୍କର ଧାରଣା ଜନ୍ମେ ଯେ ଏହା ରାଜ୍ୟର ବେକାର ସମସ୍ୟାର ଏକ ଜ୍ୱଳନ୍ତ ଉଦାହରଣ। ସନ୍ନ୍ୟାସୀଙ୍କ ପ୍ରତି ପରୋକ୍ଷରେ ଆଦେଶ କରାଯାଏ। ଫଳରେ ରାଜଦ୍ୱାରରେ ସେହି ଶ୍ମଶ୍ରୁଳ ଜଟାଜୁଟ କୌପୀନବସ୍ତ୍ର ସନ୍ନ୍ୟାସୀଙ୍କର ଆଉ ସାକ୍ଷାତ ମିଳେନାହିଁ। ସିଂହଦ୍ୱାରରେ ତାଙ୍କୁ ଦେଖାଯାଏ ପୁଲିସ୍ ଜଗୁଆଳୀ ବେଶରେ। କାନ୍ଧରେ ବନ୍ଧୁକ ଓ ମସ୍ତକରେ ପୁଲିସ୍ ପଗଡ଼ି ଭିଡ଼ି ସେ ଲେଫ୍ଟ ରାଇଟ୍ କରି ସିଂହଦ୍ୱାରରେ ଏପାଖ ସେପାଖ ହେଉଛନ୍ତି।





ରାଜା ଶଙ୍କର ପ୍ରତାପ ସିଂହଦେଓ ମହୀନ୍ଦ୍ର ବାହାଦୁର

# ଢେଙ୍କାନାଳ ରାଜା

## ଶ୍ରୀ ଶଙ୍କର ପ୍ରତାପ ମହୀନ୍ଦ୍ର ବାହାଦୁର

ଓଡ଼ିଶାର ୧୧ଗୋଟି 'କ' ଶ୍ରେଣୀ ରାଜ୍ୟ ମଧ୍ୟରୁ ଢେଙ୍କାନାଳ ଅନ୍ୟତମ। ଏହା କଟକ ଜିଲ୍ଲାର ପଶ୍ଚିମରେ ଅବସ୍ଥିତ। ଓଡ଼ିଶାର ରାଜଧାନୀର ନିକଟତମ ହେତୁ ଏହାର ଶାସନର କୁ ବା ସୁ ପ୍ରଭାବ ସହଜରେ ପ୍ରଚାରିତ ହୋଇଥାଏ। ରାଜ୍ୟର କପିଳାସ ପର୍ବତ ସପ୍ତଶଯ୍ୟା ନିର୍ଝର ଓ ଯୋରନ୍ଦା ମହିମା ଧର୍ମର ପୀଠ ଭାବରେ ଓଡ଼ିଶା ପ୍ରସିଦ୍ଧ। ପ୍ରତିବର୍ଷ ଏହା ବହୁତ ତୀର୍ଥଯାତ୍ରୀଙ୍କୁ ଆକୃଷ୍ଟ କରିଥାଏ।

ରାଜା ସୁରପ୍ରତାପ ମହୀନ୍ଦ୍ର ବାହାଦୁର ମାତ୍ର ୩୨ ବର୍ଷ ବୟସରେ ୧୯୧୮ ମସିହାରେ ଇନଫ୍ଲୁଏନଜା ରୋଗରେ ପୀଡ଼ିତ ହୋଇ ପ୍ରାଣ ତ୍ୟାଗ କଲେ। ଯୁବରାଜ ଶଙ୍କର ପ୍ରତାପ ଓ ପଟାୟତ ସେତେବେଳେ ରାଜକୁମାର କଲେଜରେ ପଢୁଥାଆନ୍ତି। ରାଜବାଟିରେ ଆଉ ୩/୪ ଜଣ ରାଜକୁମାର ରହି ଶିକ୍ଷା ପାଉଥିଲେ। ସେମାନଙ୍କ ମଧ୍ୟରୁ

ଜଣେ ଅମର ପ୍ରତାପ ଡମପଡ଼ା ରାଜ୍ୟକୁ ପୋଷ୍ୟପୁତ୍ର ଭାବରେ ଯାଇଥିଲେ। ରାଜା ଶଙ୍କର ପ୍ରତାପଙ୍କର ଜନ୍ମ ୧୯୦୪ ମସିହା ନଭେମ୍ବର ୧୫ ତାରିଖ। ଶିକ୍ଷା ସମାପ୍ତି ପରେ ସାବାଳକ ହୋଇ ୧୯୧୮ ମସିହା ଅକ୍ଟୋବର ୧୬ ତାରିଖରେ ଗାଦିନସିନ ହୋଇଥିଲେ । ରାଜା ଶଙ୍କର ପ୍ରତାପ ନାବାଳକ ଥିବା ସମୟରେ ରାଜ୍ୟ କୋର୍ଟ ଅଫ ୱାର୍ଡ଼ସ ଥିଲା। ଜଣେ ପ୍ରଖ୍ୟାତ ପ୍ରଶାସକ ରାଜକିଶୋର ତ୍ରିପାଠୀ ସୁପରିଟେଣ୍ଡ ନିଯୁକ୍ତ ହୋଇଥିଲେ। ଓଡ଼ିଶା ଶାସନରୁ ଭାରତଚନ୍ଦ୍ର ନାୟକ (୧୮୮୭-୧୯୭୯) ସହକାରୀ ସୁପରିଟେଣ୍ଡ ଭାବରେ ୨୩ ଅଗଷ୍ଟ ୧୯୧୯ ମଡ଼ି (କାମାକ୍ଷାନଗର)ର ଏସଡ଼ିଓ ହୋଇଥିଲେ। ରାଜ୍ୟର ଗଡ଼ଜାତ ଓଡ଼ିଶା ମିଶ୍ରଣରେ ରାଜା ଶଙ୍କର ପ୍ରତାପ ସର୍ବ ପ୍ରଥମେ 'କ' ଶ୍ରେଣୀ ରାଜାମାନଙ୍କ ମଧ୍ୟରୁ ସ୍ୱାକ୍ଷର କରିଥିଲେ। ସ୍ୱାଧୀନ ଭାରତବର୍ଷରେ ସେ ଗଣତନ୍ତ୍ର ପରିଷଦ ରାଜନୈତିକ ଦଳର ଏକ ସକ୍ରିୟ ମୁଖ୍ୟ ଥିଲେ। ନିର୍ବାଚନରେ ଅଂଶ ଗ୍ରହଣ କରି ସେ ରାଜ୍ୟ ବ୍ୟବସ୍ଥା ସଭା ଓ ଲୋକସଭାକୁ ନିର୍ବାଚିତ ହୋଇ ନିଜ ଲୋକପ୍ରିୟତା ପ୍ରମାଣିତ କରିଥିଲେ। ମାତ୍ର ଦୁର୍ଭାଗ୍ୟର କଥା ତାଙ୍କ ରାଜତ୍ୱ ଓଡ଼ିଶା ଇତିହାସରେ ଏକ କଳଙ୍କିତ ଅଧ୍ୟାୟ ଥିଲା ଯାହା ଫଳରେ ତାଙ୍କୁ ରାଜ୍ୟ ଛାଡ଼ି ଚାଲିଯିବାକୁ ପୋଲିଟିକାଲ ବିଭାଗ ନିର୍ଦ୍ଦେଶ ଦେଇଥିଲା। ଦେଶ ସ୍ୱାଧିନ ହେବା ପୂର୍ବରୁ ସାର୍ବଭୌମ କ୍ଷମତା ଲୋପ ହେବା ଆଗରୁ ସେ ରାଜ୍ୟକୁ ଫେରି ଆସିଥିଲେ। ତାଙ୍କ ଅତ୍ୟାଚାରର ମୂକସାକ୍ଷୀ ରୂପେ ବର୍ତ୍ତମାନ ମଧ ଢେଙ୍କାନାଳ ସହରର ଉପକଣ୍ଠରେ ଦଣ୍ଡାୟମାନ ବିରାଟ 'ଯତନ ନଗର'। ଏହି ପ୍ରାସାଦ ନିର୍ମାଣ ସମୟରେ ପ୍ରଜାବର୍ଗ, ହାତୀ, ଘୋଡ଼ା ଓ ରାଜକର୍ମଚାରୀମାନଙ୍କ ଉପରେ ଏପରି ଅତ୍ୟାଚାର ହୋଇଥିଲା ଯେ ଏହାକୁ ରକ୍ତତୀର୍ଥ 'ଯତନ ନଗର' କହିବାର ଶୁଣାଯାଏ। ଏହା ରାଜାଙ୍କର ଦ୍ୱିତୀୟ ଭାଇ ପଟ୍ଟାୟତଙ୍କ ବାସଗୃହ ପାଇଁ ନିର୍ଦ୍ଦିଷ୍ଟ ଥିଲା। ସେ ମଧ ରାଜ୍ୟର ଦେୱାନ (ମୁଖ୍ୟମନ୍ତ୍ରୀ) ଭାବେ ଅବସ୍ଥାପିତ ଥାଇ ଅଖଣ୍ଡ କ୍ଷମତା ଭୋଗ କରୁଥିଲେ।

ରାଜା ଶଙ୍କର ପ୍ରତାପଙ୍କର ଅତ୍ୟାଚାର ବହୁ ସ୍ଥାନରେ ଚର୍ଚ୍ଚିତ। ୧୯୩୫ ମସିହା ମାର୍ଚ୍ଚ ୧୮ ତାରିଖରେ ଢେଙ୍କାନାଳ ରାଜା ବିଲାତ ଗଲେ। ହୁଏତ ଇଂଲଣ୍ଡର ରାଜା ପଞ୍ଚମ ଜର୍ଜଙ୍କ ରୌପ୍ୟ ଜୁବୁଲିରେ ଯୋଗଦାନ ଉଦ୍ଦେଶ୍ୟ ଥାଇପାରେ। ମାତ୍ର ଅଣ୍ଡରସନ ନାମରେ ଜଣେ ମାଜିଷ୍ଟ୍ରେଟ୍ ଲୋକମାନଙ୍କୁ ସଭା କରି ତାଙ୍କ ଯାତ୍ରା କର୍ମରେ ସମ୍ମାନ ଦର୍ଶାଇବାକୁ ଏକ ପରୱାନା ଜାରି କରିଥିଲେ। ଏହିପରି ଦରବାର ରାଜଭକ୍ତି ଅସୁଲ କରୁଥିଲା। ତାଙ୍କ ରାଜ୍ୟରେ ଜଣେ ପୋଲିସ୍ କର୍ମଚାରୀ ଥିଲେ। ତାଙ୍କ ନାମ ବ୍ରଜ କିଶୋର ଧଳ। ରାଜଦରବାର ସହିତ ମତଭେଦ ହେତୁ ସେ ଚାକିରି ଛାଡ଼ିଦେଲେ। ତାଙ୍କୁ

ନାନା ପ୍ରକାର ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ପଡ଼ିଲା। ସ୍ୱାଧୀନ ଭାରତରେ ସେ ଢେଙ୍କାନାଳ ଜିଲ୍ଲା ପରିଷଦର ଅଧ୍ୟକ୍ଷ ଥିଲେ। ନିଜର ଅଭିଜ୍ଞତା ସେ 'ଭୁଲିବୁ ନାହିଁ' ନାମକ ପୁସ୍ତକରେ ବର୍ଣ୍ଣନା କରିଅଛନ୍ତି। ପୁସ୍ତକଟି ୧୯୯୩ରେ ଭୁବନେଶ୍ୱରରେ ପ୍ରକାଶକ ବୁକଲାଣ୍ଡ ଇଣ୍ଟରନେସନାଲ ଦ୍ୱାରା ପ୍ରକାଶିତ ହୋଇଥିଲା। ଏଥିରୁ କେତେଗୋଟି ବଛା ବଛା ଉପାଖ୍ୟାନ ଏଥିରେ ଦିଆଯାଉଛି। ବିଷୟମାନ ହେଲା ପ୍ରଥମଟି ସାଧୁ ସେବା, ଦ୍ୱିତୀୟଟି ଅତ୍ୟାଚାରିତ ଲାବଣ୍ୟ, ତୃତୀୟଟି ପ୍ରହରାଜଙ୍କ ଦେବଦର୍ଶନ ଓ ଚତୁର୍ଥ ରକ୍ତତୀର୍ଥ ଯତନ ନଗର। ଏହା ତତ୍କାଳୀନ ରାଜ୍ୟର ଶାସକ ଓ ପ୍ରଜା ପୀଡ଼ନର ନିଖୁଣ ଚିତ୍ର ପ୍ରଦାନ କରେ।

ଭାଷାକୋଷ ପ୍ରଣେତା ରାୟ ବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ ଥରେ ରାଜ ନିମନ୍ତ୍ରଣରେ ଢେଙ୍କାନାଳ ଆସିଥିଲେ। ରାଜ୍ୟରେ ବାହାରୁ ଆସିଥିବା ଭଦ୍ରବ୍ୟକ୍ତିମାନେ ଲାଞ୍ଛିତ ହେଉଥିବା ଅଭିଯୋଗ ବିଷୟରେ ସେ ରାଜା ସାହେବଙ୍କୁ କଟକରେ ସିଧା ସଳଖ ପଚାରିଲେ। ପ୍ରହରାଜଙ୍କ ରାଜଅନୁମତିରେ ଢେଙ୍କାନାଳ ରାଜ୍ୟରେ ରହି ରାଜ୍ୟ ଶାସନ ତନ୍ନ ତନ୍ନ କରି ଦେଖିପାରିଥିଲେ। ରାଜାମାନଙ୍କୁ ସୁରକ୍ଷା ଦେବା ନିମିତ୍ତ ଥିବା (Princes Protection Act) ଆଇନ ଓ ଭାରତୀୟ ଦଣ୍ଡ ବିଧି ଆଇନର ୫୦୦ ଦଫା ମାନହାନି ଆଇନରେ କାର୍ଯ୍ୟାନୁଷ୍ଠାନକୁ ଭୟ କରି ସେ ନିଜର ଅଭିଜ୍ଞତା "ସ୍ୱପ୍ନରେ ରାଜଯୋଗ" ପ୍ରବନ୍ଧରେ ବ୍ୟଙ୍ଗ ଭାଷାରେ ପରୋକ୍ଷ ଭାବରେ ବର୍ଣ୍ଣନା କରିଥିଲେ। ତତ୍କାଳୀନ ଓଡ଼ିଶାର ସର୍ବ ପ୍ରଧାନ ମାସିକ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦନାରେ ପ୍ରକାଶିତ ନବଭାରତ ପତ୍ରିକାର ୧୩୪୧ ସାଲ (୧୯୩୪ ମସିହା) ରେ ଏହା କ୍ରମାଗତ ପ୍ରକାଶିତ ହୋଇଥିଲା। ପାଠକମାନଙ୍କ ଅବଗତି ନିମିତ୍ତ ଓ ଦରବାର ଶାସନର ନିଖୁଣ ଚିତ୍ର ବୁଝିବାକୁ ସେଥର ସମ୍ପାଦିତ ଅଂଶ ଏଥି ସହିତ ମଧ୍ୟ ପ୍ରଦତ୍ତ ହେଲା।

**ସାଧୁ ସେବା :**

୧୯୩୩ ନଭେମ୍ବର। ସେତେବେଳେ ମୁଁ ଢେଙ୍କାନାଳରେ ପୋଲିସ୍ ଚାକିରିରେ ଯୋଗଦେଇ ସଦର ଥାନାରେ ସହକାରୀ ଅଫିସର ଭାବେ କାର୍ଯ୍ୟ ତୁଲାଉଥାଏ। ଅନ୍ୟ ସହକର୍ମୀମାନଙ୍କ ମଧ୍ୟରେ ସର୍ବଶ୍ରୀ ରାଧାମୋହନ ପଟ୍ଟନାୟକ, ଶ୍ରୀଧର ମଙ୍ଗରାଜ, ସୁଦର୍ଶନ ପାଣି, ନାରାୟଣ ମହାନ୍ତି, ବିଶ୍ୱନାଥ ଦାସ ପ୍ରମୁଖ ଥିଲେ। ସେତେବେଳେ ପୁଲିସ୍ ବିଭାଗ ଢେଙ୍କାନାଳ ରାଜାଙ୍କ ଦକ୍ଷିଣ ହସ୍ତ ପରି କାର୍ଯ୍ୟ କରୁଥିଲା। ପୁଲିସ୍ ଧର୍ତ୍ତବ୍ୟ ଓ ଅଧର୍ତ୍ତବ୍ୟ ମାଲିମକଦ୍ଦମା ସହିତ ପାନ, ଲୁଣ, କିରୋସିନି, ଚମଡ଼ା ଇତ୍ୟାଦିର ଲାଇସେନ୍ସ ଦେବା,

ନିୟମ ଭଙ୍ଗ କରୁଥିବା ଅପରାଧର ବିଚାର, ବନ୍ଧ ପୋଖରୀ ଖୋଳାଇବା, ରାଜାଙ୍କ ନଅର ଆଦି ତୋଳାଇବା କାର୍ଯ୍ୟରେ ବେଠିଆ, ବେଠି, ଗାଡ଼ି ଯୋଗାଇବା ଆଦି ଯାବତୀୟ କାର୍ଯ୍ୟ ତୁଲାଉଥିଲା । ସେଥିପାଇଁ କେତେକ ନିର୍ଦ୍ଦିଷ୍ଟ ପୁଲିସ୍ ଅଫିସରଙ୍କୁ ଉପରୋକ୍ତ ଘଟଣା ସବୁର ବିଚାର ବେଳେ ବିନା ରସିଦରେ ଅବାଧ ଜୋରିମାନା ଆଦାୟର କ୍ଷମତା ଦିଆଯାଇଥିଲା । ଏହା ବ୍ୟତୀତ ଶ୍ରୀଛାମୁଙ୍କର ଯାବତୀୟ ହୁକୁମ, ବାଛ ବିଚାର ନକରି ପୁଲିସ୍‌କୁ ପାଳନ କରିବାକୁ ପଡୁଥିଲା । ଅତ୍ୟାଚାର ଭୟରେ ଜ୍ଞାନୀ, ମାନୀ, ବିଦ୍ୱାନ ତଥା ସାଧୁସନ୍ଥ କେହି ରାଜ୍ୟ ମଧ୍ୟରେ ପ୍ରବେଶ କରୁନଥିଲେ ।

ଦିନେ ରାତି ୮ ଘଣ୍ଟା ସମୟରେ ଦୁଇଜଣ ହିନ୍ଦୁସ୍ଥାନୀ ସାଧୁଙ୍କୁ ରାଜାଙ୍କ ନଅରଠାରୁ ଥାନାକୁ ପଠାଯାଇଥିଲା । କିଛି ସମୟପରେ ରାଜା, ପଟ୍ଟାୟତ (ରାଜାଙ୍କ ନିକଟ ତଳ ଭାଇକୁ ପଟ୍ଟାୟତ ଡକାଯାଏ) ଥାନାରେ ଆସି ପହଞ୍ଚିଲେ । ସେଦିନ ମୁଁ ଥାନା ଦାୟିତ୍ୱରେ ଥିଲି । ମଲ୍ଲୀ ନାମକ ଗୋଟିଏ ବିଧବା ଶବରୁଣୀକୁ ଥାନା ପାଖ ଗୁଡ଼ିଆନାଳି ସଅର ସାହିରୁ ସଙ୍ଗେ ସଙ୍ଗେ ଡକାଇବାକୁ ଖୋଦ୍ ଶ୍ରୀମୁଖରୁ ଆଦେଶ ହେଲା । ମଲ୍ଲୀକୁ ମୁଁ ଚିହ୍ନି ନଥିବାର ଜଣାଇବାରେ ଦୁଇ ଚାରି ପଦ କଟୁ ମନ୍ତବ୍ୟ ସହ ସାଙ୍ଗେ ସାଙ୍ଗେ ଚାକିରିରୁ ଇସ୍ତଫା ଦେବା ପାଇଁ ଧମକ ଦିଆଯାଇ ପୁଣି ସେହି ଆଦେଶ ପାଳିବା ନିମନ୍ତେ କଡ଼ା ନିର୍ଦ୍ଦେଶ ଦିଆଗଲା । ଥାନାରେ ସେତେବେଳେ ଉପସ୍ଥିତ ଥିବା କନେଷ୍ଟବଲ ଶ୍ରୀ ନାରାୟଣ ମହାନ୍ତିଙ୍କୁ ନିର୍ଦ୍ଦେଶ ଦେବାରେ ସେ ନିଜେ ଦୁଇଜଣ ସିପାହୀ ସହ ଯାଇ ଅସହାୟା ବିଧବା ମଲ୍ଲୀକୁ ଧରି ଆଣିଲେ । ସେହି ହେଲା ମଲ୍ଲୀ ସଙ୍ଗେ ମୋର ପ୍ରଥମ ଦେଖା । ମଲ୍ଲୀ ପହଞ୍ଚିବା ପରେ ପୂର୍ବରୁ ଆସି ପହଞ୍ଚିଥିବା ହିନ୍ଦୁସ୍ଥାନୀ ସାଧୁ ଦୁଇଜଣଙ୍କୁ ଉଲଗ୍ନ କରାଇ ଓ ତୁଳସୀ ମାଳା ପ୍ରଭୃତି କାଢ଼ି ସମ୍ମୁଖକୁ ଆଣିବାକୁ ନିର୍ଦ୍ଦେଶ ମିଳିଲା । ସେହିଭଳି ଉଲଗ୍ନ ଅବସ୍ଥାରେ ସେ ସାଧୁ ଦୁଇଜଣଙ୍କୁ ମଟର ଲାଇଟରେ ଆଣି ଠିଆ କରାଗଲା । ସେ ଦୁହିଁଙ୍କ ମଧ୍ୟରେ ମଲ୍ଲୀକୁ ଉଲଗ୍ନ ଅବସ୍ଥାରେ ମଧ୍ୟ ଠିଆ କରଗଲା । ଏହି ତିନିଜଣଙ୍କୁ ଉଲଗ୍ନ କରି ଆଣିବା ଘଟଣା ଏତେ ଦାରୁଣ ଓ ହୃଦୟ ବିଦାରକ ଯେ ତାହା ଅନୁଭବୀ ନହେଲେ କଳ୍ପନା କରିହେବ ନାହିଁ । ମଟର ସାମ୍ନାରେ ତିନି ହାତ ଅନ୍ତରରେ ସେ ତିନିଙ୍କୁ ସିପାହୀଙ୍କ ସାହାଯ୍ୟରେ ଛାମୁଙ୍କ ଆଡ଼କୁ ମୁହଁ କରି ଉପରକୁ ହାତ ଟେକି ଠିଆ କରାଗଲା । ତା'ପରେ ଛାମୁଙ୍କ ଆଡୁ ସେମାନଙ୍କ ଉପରେ ମଟର ଆଲୁଅ ପକାଇ ଲିଭାଇବା ଅଭିନୟ କରାଗଲା । ସାଧୁ ଦୁଇଜଣ ପ୍ରାଣ ବିକଳରେ ରାମସୀତା-ସୀତାରାମ ଉଚ୍ଚାରଣ କରୁଥାଆନ୍ତି । ମଟର ଆଲୁଅରେ ସେମାନଙ୍କ ଉଲଗ୍ନ ଚେହେରା କଟକ ସମ୍ବଲପୁର ରାସ୍ତାକୁ ଦେଖାଯାଉଥାଏ । ଏହି ଅଭିନୟ

ପରେ ମଲ୍ଲୀକୁ ମଝିରେ ଠିଆ କରାଇ ତା'ର ଦୁଇପଟେ ସାଧୁ ଦୁହିଁଙ୍କୁ ସିପାହୀଙ୍କ ସାହାଯ୍ୟରେ କୁଣ୍ଢାଇବାର ବ୍ୟବସ୍ଥା କରାଗଲା। ସାଧୁ ଦୁହେଁ ଛାଟିପିଟି ହେଉଥାଆନ୍ତି। କେବଳ ମଲ୍ଲୀ ଥର ଥର ଅବସ୍ଥାରେ ଠିଆ ହୋଇ ରହିଥାଏ।

ଏହାପରେ ସାଧୁ ଦୁଇଜଣଙ୍କୁ ପଶ୍ଚିମ ଦିଗକୁ ମୁଣ୍ଡକରି ଥାନା ସାମ୍ନା ଗୋଡ଼ିରେ ଚିତ୍‌କରି ଶୁଆଇ ଦିଆଗଲା। ସେହି ଅବସ୍ଥାରେ ନାମ ଭଜନ କରୁଥିବାରୁ ସେମାନଙ୍କ ମୁହଁରେ ପରିସ୍ରା ଦ୍ୱାର ଘଷିବାକୁ ମଲ୍ଲୀକୁ ନିର୍ଦ୍ଦେଶ ଦିଆଗଲା। ଏଥିରେ ସାଧୁ ଦୁହେଁ ଉଠିପଡ଼ି ବାନ୍ତି କରି ପକାଇଥିଲେ। ଏହାପରେ ମଲ୍ଲୀକୁ ଚିତ୍‌କରି ଶୁଆଇ ଦେଇ ଜଣେ ସାଧୁଙ୍କୁ ତା' ଉପରେ ଶୁଆଇ ଯୌନକ୍ରିୟା ସମ୍ପନ୍ନ କରିବାକୁ କୁହାଗଲା। କିନ୍ତୁ ସେ ଅକ୍ଷମ ହେଲାରୁ ଜଣେ ସିପାହୀ ସାହାଯ୍ୟରେ ସାଧୁଙ୍କୁ ମଲ୍ଲୀ ଉପରେ ଉଠାପକା କରାଇ ମଲ୍ଲୀକୁ ନେଉଟାଇ ସାଧୁ ଉପରେ ଶୁଆଇ ଯୌନକ୍ରିୟା ସମ୍ପନ୍ନ ହେଲା କି ନାହିଁ ଜାଣିବାକୁ ସେମାନଙ୍କ ମର୍ମସ୍ଥଳକୁ ସିପାହୀ ସାହାଯ୍ୟରେ ଟର୍ଚ୍ଚ ଲାଇଟ୍ ପକାଗଲା। ଅନ୍ୟ ସାଧୁ ଜଣକ ସେତେବେଳେ ନାମ ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ଠିଆ ଠିଆ ପରିସ୍ରା କରୁଥାଆନ୍ତି। ତାଙ୍କ ପ୍ରତି ମଧ୍ୟ ସେହି ଅଭିନୟ କରାଗଲା।

ଏହି ଅଭିନୟ ପରେ ସାଧୁ ଦୁହିଁଙ୍କୁ ପୁଣି ହାଜତରେ ରଖାଗଲା ଓ ମଲ୍ଲୀକୁ ବିଦା କରାଗଲା। ପରେ ସାଧୁମାନେ ସେବା ଶିଖିଲେ କି ନାହିଁ ପଚାରିବାକୁ ହୁକୁମ ଦେଇ ଛାମୁ ବିଦାୟ ନେଲେ। ସାଧୁ ଦୁଇଜଣ ସାରା ରାତି ମଝିରେ ମଝିରେ ବାନ୍ତି କରୁଥାନ୍ତି ଓ ନାମ ଉଚ୍ଚାରଣ କରି ରାତି କଟାଇଲେ। ସୂର୍ଯ୍ୟ ଉଦୟ ପୂର୍ବରୁ ସେମାନଙ୍କୁ ମଟରରେ ନେଇ ଆଠଗଡ଼ ଖୁଣ୍ଟୁଣୀ ଆରପାଖ ଜଙ୍ଗଲ ରାସ୍ତାରେ ଛାଡ଼ି ଦିଆଗଲା। ଢେଙ୍କାନାଳ ରାଜାଙ୍କ ବହୁ ପ୍ରକାର ସାଧୁ ସେବା ମଧ୍ୟରୁ ଏହା ଗୋଟିଏ। ତତ୍କାଳୀନ ପୁଲିସ ଅଫିସରମାନଙ୍କ ମଧ୍ୟରୁ ଶ୍ରୀ ନାରାୟଣ ମହାନ୍ତି ଓ ବିଶ୍ୱନାଥ ଦାସ ଚାକିରୀରୁ ଅବସର ନେଇ ଜୀବିତାବସ୍ଥାରେ ଅଛନ୍ତି। ମାତ୍ର ଅସହାୟା ମଲ୍ଲୀର କୌଣସି ଖୋଜ ଖବର ନାହିଁ। ପରେ ଖବର ମିଳିଥିଲା ଯେ ଏହି ନିରୀହ ସ୍ତ୍ରୀଲୋକଟି ଛାମୁଙ୍କ ନଅରରେ ଅତ୍ୟାଚାରର ଭୟ ତଥା ଅଳ୍ପ କିଛି ଦକ୍ଷିଣା ପାଇ ଏହିପରି ଅନେକ ଅଭିନୟ ସମ୍ପନ୍ନ କରିଥିଲା।

**ଅତ୍ୟାଚାରିତ 'ଲାବଣ୍ୟ' :**

୧୯୩୩ ମସିହା କଥା। ଢେଙ୍କାନାଳରେ ଧନୀ, ମାନୀ, ବିଦ୍ୱାନ, ଦେଶୀ, ବିଦେଶୀ କାହାରି ହେଲେ ସମ୍ମାନ ନଥିଲା ବିଶେଷତଃ ମାତୃଜାତି ପ୍ରତି ଅତ୍ୟାଚାର ସୀମା ଟପି ଯାଇଥିଲା। ବହୁ ଘଟଣା ମଧ୍ୟରୁ ଏଇଟି ଅନ୍ୟତମ।

ଲାବଣ୍ୟ ଦେଇ ଆମ ଗାଁର ଗୋଟିଏ ଭଦ୍ର ପରିବାରର ଷୋଡ଼ଶୀ ଯୁବତୀ। ସେ ଦିନେ ଢେଙ୍କାନାଳ ସହର ବାଟେ ତା'ର ବନ୍ଧୁ ଘରକୁ ଯାଉଥିବାବେଳେ ରାଜାଙ୍କ ବିଶ୍ୱସ୍ତ ଅନୁଚରମାନଙ୍କ ଦ୍ୱାରା ତାକୁ ନଅରକୁ ଧରି ନିଆଗଲା ଏ ଖବର ଲାବଣ୍ୟର ବଂଶଧରମାନେ ପାଇ ସୁଦ୍ଧା ଅତ୍ୟାଚାର ଭୟରେ ନୀରବ ରହିଲେ। ଏହାପରେ ଲାବଣ୍ୟ ହେଲା ଗୋଟାଏ ଭୋଗ ବିଳାସର ସାମଗ୍ରୀ। ଜାତି ବର୍ଣ୍ଣ ନିର୍ବିଶେଷରେ ନାନା ଲୋକ ଓ ସହରର ବାସିନ୍ଦାଙ୍କୁ ଦିନ ପରେ ଦିନ ଲାବଣ୍ୟର ଯୌବନ ଉପଭୋଗ କରିବାକୁ ବାଧ୍ୟ କରାଗଲା। ଉପଭୋଗକାରୀମାନଙ୍କ ସଂଖ୍ୟା ଏକ ଶହରୁ ଊର୍ଦ୍ଧ୍ୱ ଥିବାର ଜଣାଯାଏ।

ଶେଷରେ ଲାବଣ୍ୟକୁ ମୂଳ କରି ଅର୍ଥାଗମର ପନ୍ଥା ଆବିଷ୍କାର କରାଗଲା। ଉକ୍ତ ଲାବଣ୍ୟ ପ୍ରତି ଅବୈଧ ଆଚରଣ କରିଥିବା ଅପରାଧରେ ହଠାତ୍ ଦିନେ ମୋତେ, ମୋର ଜଣେ ଦାଦାପୁଅ, ଜଣେ ପିଉସୀ ପୁଅ ଓ ଆଉ ଜଣେ ପିଉସାଙ୍କୁ ନଅରକୁ ଧରି ନିଆଗଲା। ଆମ ଉପରେ ଧାର୍ଯ୍ୟ ହେବା ଅର୍ଥଦଣ୍ଡ ସହଜରେ ଆଦାୟ ହେବା ପାଇଁ ମୋ ବାପା, ଦାଦାଙ୍କୁ ମଧ୍ୟ ନିଆଯାଇଥିଲା। ଆମ୍ଭମାନଙ୍କୁ ଦିନ ୧୨ଟା ଠାରୁ ରାତି ୯ଟା ପର୍ଯ୍ୟନ୍ତ ସିଂହଦରଜାଠାରେ ଅଟକ ରଖାଗଲା।

ରାଜାଙ୍କ ବୈଠକଖାନା ବଡ଼ ବଖୁରିଆରେ ତାଙ୍କ ଉପସ୍ଥିତିରେ ଦୁଇଜଣ ଯୋଡ଼ି ବେତଧାରୀ, ଉପାଧିପ୍ରାପ୍ତ ଜଓ୍ୱାନ ସିପାହୀଙ୍କ ମଧ୍ୟରେ ଲାବଣ୍ୟକୁ ଠିଆ କରାଯାଇଥାଏ। ମୋର ଜଣେ ଦୂର ସମ୍ପର୍କୀୟ ବନ୍ଧୁ (ରାଜାଙ୍କ ଉପାଧିଧାରୀ ଅନୁଚର)ସିଂହଦରଜାଠାରୁ ରାଜାଙ୍କ ନିକଟକୁ ମୋତେ ଡ଼ାକିନେଲେ। ଅତ୍ୟାଚାରରୁ ମୁକ୍ତି ପାଇବା ଆଶାରେ ବ୍ୟାକୁଳ ହୋଇ ସେ ଘଟଣା ମିଥ୍ୟା ହେଉପଛେ ସ୍ୱୀକାର କରିବା ପାଇଁ ମୋତେ ଗୁପ୍ତରେ ଅନୁରୋଧ କରିଥିଲେ। " ମୁଁ ପାଠ ପଢ଼ି ଗାଁରେ ରହି କାହିଁକି ପର ଝିଅ ବୋହୂଙ୍କ ଇଜ୍ଜତ ସାରିଛି" ବୋଲି ଖୋଦ (ରାଜା) ଶ୍ରୀମୁଖରୁ ମୋତେ ପ୍ରଶ୍ନ ହେଲା। ମୁଁ ଏହା ଅସ୍ୱୀକାର କରିବାରେ ମୋତେ ମାଡ଼ ଓ ଜେଲ୍‌ର ଭୟ ପ୍ରଦର୍ଶନ କରାଗଲା। ତା ସତ୍ତ୍ୱେ ମୁଁ ଅଟଳ ରହିବାରେ ମୁଦେଇ ଭାବେ ଲାବଣ୍ୟକୁ ପ୍ରଶ୍ନ କରାଗଲା। ଲାବଣ୍ୟ କାନ୍ଦି କାନ୍ଦି ସେ "ମୋ ଭାଇ" ବୋଲି କହି ଘଟଣାକୁ ଅସ୍ୱୀକାର କରି ମାଡ଼ ଭୟରେ ପୂର୍ବରୁ କହିଥିବାର ପ୍ରକାଶ କଲା। ଶେଷରେ ତା ହାତରେ ମହାପ୍ରସାଦ ପୂର୍ଣ୍ଣଥାଳି ହଲପ ପ୍ରମାଣ ପାଇଁ ଦିଆଗଲା। ସେ ଉକ୍ତ ପ୍ରମାଣ ଧରି ତା' ସହିତ ମୋର ଅବୈଧ ଆଚରଣ କଥା ଅସ୍ୱୀକାର କରିଥିଲା। ଏତିକିରେ ଆମ ସମସ୍ତଙ୍କୁ ରାତି ୧୧ଟା ବେଳେ ମୁକ୍ତି ମିଳିଲା। ସେତେବେଳେ ପଞ୍ଚାୟତ ଉପସ୍ଥିତ ଥିଲେ।

ଆମ ଗ୍ରାମରେ ରାଜାଙ୍କର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ତାଙ୍କ ବିଷ ଦୃଷ୍ଟିରେ ପଡ଼ିଥିବାରୁ ତାଙ୍କୁ ଅପମାନ ଦେବା ପାଇଁ ତାଙ୍କ ବଡ଼ ଭାଇକୁ ଧରାଇ ନେଇ ନଅରରେ ଦୁଇଭାଇଙ୍କ ମଧ୍ୟରେ ଉକ୍ତ ଲାବଣ୍ୟକୁ ଉଲଗ୍ନ ଅବସ୍ଥାରେ ଠିଆ କରାଇ ବ୍ୟଙ୍ଗ କରାଯାଇଥିଲା। ଏହି ଲାବଣ୍ୟ ଦ୍ୱାରା କେତେ ଭଦ୍ରଲୋକଙ୍କର ଯେ ମାନ ସମ୍ମାନ ହାନି କରାଯାଇଛି ତାର ଇୟତ୍ତା ନାହିଁ। ଲାବଣ୍ୟ ଦ୍ୱାରା ଏଭଳି ଲୀଳା କେତେଦିନ ଚାଲିଲା ପରେ ତାକୁ ଶେଷରେ ଜେଲ ଖଟାଇ ଦିଆଗଲା।

ଏବେ ବହୁଦିନ ହେଲା ଲାବଣ୍ୟର ପତ୍ତା ନାହିଁ। ଏ ଘଟଣା ସହ ସମ୍ପୃକ୍ତ ମହେଶ୍ୱର ଓ ମୋ ବ୍ୟତୀତ ଅନ୍ୟ ସମସ୍ତେ ମରିଗଲେଣି। ଏଭଳି ଶହ ଶହ ଘଟଣା ଘଟୁଥିଲା। ରାଜ୍ୟ ମଧ୍ୟକୁ ଖବର କାଗଜ ପ୍ରବେଶ ପାଇଁ ନିଷେଧାଜ୍ଞା ଉତ୍କଟ ଥିବାରୁ ବାହାର ଦୁନିଆକୁ ଏସବୁ କିଛି ଜଣା ଯାଉନଥିଲା।

ଉକ୍ତ ଘଟଣା ସମ୍ପର୍କରେ ତତ୍କାଳୀନ ବିଲାତ ପାର୍ଲାମେଣ୍ଟରୁ ନାରୀ ସଭ୍ୟା ଆଗାଥା ହାରିସନ, ଗଡ଼ଜାତ ତଦନ୍ତ କମିଟି ଓ ପଲିଟିକାଲ ବିଭାଗ କର୍ତ୍ତୃପକ୍ଷଙ୍କ ସମକ୍ଷରେ ସାକ୍ଷ୍ୟ ଦିଆଯାଇଥିଲା। ବୃଦ୍ଧା ହାରିସନ ଏ ଘଟଣା ଶୁଣି ସ୍ତମ୍ଭିତ ହୋଇଥିଲେ।

**ପ୍ରହରାଜଙ୍କ ଦେବ ଦର୍ଶନ :**

ଭାଷାକୋଷ ପ୍ରଣେତା ଶ୍ରୀଯୁକ୍ତ ଗୋପଳ ଚନ୍ଦ୍ର ପ୍ରହରାଜ ଶଙ୍କର ପ୍ରତାପଙ୍କର ନିମନ୍ତ୍ରଣରେ ଥରେ ଢେଙ୍କାନାଳ ଆସିଥିଲେ। ଶୁଣିବାକୁ ମିଳିଥିଲା ଯେ, କଟକରେ ପ୍ରହରାଜ ମହାଶୟଙ୍କର ରାଜାଙ୍କ ସଙ୍ଗେ ଦେଖାବେଳେ ରାଜାଙ୍କ ଶାସନର ଦୋଷ ଦୁର୍ବଳତା ଏବଂ ଅତ୍ୟାଚାର ସମ୍ପର୍କରେ କେତେକ କଥା ସିଧାସଳଖ ପଚାରିଥିଲେ। ବିଶେଷତଃ ବାହାର ଭଦ୍ରବ୍ୟକ୍ତିମାନେ ଢେ଼ଙ୍କାନାଳରେ ଲାଞ୍ଛିତ ହେଉଥିବା କଥା ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ। ରାଜା ଅନ୍ତରରେ ଏହାକୁ ଭୟ କରି ବାହାରେ କୁତ୍ସା ପ୍ରଚାରରୁ ରକ୍ଷା ପାଇବା ଆଶାରେ ଏ ମହାଶୟଙ୍କୁ ଢେଙ୍କାନାଳକୁ ନିମନ୍ତ୍ରଣ କରିଥିଲେ। କିନ୍ତୁ ନିଜର ମନ୍ଦ ସ୍ୱଭାବ ହେତୁ ପ୍ରହରାଜ ମହାଶୟଙ୍କୁ ଖୁସି କରିବା ଓ କୁଶାସନ ବିରୁଦ୍ଧରେ ତାଙ୍କର ହୃଦବୋଧ କରାଇବା ପରିବର୍ତ୍ତେ ତାହାଙ୍କ ପ୍ରତି ଯେପରି ଅଶୋଭନୀୟ ଆଚରଣ କଲେ ସେ ସମ୍ପର୍କରେ କେତେକ ଘଟଣା ଏଠାରେ ପ୍ରକାଶ କରୁଛି।

ରାଜା ପ୍ରହରାଜ ମହାଶୟଙ୍କୁ ସଙ୍ଗରେ ନେଇ ପ୍ରସିଦ୍ଧ କପିଳାସ ମନ୍ଦିର ଉପରକୁ ଠାକୁର ଚନ୍ଦ୍ରଶେଖରଙ୍କ ଦର୍ଶନ ପାଇଁ ଯାଇଥିଲେ। ସେତେବେଳେ କପିଳାସ ଉପରକୁ ଯେଉଁ ରାସ୍ତା ଥିଲା ତାହା ଘୋର ଜଙ୍ଗଲ ମଧ୍ୟ ଦେଇ ଉପରକୁ ଯାଇଥିଲା ଓ ତାହା ଅତି

ମାତ୍ରାରେ ଶ୍ୱାପଦସଙ୍କୁଳ ଥିଲା (ଏବେ ପକା ପିଚୁ ରାସ୍ତା ହୋଇଗଲାଣି) । ସେତେବେଳେ ଏକାକୀ ଏ ରାସ୍ତାରେ କୌଣସି ବ୍ୟକ୍ତିଙ୍କ ପକ୍ଷେ ଯିବା ସମ୍ଭବପର ହେଉନଥିଲା । ପ୍ରହରାଜ ମହାଶୟଙ୍କୁ ସେଠାରେ ସୁସ୍ୱାଦୁ ପ୍ରସାଦ ସେବନ କରାଇ ରାଜା ସେଠାରେ ବ୍ୟାଘ୍ର ଦର୍ଶନ କିପରି ସହଜଲଭ୍ୟ ତହିଁର ବହୁ କାହାଣୀ ରାଜାଙ୍କ ଚାକର ମାନଙ୍କ ଦ୍ୱାରା ଶୁଣାଇଥିଲେ ।

ସେଦିନ ସୂର୍ଯ୍ୟାସ୍ତର ସାମାନ୍ୟ ପୂର୍ବରୁ ରାଜା ପ୍ରହରାଜ ମହାଶୟଙ୍କ ସହ ମନ୍ଦିରରୁ ତଳକୁ ଆସିଥିଲେ । ଖଣ୍ଡେ ଦୂର ଆସିଲା ପରେ ରାଜାଙ୍କ ପୂର୍ବ ପରିକଳ୍ପିତ ଯୋଜନା ମତେ, ଘଞ୍ଚ ଜଙ୍ଗଲ ମଧ୍ୟରେ ଗାଡ଼ି ଖରାପ ହୋଇଯିବାର ଡ୍ରାଇଭର ଜଣାଇ ଦେଲେ । ରାଜାଙ୍କ ସହ ସମସ୍ତେ ଗାଡ଼ିରୁ ଓହ୍ଲାଇଲେ । ସେହି ସ୍ଥାନରେ ପ୍ରହରାଜ ମହାଶୟଙ୍କ ସହ ଦୁଇ ତିନି ଜଣ ଚାକରକୁ ଛାଡ଼ି, ଗାଡ଼ିର ପରୀକ୍ଷା ନିରୀକ୍ଷା ଆଳରେ ଡ୍ରାଇଭର ସହ ଗାଡ଼ିକୁ ଖଣ୍ଡେ ଦୂର ଆଗକୁ ନେଇ ରାଜା ଚାଲିଗଲେ । କିଛି ସମୟ ପରେ ପ୍ରହରାଜ ମହାଶୟଙ୍କ ନିକଟରେ ଥିବା ଚାକରମାନେ ମିଛରେ ଅଜା ! ବାଘ କହି ଦୌଡ଼ି କିଏ କୁଆଡ଼େ ପଳାଇଗଲେ । ପ୍ରହରାଜ ମହାଶୟ ନିରାଶ୍ରୟ ଅବସ୍ଥାରେ ଅତି କଷ୍ଟରେ ଗୋଟିଏ ଛୋଟ ଗଛ ଉପରେ ଚଢ଼ି ଆଶ୍ରୟ ନେବାକୁ ବାଧ ହୋଇଥିଲେ । ଦୀର୍ଘ ସମୟ ପରେ ରାଜାଙ୍କ ଚାକରମାନେ ଟର୍ଚ୍ଚ ପକାଇ ଖଣ୍ଡେ ଦୂରରୁ ଅଜା ଅଜା ଡ଼ାକି ଆସି ପହଞ୍ଚିଲେ ଏବଂ ପ୍ରହରାଜ ମହାଶୟ ଗଛ ଉପରେ ସଙ୍କେତ ଦେବାରୁ ତାଙ୍କୁ ତଳକୁ ଓହ୍ଲାଇବାକୁ ସାହାଯ୍ୟ କଲେ । କିଛି ସମୟ ପରେ ରାଜା ବି ଆସି ପହଞ୍ଚିଲେ । ସେତେବେଳକୁ ପ୍ରହରାଜ ମହାଶୟଙ୍କର ବାକ୍ ଶକ୍ତି ନଥିଲା । ଏହି ଘଟଣାରେ ଯେଉଁ ଚାକରମାନେ ତାଙ୍କୁ ଛାଡ଼ି ଚାଲି ଯାଇଥିଲେ ସେମାନଙ୍କର ଏପରି ଗୁରୁତର ଅପରାଧ ଲାଗି କିଭଳି ଦଣ୍ଡ ଦିଆଯିବ ରାଜା ପଚାରିବାରେ ପ୍ରହରାଜ ମହାଶୟ ସେମାନଙ୍କୁ କ୍ଷମାଦେବା ନିମନ୍ତେ କହିଥିଲେ । ଏହି ଅସାଧୁ ପ୍ରହସନର ନାୟକ ଯେ ସ୍ୱୟଂ ରାଜା ଏବଂ ଭୃତ୍ୟମାନେ ନିମିତ୍ତ ମାତ୍ର ଥିଲେ ବୋଲି ପ୍ରହରାଜ ମହାଶୟ ବେଶ୍ ବୁଝିପାରିଥିଲେ । ପ୍ରହରାଜ ମହାଶୟ ଥିଲେ ଆଜି ହୁଏତ ତାଙ୍କର କପିଳାସ ଦିଅଁ ଦର୍ଶନ କଥା ନିର୍ଭୟରେ କହିପାରୁଥାନ୍ତେ । ସେଦିନ ଏହି ଘଟଣାବେଳେ ଉପସ୍ଥିତ ଥିବା କର୍ମଚାରୀମାନଙ୍କ ମଧ୍ୟରେ ଆମ୍ଭ ଗ୍ରାମର ଦୁଇଜଣ ଥିଲେ ।

ଏହିମାନଙ୍କ ଠାରୁ ଶୁଣିବାକୁ ମିଳିଥିଲା ଯେ 'ଭାଷାକୋଷ' ମୁଦ୍ରଣ ସାହାଯ୍ୟ ସ୍ୱରୂପ ପ୍ରହରାଜ ମହାଶୟଙ୍କୁ ଦିଆଯାଇଥିବା ଅର୍ଥ, ରାଜାଙ୍କ ଇଙ୍ଗିତରେ ତାଙ୍କର କେତେକ ଛୋଟ ଚାକର ତାଙ୍କୁ ଷ୍ଟେସନକୁ ଛାଡ଼ିଯିବାବେଳେ (ସେତେବେଳେ ରେଳ ବ୍ୟତୀତ କଟକ ଯିବା ଆସିବାର ସାଧାରଣଙ୍କ ନିମନ୍ତେ ଅନ୍ୟ କିଛି ବ୍ୟବସ୍ଥା ନଥିଲା) ଅଜା ମିଠେଇ

ଖିଆ ଦିଅନ୍ତୁ ବୋଲି କହି ସେ ରାଜାଙ୍କ ଠାରୁ ପାଇଥିବା ସମସ୍ତ ଅର୍ଥ ଛଡ଼ାଇ ନେଇ ରାଜାଙ୍କୁ ପୁଣି ଆଣି ଦେଇଥିଲେ।

କୌଣସି ନା କୌଣସି କାରଣରୁ ରାଜା ପ୍ରହରାଜଙ୍କୁ ଅଜା ବୋଲି ସମ୍ବୋଧନ କରୁଥିବାରୁ ତାଙ୍କର ଚାକରମାନେ ମଧ୍ୟ ତାଙ୍କୁ ଅନୁରୂପ ସମ୍ବୋଧନ କରିବାର ଶୁଣାଯାଉଥିଲା।

"ସ୍ୱପ୍ନରେ ରାଜଯୋଗ" ନାମକ ପ୍ରହରାଜଙ୍କ ଲେଖାରେ ସେ ପରୋକ୍ଷ ଭାବେ ଢେଙ୍କାନାଳ ରାଜ୍ୟର ଅତ୍ୟାଚାର କଥା ବର୍ଣ୍ଣନା କରିଥିଲେ। ତାଙ୍କର ଏ ଲେଖା ସେ ସମୟରେ ଚହଳ ପକାଇଥିଲା।

**ରକ୍ତ ତୀର୍ଥ ଯତନ ନଗର :**

କେବଳ ଓଡ଼ିଶାରେ ନୁହେଁ ସମଗ୍ର ଭାରତର ପୂର୍ବତନ ଗଡ଼ଜାତ ଗୁଡ଼ିକରେ ରାଜା ରାଜୁଡ଼ାଙ୍କ ଦ୍ୱାରା ଯେଉଁ ନିର୍ମମ ଅତ୍ୟାଚାର ହୋଇଥିଲା ଢେଙ୍କାନାଳର ଯତନ ନଗର ତା'ର ଅନ୍ୟତମ ମୂକସାକ୍ଷୀ। ତାଳଚେର ଟ୍ରେନରେ କଟକ ଆଡୁ ତାଳଚେର ଯିବା ସମୟରେ ଢେଙ୍କାନାଳ ଷ୍ଟେସନର ଅଳ୍ପ ପୂର୍ବରୁ ରେଳଲାଇନ୍‌ର ଦକ୍ଷିଣକୁ ଶିମିଳିଆ ଗାଁ ପାହାଡ଼ ଉପରେ ଏହି ବିଶାଳ ପ୍ରାସାଦ ଯାତ୍ରୀର ଦୃଷ୍ଟି ଆକର୍ଷଣ କରିଥାଏ। ଏହି ପ୍ରାସାଦ ନିର୍ମାଣ ସମୟରେ ପ୍ରଜାବର୍ଗ, ହାତୀ, ଘୋଡ଼ା ରାଜକର୍ମଚାରୀମାନଙ୍କ ଉପରେ ଏପରି



ରକ୍ତତୀର୍ଥ 'ଯତନ ନଗର'

ନିର୍ମମ ଅତ୍ୟାଚାର ହୋଇଥିଲା ଯେ, ଏହାକୁ ରକ୍ତ ତୀର୍ଥ ଯତନ ନଗର କହିଲେ ଅତ୍ୟୁକ୍ତି ହେବନାହିଁ। ଏହାର ନିର୍ମାଣ ସମ୍ପର୍କରେ ଅନେକ କଥା ଶୁଣାଯାଏ।

ଢେଙ୍କାନାଳ ରାଜାଙ୍କର ପାଞ୍ଚ ଭାଇ। ସେମାନଙ୍କର ଚତୁର୍ଥ ସାନ ଭାଇ ଅମରେନ୍ଦ୍ର କଟକର ଡମପଡ଼ା ରାଜ୍ୟକୁ ପୋଷ୍ୟପୁତ୍ର ହୋଇ ଯାଇଥିଲେ। ବାକି ଯେଉଁ ଭାଇମାନେ ରହିଲେ ସେମାନଙ୍କର ଭବିଷ୍ୟତ ନେଇ ରାଜାଙ୍କୁ ଚିନ୍ତା କରିବାକୁ ପଡ଼ିଥିଲା। ବଡ଼ ହେଲେ ସେମାନେ ତ ଆଉ ରାଜନଅରରେ ରହିପାରିବେନାହିଁ, ତେଣୁ ସ୍ୱତନ୍ତ୍ର ନଅର ତୋଳାଇବା ଓ ସେ ବାବଦକୁ ବିସ୍ତାର ଆୟ କିପରି କରାଯାଇପାରିବ, ସେ ନେଇ ସୁପରିକଳ୍ପନା ହୋଇଥିବାର ଶୁଣାଯାଇଥିଲା।

ବଗର ଥଣ୍ଟ ବଢ଼ିଲେ ମାଛ ମାନଙ୍କର ବିପତ୍ତି ବଢ଼ିଲା ପରି ଢେଙ୍କାନାଳ ପ୍ରଜାଙ୍କର ବଡ଼ ଧରଣର ବିପତ୍ତିର ପୂର୍ବାଭାଷ ମିଳିଲା। ଶିମିଳିଆ ଜଙ୍ଗଲ କଟାଯାଇ ପାହାଡ଼ର ଚତୁଃପାର୍ଶ୍ୱରେ ସୀମା ଖୁଣ୍ଟି ପୋତାଯାଇ ଶିମିଳିଆ ଗ୍ରାମ ନିକଟରେ ଗୋଟିଏ ଅସ୍ଥାୟୀ କାଠ ଫାଟକ ନିର୍ମାଣ କରାଯାଇ ତା' ଉପରେ ଯତନ ନଗର ନାମ ଫଳକ ଝୁଲାଇ ଦିଆଗଲା। ଏହି ପ୍ରସ୍ତାବିତ ନଗର ପଟ୍ଟାୟତଙ୍କ (ରାଜାଙ୍କ ଦ୍ୱିତୀୟ ଭାଇ)ପାଇଁ ଉଦ୍ଦିଷ୍ଟ ଥିଲା। ସେତେବେଳେ ପଟ୍ଟାୟତ ରାଜ୍ୟର ଦେୱାନ ଭାବରେ ଶାସନ ଦାୟିତ୍ୱରେ ଥିଲେ। ସେ ଦୁଇ ଭାଇଙ୍କ (ରାଜା ଓ ପଟ୍ଟାୟତ)ଭାତୃଭାବ ଅତି ବିଚିତ୍ର। ପଟ୍ଟାୟତ ଅତି ଚତୁର ଥିଲେ ବୋଲି ଲୋକେ ବିଶ୍ୱାସ କରୁଥିଲେ। ତତ୍କାଳୀନ କ୍ଷମତାର ସୁଯୋଗ ନେଇ ରାଜାଙ୍କ ନଅରଠାରୁ ଯତନ ନଗର ଯେପରି ଉତ୍କୃଷ୍ଟ ହୁଏ ତାହାକୁ ଦୃଷ୍ଟିରେ ରଖି ସବୁ ପ୍ରକାର ପଦକ୍ଷେପ ନିଆଯାଇଥିଲା। ଅନ୍ୟାନ୍ୟ ରାଜା ରାଜୁଡ଼ାଙ୍କ ନିକଟରେ ଆପଣାର ବଡ଼ପଣିଆ ଦେଖାଇବା ଏହି ନଅର ତୋଳାର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା।

ବର୍ଷ ବର୍ଷ ଲାଗି ପାହାଡ଼ ଚାରି ପାଖରେ ଜଙ୍ଗଲ କଟା, ପାହାଡ଼ ଉପରକୁ କଚ୍ଚା ରାସ୍ତା ନିର୍ମାଣ କାର୍ଯ୍ୟ ମଧ୍ୟ ଚାଲିଲା। ଏହି ନଅର ନକ୍ସା କରିବା ଲାଗି ବିଭିନ୍ନ ଆଡୁ ଇଞ୍ଜିନିୟର ଆସି ମୋଟା ଅର୍ଥ ନେଇ ବିଦା ହେଲେ। ଶେଷରେ ସୁଇଜରଲ୍ୟାଣ୍ଡ ନକ୍ସା ଆସିଲା ବୋଲି ଶୁଣିବାକୁ ମିଳିଲା। ବିରାଟ ଅଟ୍ଟାଳିକା ସହିତ ବିରାଟ ପୁଷ୍କରିଣୀ, ରାଜସ୍ଥାନର ସ୍କୁଇରାଲ ଟାଇପ୍ କୂଅ (ପାହାଚରେ ବୁଲି ବୁଲି ତଳକୁ ଓହ୍ଲାଇବା) ଓ ଜମି ଭଙ୍ଗା କାର୍ଯ୍ୟ ମଧ୍ୟ ତା' ସଙ୍ଗେ ଆରମ୍ଭ ହୋଇଗଲା।ଏଇ ପ୍ରାସାଦର ଭିତ୍ତି ପ୍ରସ୍ତର ସ୍ଥାପନ ପୂର୍ବରୁ ସେଠାରେ ନରବଳି ଦିଆଯିବା କଥା ନିକଟବର୍ତ୍ତୀ ଗ୍ରାମ ତଥା ସମଗ୍ର ଢେଙ୍କାନାଳରେ ଚହଳ ପକାଇ ଦେଇଥିଲା। ପ୍ରକୃତରେ ସେଠି ନରବଳି ଦିଆଯାଇଥିଲା କି ନାହିଁ ସେ କଥା ଭଗବାନଙ୍କୁ ଜଣା। ମାତ୍ର ଅନେକ ଦିନ

ପର୍ଯ୍ୟନ୍ତ ଏଇ ନରବଳି ଭୟରେ ଲୋକେ ଏକାକୀ ଅବେଳରେ ସେ ବାଟେ ଯିବାକୁ ଡରୁଥିଲେ ଓ ପାଖ ଗାଁ ଲୋକ ରାତିରେ ପଦାକୁ ବାହାରୁ ନଥିଲେ।

ଅବଶ୍ୟ ଗୋଟିଏ ଦୁଇଟି ନରବଳି ପରିବର୍ତ୍ତେ ଲକ୍ଷ ଲକ୍ଷ ଜନତାର ଲହୁ ଲୁହରେ ଯତନ ନଗର ରଞ୍ଜିତ ହୋଇ ମୁଣ୍ଡଟେକି ଉଠିଥିଲା। ଦ୍ୱିତଳ ପ୍ରାସାଦର ଉପରେ ଦୁଇପଟେ ଟେନିସ୍ ଖେଳ ହେବା ପାଇଁ ବ୍ୟବସ୍ଥା ଅଛି। ସମସ୍ତ ପ୍ରକାର ଆଧୁନିକ ରୁଚି ସମ୍ପନ୍ନ ଗୃହ ନିର୍ମାଣ ଓ ସାଜସଜ୍ଜା ପାଇଁ ମୂଲ୍ୟବାନ କାଠ, ଲୁହା ସରଞ୍ଜାମ ଓ ବିଦେଶୀ କାରିଗର ମଧ୍ୟ ଅଣାଗଲା। ହଜାର ହଜାର ପ୍ରଜା ବର୍ଷ ବର୍ଷ ଧରି ହାତରୁ ଖାଇ ବେଠିରେ ସେଠି ଖଟୁଥିଲେ। ଜବରଦସ୍ତ ଧରି ନେଇ ସେଠାରେ କାମ କରାଉଥିବା କଥା ପ୍ରଚାର ହୋଇଯିବା ପରେ ଲୋକେ ଢେଙ୍କାନାଳ ଟାଉନକୁ ଆସିବାକୁ ଡରୁଥିଲେ।

ପାହାଡ଼ ଉପରକୁ ପଥର ଉଠାଇବା କାର୍ଯ୍ୟ ଶଗଡ଼ ଗାଡ଼ି ଦ୍ୱାରା ସମ୍ଭବ ନହେବାରୁ ହାତୀମାନଙ୍କୁ ସେ କାର୍ଯ୍ୟରେ ଲଗାଗଲା।

ହାତୀମାନେ ପାହାଡ଼ ଉପରକୁ ପଥର ଉଠାଇଲାବେଳେ, ମାଡ଼ ଫଳରେ ଏପରି ବିକଟ ଚିତ୍କାର କରୁଥିଲେ ଯେ ସାରା ଢେଙ୍କାନାଳ ଟାଉନ ଓ ତା'ର ନିକଟବର୍ତ୍ତୀ ଅଞ୍ଚଳ ଥରି ଉଠୁଥିଲା। ଶେଷରେ ହାତୀମାନେ ବି ଥକି ପଡ଼ିଲେ। ଚୂନ ଚକି ପେଷିବା କାର୍ଯ୍ୟରେ ଓଟମାନଙ୍କୁ ବ୍ୟବହାର କରାଯାଉଥିଲା। କାଳେ କାହାକୁ ସେଠାରେ କାର୍ଯ୍ୟ କରାଇବାକୁ ପଡ଼ିବ ସେଥିପାଇଁ ରାଜକର୍ମଚାରୀମାନେ ଆତଙ୍କିତ ଅବସ୍ଥାରେ ରହୁଥିଲେ। ବେଠିଆମାନଙ୍କୁ କାର୍ଯ୍ୟ କରାଇବା ପାଇଁ ନିମ୍ନ ସ୍ତରରେ ଯେଉଁ ଚାକିରିଆମାନେ ନିଯୁକ୍ତ ହୋଇଥିଲେ ସେମାନେ ଉପର ଚାପ ଫଳରେ ବେଠିଆମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ। ସେମାନଙ୍କୁ ନିର୍ମମ ପ୍ରହାର କରୁଥିଲେ। ମାଡ଼ ଓ ଅତିରିକ୍ତ ଖଟଣୀ ହେତୁ ଅନେକ ଲୋକ ଅକର୍ମଣ୍ୟ ହୋଇ ପଡ଼ିଥିଲେ। କେତେକ ପ୍ରଜାଙ୍କୁ ସେମାନଙ୍କ ଆତ୍ମୀୟଙ୍କ ମୃତ୍ୟୁରେ ଶୁଦ୍ଧିକ୍ରିୟା ଇତ୍ୟାଦି କରିବାକୁ ଯିବାକୁ ଛାଡ଼ି ଦିଆଯାଇ ନଥିଲା। କାର୍ଯ୍ୟ ଶୀଘ୍ର ସାରିବା ପାଇଁ ଦିନ ବ୍ୟତୀତ ରାତିରେ ମଧ୍ୟ ପେଟ୍ରୋମାକ୍ସ ଲଗାଯାଇ କାମ ହେଉଥିଲା। ଭାଦ୍ରବ ମାସରେ ବି ସମ୍ବଲପୁରିଆ ଝୁଡ଼ିରେ ମାଟି ମୁଣ୍ଡାଇ ଆଣ୍ଠୁଏ କାଦୁଅରେ ବନ୍ଧ ଉପରକୁ ମାଟି ଉଠାଇବାକୁ ଲୋକଙ୍କୁ ବାଧ୍ୟ କରାଯାଉଥିଲା। ଏହା ଯେ କେତେ କଷ୍ଟକର ତାହା କେବଳ ଅନୁଭବୀ ଲୋକ ଜାଣନ୍ତି। ପ୍ରତି ଦଶହାତରେ ବେତଧାରୀ ପୋଲିସ ବେଠିଆମାନଙ୍କୁ ଜଗି ରହିଥାନ୍ତି। ରାତିରେ କିଏ କିଏ କେତେବେଳେ ଘୁମାଇଁ ପଡ଼ିଲେ ତାଙ୍କ ଉପରେ ଗରମ ପାଣି ପକାଇ ଦିଆଯାଉଥିଲା ଓ ବେତମାଡ଼ ମଧ୍ୟ ହେଉଥିଲା।

ଦାୟିତ୍ୱରେ ଥିବା କର୍ମଚାରୀମାନେ ମଧ ଦାୟିତ୍ୱରୁ ମୁକ୍ତି ପାଇବା ପାଇଁ ତ୍ରାହି ତ୍ରାହି ଡାକ ଛାଡୁଥାନ୍ତି। ଅଧିକ କାମ ପାଇଁ ପଟ୍ଟାୟତ ଧମକ ଦେବାରେ "ଆଜ୍ଞା, ଆମେ ଯେଉଁ ଅତ୍ୟାଚାର ଏଠି କରୁଛୁ ଭବିଷ୍ୟତରେ ଘୋଡ଼ାଜନ୍ମ ପାଇ କଟକରେ ବଗି ଟାଣିବୁ।" ଯେତେହେଲେ ସେମାନେ ମଣିଷ, ସେମାନଙ୍କୁ ଏପରି ଅମାନୁଷିକ ବ୍ୟବହାର କରାଇବା ଉଚିତ ନୁହେଁ ବୋଲି ଜନୈକ କର୍ମଚାରୀ ଦୁଃଖ ନୈରାଶ୍ୟ ଭିତରେ କହି ପକାଇ ଥିବାର ଶୁଣାଯାଇଥିଲା। ଏହିଭଳି କର୍ମଚାରୀମାନେ ପରୋକ୍ଷରେ ପ୍ରତିବାଦ କରିବା ପାଇଁ ଲୋକମାନଙ୍କୁ ଉତ୍ସାହିତ କରିଥିଲେ। କେତେକ କର୍ମଚାରୀ ବେଠିଆମାନଙ୍କୁ ଦୟା ପ୍ରଦର୍ଶନ କରି ଶାସ୍ତି ପାଇଥିଲେ। ସେ ଶାସ୍ତିକୁ ସେମାନେ ଭଗବାନଙ୍କ ଆଶୀର୍ବାଦ ବୋଲି ମନେ କରୁଥିଲେ।

ଲକ୍ଷ ଜନତାର ଆର୍ତ୍ତନାଦ ସାରା ଓଡ଼ିଶାରେ ଚହଳ ପକାଇଥିଲା। ଏ କଥା ପଲିଟିକାଲ୍ ଏଜେଣ୍ଟ ତଥା ମହାତ୍ମାଗାନ୍ଧିଙ୍କ ଦୃଷ୍ଟିକୁ ଅଣାଯାଇଥିଲା। ଏହା ଜଣା ପଡ଼ିବା ପରେ ତୁରନ୍ତ କାର୍ଯ୍ୟ ଶେଷ କରିବା ପାଇଁ ଦ୍ୱିଗୁଣିତ ଉଦ୍ୟମ ହୋଇଥିଲା। ସେହି ଅନୁପାତରେ ପ୍ରଜାଙ୍କର ଦୁଃଖ ଓ ନିର୍ଯ୍ୟାତନା ମଧ ବୃଦ୍ଧି ପାଇଥିଲା। କେନ୍ଦ୍ରରୁ ଗୁଇନ୍ଦାମାନେ ବିଭିନ୍ନ ବେଶରେ କୌଶଳକ୍ରମେ ଆସି ସେପରି ବେଶରେ ଫଟୋ ଉଠାଇ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କୁ ଦେଇଥିଲେ ବୋଲି ପରେ ଶୁଣିବାକୁ ମିଳିଥିଲା।

ପଟ୍ଟାୟତଙ୍କ ସ୍ତ୍ରୀଙ୍କ ନାମ "ଯତ୍ନ" କୁମାରୀ ଥିବା ହେତୁ ତାଙ୍କ ନାମାନୁସାରେ ଏହାକୁ ଯତନ ନଗର ନାମରେ ନାମିତ କରାଯାଇଥିଲା। କାମ ଚାଲିଥିବା ଅବସ୍ଥାରେ କେହି ବିଦ୍ରୋହୀ ଥରେ ରାତିରେ ଫାଟକରେ ଝୁଲୁଥିବା ପଟାରେ ଚକ ଖଡ଼ିରେ ଯ-ରେ-ଆକାର ଓ ନ-ରେ ଆକାର ଲେଖି ଦେଇ "ଯାତନା ନଗର" କରିଦେଇ ଥିବାର ଦେଖାଯିବା ପରେ ସେଠି ଦାୟିତ୍ୱରେ ଥିବା କେତେକ କର୍ମଚାରୀ ଓ ଶିମିଳିଆ ଗ୍ରାମର କେତେକ ନିରୀହ ଲୋକଙ୍କ ଉପରେ ଘୋର ଅତ୍ୟାଚାର କରାଯାଇଥିଲା। ସେତେବେଳେ କିଛିଦିନ ପାଇଁ ଏହାର ସୀମା ଭିତରକୁ ଯିବା ସାଧାରଣଙ୍କୁ ମନା କରି ଦିଆଯାଇଥିଲା। ସ୍ୱଳ୍ପ ସମୟ ପାଇଁ ପଟ୍ଟାୟତ ସେଠି ରହିପାରିଥିଲେ, ମାତ୍ର ପାହାଡ଼ ଉପରେ ଥିବା ଏହି ଯତନ ନଗରକୁ ଯିବା ଆସିବା କଷ୍ଟକର ହେବାରୁ ଓ ପାଣି ଅଭାବ ହେତୁ ସେ ସେଠି ରହି ପାରିନଥିଲେ। ସେଠାରେ ଖୋଦିତ ହୋଇଥିବା ସ୍ମୃତି ଫଳକ ଏବେ ଆଉ ଦେଖାଯାଉନାହିଁ।

ସେଥିରେ ଲେଖାଥିଲା :-

**JATAN VILLA**

Foundation stone layed on 10.3.32, Completed in the year 1936. Plan designed by the overseer Mr. R.B. Behera. Supervisor Babu J. Kesar Singh, Head Mistry-Panchu Behera.

ପଟ୍ଟାୟତ ଓ ରାଜାଙ୍କ ମତଭେଦ ଏବଂ ରାଜନୈତିକ ବିଭାଗର ଚାପ ହେତୁ ହଠାତ୍ ଦିନେ ରାତି ଅଧରେ ଯତନ ନଗର କାର୍ଯ୍ୟରେ ନିଯୁକ୍ତି ଥିବା ବେଠିଆମାନଙ୍କୁ ମୁକ୍ତ କରି ଦିଆଗଲା । ସେତେବେଳେ ବେଠିଆମାନେ ପାହାଡ଼ ଉପରେ ଭଗବାନଙ୍କ ଉଦ୍ଦେଶ୍ୟରେ ଯେଉଁ ହରିବୋଲ ଧ୍ୱନି ଦେଇଥିଲେ ତାହା ଢେଙ୍କାନାଳ ଟାଉନ ତଥା ନିକଟବର୍ତ୍ତୀ ଗ୍ରାମ ମାନଙ୍କୁ ଶୁଣାଯାଇଥିଲା । ଯତନ ନଗର ଆଲୋକ ଲିଭିବାର ଢେଙ୍କାନାଳ ଟାଉନ ତଥା ନିକଟବର୍ତ୍ତୀ ଗ୍ରାମମାନଙ୍କୁ ଶୁଣାଯାଇଥିଲା । ଯତନ ନଗରର ଆଲୋକ ଲିଭିବାର ଢେଙ୍କାନାଳ ଟାଉନ୍ ଲୋକେ ଦେଖିଥିଲେ । ଲୋକମାନେ ସେଠାରୁ ଫେରି ଆସିବା ବେଳେ ତାଙ୍କ ଉପରେ ଯେଉଁ କର୍ମଚାରୀମାନେ ଅତ୍ୟାଚାର କରିଥିଲେ ସେମାନଙ୍କୁ ଅଶ୍ଳୀଳ ଭାଷାରେ ଗାଳି ଗୁଲଜ କରି ତଥା ସେ କୋଠାରେ ମଣିଷ ନରହି ବାଘ, ସାପ, ବିଲୁଆ କୁକୁର ରୁହନ୍ତୁ ବୋଲି ଅଭିଶାପ ଦେଇଥିବାର ଶୁଣାଯାଇଥିଲା ।

ଏତିକିରେ ଯତନ ନଗର ଓ ତାର ନିକଟବର୍ତ୍ତୀ ବନ୍ଧ ନିର୍ମାଣ କାର୍ଯ୍ୟ ବନ୍ଦ ରହିଥିଲା । ଏହି ଉଦ୍ଦେଶ୍ୟରେ ଯେଉଁ ଅଜସ୍ର ଟଙ୍କା ଜୋରିମାନା ଆକାରରେ ଲୋକମାନଙ୍କ ଠାରୁ ଆଦାୟ ହେଉଥିଲା, ତାହା ମଧ୍ୟ ବନ୍ଦ ହୋଇଥିଲା । ବେଠି କାର୍ଯ୍ୟରୁ ଲୋକଙ୍କୁ ମୁକ୍ତି ଦେବା ପାଇଁ ଦାୟିତ୍ୱରେ ଥିବା କର୍ମଚାରୀମାନେ, କେଉଁ ପ୍ରଜାଙ୍କ ଠାରୁ କେତେ ଆଦାୟ କରିଥିଲେ ତାର କୌଣସି ହିସାବ ନଥିଲା । ଜୋରିମାନା ଟଙ୍କା ଆଦାୟ ଓ ବଣ୍ଟନ ନେଇ ରାଜା ଓ ପଟ୍ଟାୟତଙ୍କ ମଧ୍ୟରେ କୁଆଡ଼େ ଶେଷରେ ମତାନ୍ତର ହୋଇଥିବାର ଶୁଣାଯାଇଥିଲା । ଯତନ ନଗର କାର୍ଯ୍ୟ ବନ୍ଦ ହେବା ସଙ୍ଗେ ଢେଙ୍କାନାଳର ନିର୍ମମ ବେଠି ଅତ୍ୟାଚାରର ଅବସାନ ହେଲା ।

ସମୟର ଚକ ଘୂରିଗଲା । ଜନତାର ଅଭିଶାପ ଫଳବତୀ ହେଲା । ଅନେଶତ କୋଠରୀ ବିଶିଷ୍ଟ ଏ ବିରାଟ ପ୍ରାସାଦ ଆଜି ଅବହେଳିତ ଓ ପରିତ୍ୟକ୍ତ ଅବସ୍ଥାରେ ରହିଛି । ସେଠାରେ ଉଇହୁଙ୍କା, ଗୁଳ୍ମରାଜି ଓ ବେଳେବେଳେ ସାପ, ବାଘ ଓ ବିଲୁଆମାନଙ୍କୁ ଦେଖିବାକୁ ମିଳୁଛି । ଢେଙ୍କାନାଳକୁ ଆସୁଥିବା ବ୍ୟକ୍ତିମାନେ ଟିକେ କଷ୍ଟ ସ୍ୱୀକାର କରି ଏହି କୋଠା ଦେଖିଯିବା ପାଇଁ ଅନୁରୋଧ ।

ସ୍ଥାନୀୟ ଲୋକେ ତଥା ବାହାରର ପରିଦର୍ଶକ ସେ ପ୍ରାସାଦକୁ ଦେଖିବାକୁ ଯାଇ କାନ୍ଥ ବାଡ଼ରେ ରାଜଶାସନ ବିରୁଦ୍ଧରେ ବହୁ ଅଶ୍ଲୀଳ ଭାଷାରେ ସେମାନଙ୍କର ପ୍ରତିକ୍ରିୟା ଲେଖିଥିବାର ଦେଖିବାକୁ ମିଳେ ।

ରାଜଶାସନର କଳଙ୍କମୟ ଅଧ୍ୟାୟର ମୂକସାକ୍ଷୀ ରୂପେ ଏ କୁଖ୍ୟାତ ବିରାଟ ଯତନ ନଗର ଭବିଷ୍ୟତ ବଂଶଧରଙ୍କ ନିମନ୍ତେ କେତେଦିନ ପର୍ଯ୍ୟନ୍ତ ଉଭା ହୋଇ ରହିବ ତାହା ହିଁ ଦେଖିବାର କଥା ।

**ସ୍ୱପ୍ନରେ ରାଜଯୋଗ (ଗୋପାଳଚନ୍ଦ୍ର ପ୍ରହରାଜ) :**

ମୁଁ ଏକ ରାଇଜରେ ରଜା ହୋଇଛି । ଗୋଟାଏ ବଡ଼ ଦୟାନ୍ତ ଉଆସରେ ଗୋଟାଏ ଖୁବ୍ ବଡ଼ ମେଲା ଘରେ ଚଉକି, ଟେବୁଲ, କାଉଚ, ସଫା ସଜା ହୋଇଛି, କାନ୍ଥଯାକ ଦାମୀ ତସବୀର ସବୁ ଟଙ୍ଗା ହୋଇଛି, ମୋ ପଛରେ ଜରେସ୍ ପିନ୍ଧା ବନ୍ଧୁକଧରା ସିପାହୀ ଖଡ଼ା ପ୍ରହରା ଦେଉଛନ୍ତି । ସେ ମେଲାରେ ମୋର ଦରବାର ଲାଗିଛି । କଚେରୀ ଜମିଛି । ମୋ ବାଆଁ ପାଖେ ମେଲାର ଗୋଟାଏ କଣାରେ ବାଉଁଶ ଜାଲିରେ ଘେରା ପରଦାଟଙ୍ଗା ଜାଗାରେ ମୋ ରାଣୀ ତାଙ୍କ ଘର ଝିଅମାନଙ୍କ ଦ୍ୱାରା ପରିବେଷ୍ଟିତା ହୋଇ ବିଜେ କରିଛନ୍ତି । ମୋ ଚଉକି ପଛପଟରୁ ରାଣୀଙ୍କ ଅଲଗଡ଼ା ପର୍ଯ୍ୟନ୍ତ ଟେରାବାଡ଼ ପଡ଼ିଛି । କେତେ ବେଳେ ରାଣୀ ସାହେବା ମୋ ବିଚାରରେ ସନ୍ତୁଷ୍ଟ ହୋଇ ମୋ ପଛ ଆଡ଼କୁ ସେହି ଟେରାବାଡ଼ ବାଟେ ଆସି ମୋ କାନରେ ସାବାସ୍ ସାବାସ୍ କହୁଛନ୍ତି ଓ ଯେଉଁ ବିଚାରରେ ତାଙ୍କର ମନ ମାନୁ ନାହିଁ ସେ ବିଚାରରେ ନିଜର ଅନନୁମୋଦକ 'ଛି ! ଛି !' ମୋ କାନରେ ଫୋଡ଼ି ଦେଉଅଛନ୍ତି ଓ ଯେଉଁ ଆସାମୀ ଉପରେ ଦଣ୍ଡର ମାତ୍ରା ଯଥେଷ୍ଟ ହେଉନାହିଁ ତାକୁ ଆହୁରି କଡ଼ା ଦଣ୍ଡ ଦେବା ପାଇଁ ସୂଚେଇ ଦେଉଅଛନ୍ତି ।

ମୋ ମିସଲର ଡାହାଣ ପାଖେ ସାନଭାଇ ମନ୍ତ୍ରୀ ସାହେବ ବସିଛନ୍ତି । ସବୁବେଳେ ତାଙ୍କ ମୁହଁରେ ଗୋଟାଏ ପାଳବିଣ୍ଡା ମାରିଛି । ସେ ପାଳବିଣ୍ଡାରେ ଏପରି ସ୍ପ୍ରିଙ୍ଗକଳ ଲାଗିଛି ଓ ଉକ୍ତ ସ୍ପ୍ରିଙ୍ଗ୍‌ର ଡୋରି ମୋ ହାତରେ ଏପରି ଅଛି ଯେ, ମୋର କୌଣସି ବିଷୟରେ ମନ୍ତ୍ରୀଙ୍କ ଠାରୁ ଉପଦେଶ ଲୋଡ଼ା ହେଲେ ମୁଁ ଠାର ଠୁରରେ ତାଙ୍କୁ ପ୍ରଶ୍ନ କରୁଛି, ଡୋରିକୁ ଟାଣି ଦେଉଛି । ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କ ମୁହଁରୁ ପାଳ ଠିପିଟା ବାହାରି ପଡୁଛି, ସେ ଝଟକିନ୍ ପଦେ କଥା କହିଦେବା ମାତ୍ରକେ ସ୍ପ୍ରିଙ୍ଗ୍ ବଳରେ ପୁଣି ସେ ପାଳଚୁଣ୍ଡାଟା ତାଙ୍କ ମୁହଁରେ ପଶି ଯାଉଛି । ମନ୍ତ୍ରୀଙ୍କ ପେଟରେ କୋଡ଼ମେଇଏଁ ବୁଦ୍ଧି ଅଛି, ସବୁବେଳେ ତାଙ୍କ ମୁହଁଟା ନିଶାଦଳଭରା ବୋତଲ (Smelling salt bottle)ଭଳି ଅବୁଜା ନରହିଲେ ତାଙ୍କ

ପେଟ ଭିତରର ବୁଦ୍ଧିଯାକ କର୍ପୂର ଭଳି ଉଡ଼ିଯିବ, ଏଥିପାଇଁ ଏ ସ୍ପ୍ରିଙ୍ଗ୍ ଦିଆ ପାଳଚୁଣ୍ଡା ବିଲାତରୁ ବରାଦ ଦିଆ ହୋଇ ତିଆରି ହୋଇ ଆସିଛି। ମୋର ଆଉ ଏକ ଭାଇ ମୋ ମିସଲ ଓ ମନ୍ତ୍ରୀଙ୍କ ମିସଲ ମଝିରେ ଫୁଲଡ୍ରେସ୍‌ପିନ୍ଧା କଟୁଆଳ (ପୁଲିସ୍ ସାହେବ) ରୂପେ ଆଟେନ୍‌ସନ ହୋଇ ଦୁଇ ପାଦକୁ ସୂକ୍ଷ୍ମକୋଣ କରି ଠିଆ ହୋଇଛନ୍ତି ଓ ସବୁବେଳେ ହାତରେ ଗୋଟିଏ ଦୂର୍ବିନ ଲଗାଇ ମୋ ଆଖିକୁ ଚାହିଁ ରହିଛନ୍ତି, ମୋ ଆଖିର ଇସାରା ମାତ୍ରେ ସେ ଗୋଟାକୁ ଗୋଟା ଆସାମୀ ଆଣି ମୋ ସମାନାରେ ପଛବୁହା ବନ୍ଧା କରି ମନ୍ତ୍ରୀଦ୍ୱୟ ପରିବୃତ୍ତ ପାର୍ଶ୍ୱ କରି ଠିଆ କରାଇ ଦେଉଛନ୍ତି। ମୋର ଆଉ ଗୋଟିଏ ଭାଇ ଓକିଲ ବେଶ (ଚୋଗା ଚପକନ ଓ ପଗଡ଼ି) ପିନ୍ଧି ମୋ ମିସଲ ଆଗରେ ଗୋଟାଏ ମାଞ୍ଚିଆରେ ବସି ଅଛନ୍ତି। ମୋର ଆଉ ଏକ ଭାଇ ତୋଡ଼ା ଗୁଡ଼ିଏ ପାଖରେ ଥୋଇ ମୋ ସାମନାରେ ମେଲାର ଗୋଟିଏ କୋଣରେ ଗୋଟିଏ ଖଟ ଉପରେ ବସିଛନ୍ତି। ଆସାମୀଙ୍କୁ ମୁଁ ଅର୍ଥଦଣ୍ଡରେ ଦଣ୍ଡିତ କରିବା ମାତ୍ରେ ଆସାମୀମାନେ ମୋ ସାହୁକାର-ଭାଇଙ୍କ ପାଖକୁ ଯାଉଅଛନ୍ତି ଓ ସେଠାରେ ସାହୁକାରଙ୍କୁ ମାସିକ ଶତକଡ଼ା ୭୫ ଟଙ୍କା ସୁଧରେ ଗୋଜା ଲେଖିଦେବା ମାତ୍ରେ ସାହୁକାର ଭାଇ ଟଙ୍କା ଗଣି ଦେଉଛନ୍ତି ଓ ଟଙ୍କାତକ ଖଡ଼େଦମ ଆସି ମୋ ଟେବୁଲ ତଳେ ଥିବା ସିନ୍ଦୁକରେ ଭରୋଟ ହେଉଅଛି। ଏଠାରେ କହି ରଖିବା ଉଚିତ ଯେ, ମୋ ରାଜ୍ୟର ଜେଲ୍‌ଖାନା ନାହିଁ, ଜେଲ୍‌ଖାନାରେ ଆସାମୀଙ୍କୁ ପୋଷିବା ମୋ ଧାତୁରେ ଯାଏ ନାହିଁ। ଗୁରୁତର ଅପରାଧୀ ପୁରୁଷ ଆସାମୀଙ୍କ ପ୍ରତି ମଇଁଷି ବା ବଳଦଙ୍କ ପରିବର୍ତ୍ତେ ହଳ ଓ ଶଗଡ଼ବୁହା ଦଣ୍ଡ, ଘୋଡ଼ାଙ୍କ ପରିବର୍ତ୍ତେ ବଗି ଟଣା ଦଣ୍ଡ, ମୃଦଙ୍ଗ ଘରେ ମୋ ପୋଷା ପାର୍ଶ୍ୱଚରଙ୍କ କରତାଡ଼ନ ସଙ୍କୀର୍ତ୍ତନ ରସାସ୍ୱାଦନ ଦଣ୍ଡ, ଲଙ୍କା ମରିଚ ଧୂଆଁ ଦଣ୍ଡ, ଘୋଡ଼ା ଲାଞ୍ଜରେ ବନ୍ଧା ହୋଇ ଘୋଷରା ହେବା ଦଣ୍ଡ, ଡାହାଳ କୁକୁରଙ୍କ ଦ୍ୱାରା ଶିକାର ହେବା ଦଣ୍ଡ, ଏହିପରି କେତେ ଗୁଡ଼ିଏ ଦଣ୍ଡ-ବିଧାନ ଓ ଏହି ଶ୍ରେଣୀର ସ୍ତ୍ରୀଲୋକ ଅପରାଧୀମାନଙ୍କ ପ୍ରତି ସ୍ୱାମୀଙ୍କ ଉପସ୍ଥିତିରେ ମୋ ପୋଷା କୁକୁରଙ୍କ ଦ୍ୱାରା ନିର୍ଯ୍ୟାତନା ବା ଧର୍ଷଣ ଦଣ୍ଡ ବିଧାନ ଅଛି।

ଯେଉଁମାନେ ମୋର ବା ଆମ ଉଆସର ବା ମୋ ମନ୍ତ୍ରୀଭାଇ, କଟୁଆଳ ଭାଇ, ସାଧବ ଭାଇ, ଓକିଲ ଭାଇଙ୍କ ନାମରେ – ମୁହଁରେ ହେଉ, ମୁଖଭଙ୍ଗୀରେ ହେଉ, ହାତରେ ହେଉ, ଗୋଡ଼ରେ ହେଉ, ମନରେ ହେଉ, ସ୍ୱପ୍ନରେ ହେଉ ରାଜ୍ୟରେ କଳଙ୍କ ରଟନା କରିବେ ବା ରଟନା କରିବାର ଚୁଗୁଲି ଆମ ପଞ୍ଚ ପାଣ୍ଡବ ଭାଇଙ୍କ କର୍ଣ୍ଣଗୋଚର, ମନୋଗୋଚର, ସ୍ୱପ୍ନଗୋଚର ବା ଗୃହଗୋଚର ହେବ ସେମାନଙ୍କୁ ଗୁରୁତର ଅପରାଧୀ

ବୋଲି ଧରାଯାଏ। ଅନ୍ୟ ଅପରାଧୀମାନଙ୍କୁ ଅର୍ଥ ଦଣ୍ଡରେ ଖଲାସ ଦିଆଯାଏ। ଅର୍ଥଦଣ୍ଡ ତ ସାଧବଭାଇଙ୍କ ତହିବିଲରୁ ନଗଦ ମୋ ମିସଲରେ ଦିଆଯାଏ ଓ ସେ ମାସେ ମିଆଦରେ ଟଙ୍କା ପାଏ, ସୁଧ ନ ପାଇଲେ ଖାତକର ଯାନାସ୍ଥାନ, ଜମିବାଡ଼ି, ଗୋରୁ ଜୋରୁ ଦଖଲ ନେଇ ଆଦାୟ କରିବା ପାଇଁ ସାର୍ଟିଫିକେଟ୍ କ୍ଷମତା ରାଜ୍ୟ ସରକାରରୁ ପାଇ ଅଛନ୍ତି। ମିସଲରେ କେବଳ ଏହି ୫ଜଣଙ୍କ ପାଇଁ ପୂର୍ବୋକ୍ତ ରୂପେ ଆସନ ନିର୍ଦ୍ଦିଷ୍ଟ ଅଛି (ଯଥା - ଖୋଦ ମୁଁ, ରାଣୀସାହେବା, ମନ୍ତ୍ରୀ ସାହେବ, ସାଧବସାହେବ, ଓକିଲ ସାହେବ) ବାକି ସମସ୍ତେ ରାଜଦରବାରରେ ଠିଆ ହୁଅନ୍ତି।

ପ୍ରଥମ ମକଦ୍ଦମା ପଡ଼ିଲା, ଜଣେ ବ୍ରାହ୍ମଣର। ସେ ନିପଟୀ ଗାଉଁଲି ଥିବାରୁ ରାଜଦରବାରର ଆଦବ କାଇଦା ତାକୁ ଜଣା ନଥିଲା ଓ ସେ କଳରେ ଅର୍ଦ୍ଧଚର୍ବିତ ପାନ ଜାକି ଆସି ଠିଆ ହେଲା। ତା' ବିପକ୍ଷରେ ପୂର୍ବରୁ ଏହି ଅଭିଯୋଗ ହୋଇଥିଲା ଯେ, ରାଜସରକାରରୁ ଲୁଣ ବିକିବାକୁ ଯେଉଁ ବ୍ୟକ୍ତିଙ୍କୁ ଏକଚାଟିଆ ଅଧିକାର (ଲାଇସେନ୍ସ) ଦିଆଯାଇଛି ତା'ଠାରୁ ଛାଡ଼ ଚିଠି ନ ନେଇ ଓ ତାକୁ ସଲାମୀ ନ ଦେଇ ବ୍ରାହ୍ମଣ ଗୋସେଇଁ ଏକାଥରକେ ସେରେ ଲୁଣ କିଣିନେଲା ଓ ଦିନେ ତା' ପଡ଼ିଶା ଘରେ ଲୁଣ ନଥିବାରୁ ତାକୁ ଗିନାଏ ଲୁଣ ଉଧାର ଦେଇଥିଲା। ଯେବେ ଏପରି ସମସ୍ତେ ଅଘରଦ୍ୱାରୀ ସାହି ପଡ଼ିଶାଙ୍କୁ ଲୁଣ ଦେବେ, ତାହା ହେଲେ ଲୁଣ ଲାଇସେନ୍ସବାଲା ରାଜଦରବାରକୁ ଦେଇଥିବା ବାର୍ଷିକ ସଲାମି ଚାରି ହଜାର ଟଙ୍କା କାହୁଁ ଉଠାଇବ ? ଏଥିପାଇଁ ଲାଇସେନ୍ସବାଲା ପ୍ରତି ଗ୍ରାମରେ ଗୁଇନ୍ଦା ରଖିଛି। ସେମାନେ ଆସି ସବୁ ଖବର ତାକୁ ଦେଉଛନ୍ତି। ଅପରାଧୀଠାରୁ ଯାହା ଅର୍ଥଦଣ୍ଡ ଆଦାୟ ହୁଏ ସେଥିରୁ ଟଙ୍କାକେ ଅଣାଏ ଲାଇସେନ୍ସବାଲା ନିଏ, ଦୁଇ ଅଣା ରାଣୀ ସାହେବାଙ୍କର, ଅଣାଏ ମନ୍ତ୍ରୀ ସାହେବଙ୍କର, ଅଣାଏ ସାଧବ ସାହେବଙ୍କର, ଅଣାଏ ମନ୍ତ୍ରିଆଣୀ ସାହେବାଙ୍କର, ଅଣାଏ ପୁଲିସ୍ ପେସ୍କାରଙ୍କର, ବାକି ଆଠଅଣା ରାଜ ତେରଜୁଡ଼ି, ତହବିଲର। ଏହିପରି ମୋ ରାଜ୍ୟରେ ଧାନ, ଚାଉଳ, ବିରି, କୋଳଥ, ବାସନା ଓ ଗନ୍ଧିଆ ତେଲ, ପାନ, ଗୁଆ, ଗୁଣ୍ଡି, ଖଇର, ଭିନ୍ନ ଭିନ୍ନ ପନିପରିବା, ଜାଳେଣି କାଠ, ଚୂନ, ଖଲିପତ୍ର, ଲୁଗା, ସବୁ ବ୍ୟବହାର୍ଯ୍ୟ ବସ୍ତୁର ଏକଚାଟିଆ ଲାଇସେନ୍ସ ଭଙ୍ଗ ଜନିତ ଅପରାଧରୁ ମଧ୍ୟ ବହୁ ଲକ୍ଷ ଟଙ୍କା ଆମଦାନୀ ହୁଏ।

ଏସବୁ ଲାଇସେନ୍ସ ମୁହେଁ ମୁହେଁ ଦିଆନିଆ ହୁଏ ଓ ଲାଇସେନ୍ସ ଭଙ୍ଗ ସମ୍ବନ୍ଧୀୟ ମୋକଦ୍ଦମାମାନ ମଧ୍ୟ ମୁହେଁ ଫଏସଲା ଓ ଅର୍ଥଦଣ୍ଡ ଆଦାୟ ହୁଏ। ପ୍ରତିଦିନ କଚେରୀ ଭାଙ୍ଗିଲା ବେଳକୁ ଭାଗୁଆଳୀଙ୍କ ଭାଗ ନଗଦ ରୋକ୍‌ଠାକ୍ ବଣ୍ଟା ହୋଇ ଭାଗ ଛିଣ୍ଡି ଯାଏ।

ଏ ବ୍ରାହ୍ମଣର ଲୁଣ ଲାଇସେନ୍ସ ଭଙ୍ଗ ଅପରାଧ ଯୋଗୁଁ ତାକୁ ଶହେଟଙ୍କା ଜୋରିମାନା ହେଲା ଓ ସେ ସାଧବ-ସାହେବଙ୍କ ଠାରୁ ଆଣି ଛାମୁରେ ଦାଖଲ କରିଦେଲା। ତା'ପରେ ପେଶ୍ ହେଲା ତା' ବିରୋଧରେ ଦ୍ୱିତୀୟ ନମ୍ବର ଅଭିନବ ମକଦ୍ଦମା - ସେ କିଆଁ କଳରେ ପାନ ଢାକି ରାଜ ଦରବାରକୁ ଅଇଲା ? ତାର ପାନ ଖାଇବାରେ ସଉକର ପୁରସ୍କାର ସ୍ୱରୂପ ମୋ ଇସାରା ଓ ରାଣୀସାହେବାଙ୍କ ଆଦେଶ କ୍ରମେ ଘରଝିଅ ଦୁଇଜଣ ଉଆସକୁ ଯାଇ ତେଣୁ ଗୋଟାଏ ରେକାବୀରେ ଛ' ଆଙ୍ଗୁଳ ଲେଖାଏଁ ଲମ୍ବ କାହାଳିଆ ପାନଖିଲ ଦୁଇପୁଞ୍ଜା ଆଣି ମୋ ମିସଲ ଉପରେ ଥୋଇଦେଲେ। ସେ ପାନଖିଲର ଉପକରଣ ଏଠାରେ ପ୍ରକାଶ କରାଗଲା ନାହିଁ, କାରଣ ତାହା ଚୋବାଇବା ବେଳେ ବ୍ରାହ୍ମଣର ମୁହଁ, ପାଟି ଆଖି, ନାକ ସମସ୍ତେ ସେ ଉପକରଣମାନଙ୍କ କରାମତ ପ୍ରକାଶ କରିବେ। ବ୍ରାହ୍ମଣକୁ ପଛବୁହା କରି କଟୁଆଳ ସାହେବ ଆଣି ମୋ ଛାମୁରେ ଠିଆ କରାଇଲେ। ତା' ପଛରେ ଦୁଇଜଣ ବେତଧାରୀ ମନ୍ତ୍ରୀ ଠିଆ ହୋଇଗଲେ। ଗୋସେଇଁକୁ ମୁଁ ଆଜ୍ଞା କଲି, "ଗୋସେଇଁ, ତୁମର ତ ପାନ ଖାଇବାର ଭାରି ସଉକୀ ଅଛି, ଆମ ରାଣୀସାହେବା ତୁମ ଉପରେ ପ୍ରସନ୍ନା ହୋଇ ଏ ପାନଖିଲ ଆଠଟି ତୁମ ପାଇଁ ଉପହାର ଦେଇଛନ୍ତି। ଏତକ ଏ ଦରବାରରେ ସାରିବାକୁ ହେବ।"

"ଗାଉଁଲି ବ୍ରାହ୍ମଣ ପ୍ରଥମ ପାନଖିଲ ପାଟିରେ ପୁରାଇ ଦୁଇଥର ରଗଡ଼ିଛି ତା ମୁହଁକୁ ବିଚକାଟିଆ କରି ଦେଲା ଓ ପାଟିରୁ ପାନ କାଢ଼ି ପକାଇବା ବେଳକୁ କଇଁଛ ଭଳି ବାହାରକୁ କାଢିଛି, ଏହି ସମୟରେ ପଛଆଡ଼େ ଠିଆ ହୋଇଥିବା ମନ୍ତ୍ରୀଙ୍କ ହାତରୁ ବାଜିଲା ପଷ୍ଠାର୍ଦ୍ଧାଙ୍ଗରେ ସପାସପ୍ ଦୁଇ ବେତ। ଆମ ମନ୍ତୀଙ୍କର ମୁହଁରୁ ପାଳଚୁଣ୍ଡା ସ୍ପ୍ରିଙ୍ଗ୍‌ଟା ଖୋଲିଗଲା। ମନ୍ତ୍ରୀ ଆଜ୍ଞା ଦେଲେ - "ହୁସିଆର୍ ଗୋସେଇଁ ! ଏଠାରେ ମହାରାଜାଙ୍କ ଛାମୁରେ ଯେବେ ପିକ କାଢ଼ିବ ବା ପାନସିଠାତକ ନ ଢୋକିବ ତେବେ ତୁମକୁ ସଙ୍ଗେ ସଙ୍ଗେ ମୃଦଙ୍ଗ ଘରକୁ ପଠାଇ ଦିଆଯିବ। ଏ କଥା ସଙ୍ଗେ ସଙ୍ଗେ ତା' ପିଚାରେ ସପାସପ୍ ବେତ୍ର ବୃଷ୍ଟି ଚାଲିଥାଏ। ବ୍ରାହ୍ମଣ ସେ ଖଣ୍ଡକ ଯେନକେନ ପ୍ରକାରେ ଚୋବାଇଲା, ତାପରେ ଦ୍ୱିତୀୟ ଖଣ୍ଡ ଚୋବାଇବାକୁ ହୁକୁମ ହେଲା ଓ ପୁଣି ପୂର୍ବୋକ୍ତ ବିଧି ବିଧାନ ଓ ବଚନିକାମାନ ଅନୁସୃତ ହେଲା। ଏଣେ ବ୍ରାହ୍ମଣର ଆପାଦମସ୍ତକ ଝାଳ ବୋହି ଯାଉଥାଏ, ଆଖିରୁ ପାଣି, ନାକରୁ ସିଙ୍ଘାଣି ଧାର ଚାଲିଥାଏ ଓ ପାଟିରୁ ଲଙ୍କାମରିଚ ମଞ୍ଜି ମିଶ୍ରିତ ପାନଛେପ ଓଠବାଟେ ବୋହି ବ୍ରାହ୍ମଣର ଛାତି, ପେଟ, ଲୁଗା, ଦୋସଡ଼ା ସବୁକୁ ରଞ୍ଜିତ କରୁଥାଏ। ତଥାପି ତାକୁ ଛାଡ଼ ହେଲାନାହିଁ, ସେ ଚତୁର୍ଥ ଖିଲ ଶେଷ କଲାବେଳକୁ ବେତ୍ରାଘାତ ଓ ଲଙ୍କାମରିଚ ଦାଉରେ ଚିତପଟାଙ୍ଗ

ହୋଇ ପଡ଼ିଗଲା । ଏହା ଦେଖି ଆମ ରାଣୀଙ୍କ ପାଖେ ଖରଡ଼ରେ ବିଜେ କରିଥିବା ଆମ ଫୁଲବେହୀ ଇସାରା କଲେ, "ଏତିକି ହେଉ, ନଇଲେ ଛାମୁଙ୍କର ବ୍ରହ୍ମହତ୍ୟା ପାତକ ଲାଗିବ ।" ସେଥିରୁ ମୋ ମନରେ ଟିକିଏ କରୁଣ ରସର ଉଦ୍ରେକ ହେଲା ଓ ମନ୍ତ୍ରୀମାନେ ସେହି ବେହୋସ ବ୍ରାହ୍ମଣକୁ ଦିହୁଡ଼ିଠାକୁ ଉଠାଇ ନେଇଗଲେ । ଉଠାଇ ନେଲାବେଳେ ଦେଖାଗଲା ଯେ, ବ୍ରାହ୍ମଣର ଲୁଗାଫେରରୁ ହଳଦିଆ ବର୍ଣ୍ଣର ଜଳୀୟବସ୍ତୁ ଓ କଛା କାନିରୁ ହଳଦିଆ ବର୍ଣ୍ଣର ଘନ-ତରଳିଆ ବସ୍ତୁର ସ୍ରୋତ ବହି ବହିକା ଯାଉଥାଏ । ସଙ୍ଗେ ସଙ୍ଗେ ଗୁଡ଼ିଏ କୁକୁର ଜାତୀୟ ଜୀବଙ୍କୁ ମିସଲରେ ଛାଡ଼ି ଦିଆଗଲା ଏବଂ ସେମାନେ ପାଆଘଣ୍ଟା ମଧ୍ୟରେ ମିସଲର ମେଜିଆକୁ ଚାଟିଚୁଟି ସଫା କରିଦେଲେ ।

ତତ୍ପରେ ଡାକରା ହେଲା ଦ୍ୱିତୀୟ ଆସାମୀ ରାମ ଛୁଆଳସିଂହ । ସେ ରାଜବଂଶର ତିନି ଅନ୍ତର ଓ ଛଅ ପ୍ରତ୍ୟନ୍ତର ଓ ନଅ ଭାତାନ୍ତର ସମ୍ପର୍କରେ ବିରାଦର ଭାଇ ସାଆନ୍ତ । ତା'ର ଅପରାଧ ଏହି ଯେ, ସେ ଆମ ମଣିମାଙ୍କ ଆଦେଶ ଅନୁସାରେ ତା'ର ଅଭିଆଡୀ ଝିଅକୁ ଆମ ଉଆସରେ ଘରଝିଅ ହେବାକୁ ଦେଲାନାହିଁ । ତା' ମକଦ୍ଦମା ବିଚାର ହେଲାବେଳେ ସେ ଥରେ ଅକସ୍ମାତ ତା ମୁଛରେ ହାତ ବୁଲାଇଦେଲା । ସେକଥା ଓକିଲ ସାହେବଙ୍କ ଆଖିରେ ପଡ଼ିବାରୁ ଓକିଲ ସାହେବ ମନ୍ତ୍ରୀଭାଇଙ୍କୁ ଠାରିଦେଲେ । ଆଗେ ତାର ଅସଲ ମକଦ୍ଦମା ବିଚାର ଶେଷ ହେଲା; ହୁକୁମ ହେଲା ଯେ, ରାଣୀଙ୍କ ଆଦେଶ ଅମାନ୍ୟ କରିଥିବା ଯୋଗୁଁ ତାର ଷୋଳ ବର୍ଷର ଅଭିଆଡ଼ୀ ଝିଅ ଓ ସ୍ତ୍ରୀ ଆଜିଠାରୁ ଉଆସରେ ଆସି ଯଥାକ୍ରମେ ରାଣୀସାହେବା, ମନ୍ତ୍ରୀଆଣୀ ସାହେବା ଓ ଫୁଲବେହୀ ସାହେବାଙ୍କ ପାଖେ ପୋଇଲୀ ହୋଇ ରହିବେ । ସଙ୍ଗେ ସଙ୍ଗେ ମନ୍ତ୍ରୀ ଯାଇ ଏ ତିନିଜଣଙ୍କୁ ତା' ଘରୁ ଓଟାରି ଆଣି ଉଆସ ଆଡ଼କୁ ଘୋଷାରି ଘୋଷାରିକା ନେଇଗଲେ । ଛୁଆଳସିଂହ ବିଚରା ଏହା ଦେଖି କାକୁସ୍ଥ ହୋଇ ଠିଆ ହୋଇଥାଏ । ତାପରେ ତାକୁ ମନ୍ତ୍ରୀ ସାହେବ ମୁହଁରୁ ପାଳଚୁଣ୍ଡା ଓଟାରି ପକାଇ ପଚାରି ଆଜ୍ଞା ହେଲେ, "ଛୁଆଳସିଂହ, ତୁମେ ଆମ ଛାମୁଙ୍କ ମିସଲରେ ଠିଆ ହୋଇ ମୁଛରେ ତାଉ ଦେଉଥିଲ ? ରାଜଦରବାରର କାଇଦା ତୁମକୁ କଣ ଜଣାନାହିଁ ?" ଏହା କହିବା ମାତ୍ରେ ମିସଲ ଉପରକୁ ରାଣୀସାହେବାଙ୍କ ଛାମୁରୁ ଗୋଟିଏ ସଣ୍ଣୁଆଣି ପଠାହେଲା ଓ ଦୁଇଜଣ ମନ୍ତ୍ରୀ ଛୁଆଳସିଂହକୁ ପଛବୁହା କରି ଆଣି ଆମ ଛାମୁରେ ଠିଆ କରାଇଲେ ଓ ଆମେ ତା ମୁଛରୁ ସଣ୍ଣୁଆଣି ସାହାଯ୍ୟରେ ଗୋଟିଏ ଗୋଟିଏ କେଶ ଓପାଡ଼ିବାକୁ ସୁରୁ କଲୁ । ନିଶ ଓପାଡ଼ିଲା ବେଳେ ମୋତେ ଭାରି ସୁଖ ଲାଗିଲା । ଏହା ଦେଖି ମନ୍ତ୍ରୀ ସାହେବା ଦୁଇଟା, ଓକିଲ ସାହେବ ଦୁଇଟା ଲେଖାଏଁ ଓପାଡ଼ିଲେ । ପଛକୁ ରାଣୀ

ସାହେବା ପରଦାରୁ ବାହାରି ଆସି ପୁଞ୍ଜାଏ, ଫୁଲବେହୀ ଦୁଇଟା ଓ ଚଉକୀବେହୀ ଗୋଟାଏ ବାଳ ଓପାଡ଼ିଲେ। ସେତେବେଳକୁ ଛୁଆଳସିଂହର ବାଆଁପାଖ ନିଶବାଳ ଯାକ ନିର୍ମୂଳ ହେଲାଣି, ତା ବାଆଁ ପାଖ ଓଠ ଓ ମୁହଁ ଚିତଉପିଠା ଭଳି ଫୁଲି ଗଲାଣି, ସେ ବେହୋସ ହୋଇ ପଡ଼ିଲାଣି ଓ ତା'ପାଟିରୁ ଗରଳ ବୋହିଲାଣି। ଏହିପରି ଅବସ୍ଥାରେ ମୁଁ ଡ଼ାହାଣପଟ ମୁଞ୍ଛ ଓପାଡ଼ିବାର ମମତା ଏଡ଼ି ନ ପାରି ଡ଼ାହାଣ ପଟ ମୁଞ୍ଛ ଓପାଡ଼ିବାକୁ ଚଉକିବେହୀଙ୍କ ହାତରୁ ସଣ୍ଢୁଆଶି ଆଣିବାକୁ ହାତ ବଢ଼ାଉଛି।

ସେଇଠୁ କିସ ହେଲା କି, ଫୁଲବେହୀଙ୍କ ହାତରୁ ସଣ୍ଢୁଆଶି ଆଣି ମୁଁ ଡାହଣ ପଟର ମୁଞ୍ଛରୁ ବାଳ ପ୍ରାୟ ଦୁଇପୁଞ୍ଜା ଓପାଡ଼ିଲିଣି ଏହି ସମୟରେ ଦେଖାଗଲା ଯେ, ଛୁଆଳ ସିଂହ ତା'ଠାରୁ ପୂର୍ବେ ବାଳ ଓପଡ଼ା ଯିବାବେଳ ଯେଉଁ ହଲଚଲ ହେଉଥିଲା ତାହା ଆଉ ହେବାକୁ ନାହିଁ। ଏହା ଦେଖି ରାଣୀସାହେବା ବୋବେଇ ଉଠି ଆଜ୍ଞା ହେଲେ "ଛୁଆଳସିଂହ ମରିଗଲାଣି, ଡାହାଣ ପାଖରେ ବାକିଥିବା ନିଶତକର ଅଧିକାରୀ ହେବା ସୁଖରୁ ଶବକୁ ବଞ୍ଚିତ କର ନା।" ସତକୁ ସତ ମୁଁ ମୁଞ୍ଛ ଓପଡ଼ା କାମ ବନ୍ଦ କରିବାକୁ ବାଧ ହେଲି ଓ ରାଜ ଡାକ୍ତରଙ୍କୁ ଡକାଇଲି। ସେ ଆସି ଛୁଆଳସିଂହ ଦେହର ଭିନ୍ନ ଭିନ୍ନ ଅଂଶରେ ତାଙ୍କ ମୁହଁ, ନାକ, କାନ, ଷ୍ଟେଥୋସ୍କୋପ ଯନ୍ତ ଲଗାଇ ଦେଖିଲେ ଯେ, ଛୁଆଳ ସିଂହଙ୍କ ଅମର ଆତ୍ମା ତାଙ୍କ ମର ଦେହଠାରୁ ବିଦାୟ ଗ୍ରହଣ କରି ପାଆଘଣ୍ଟା ହେଲା ଆଧାତ୍ମିକ ଏଜେଣ୍ଟ ସାହେବଙ୍କ ଦରବାରକୁ ଯାତ୍ରା କରିସାରିଲାଣି। ସଙ୍ଗେ ସଙ୍ଗେ ଡାକ୍ତରଖାନାରୁ ରେଜିଷ୍ଟରମାନ କଚେରୀକୁ ଅଣାହେଲା ଓ ସେଥିରେ ପୂରଣ କରାଗଲା ଯେ ଛୁଆଳସିଂହ ନାମକ ଆମ୍ଭର ଜଣେ ଖୁବ୍ ଘନିଷ୍ଠ ବିରାଦର ଆଜକୁ ତିନିଦିନ ହେଲା ହାତି ଶୁଣ୍ଢା ରୋଗରେ ପୀଡ଼ିତ ହୋଇ ଡାକ୍ତରଖାନାକୁ ଆସି ସେଠାରେ ଅପରେସନ କରାଇଥିଲା। ଅପରେସନ ପରେ ତାହାର ସାଧାରଣ ସ୍ୱାସ୍ଥ୍ୟ ଭଲ ଥିଲା, କିନ୍ତୁ ଆଜି ହଠାତ୍ ହାର୍ଟଫେଲ (ହୃତିପିଣ୍ଡର କ୍ରିୟା ବନ୍ଦ) ହୋଇ ସେ ମରିଗଲା। ସଙ୍ଗେ ସଙ୍ଗେ ଏଥି ପୂର୍ବରୁ ଉଆସକୁ ଅଣାଯାଇଥିବା ତା'ର କନ୍ୟାମାନଙ୍କୁ ଓ ତା' ଘରୁ ତା' ସ୍ତ୍ରୀକୁ ଡାକରା ହୋଇ ସେମାନଙ୍କଠାରୁ ଟିପଚିହ୍ନ ନିଆଗଲା ଯେ, ହାର୍ଟଫେଲ୍ ହେତୁରୁ ଛୁଆଳସିଂହ ମରିଗଲା। ସଙ୍ଗେ ସଙ୍ଗେ ତା'ର ଶବ ଶ୍ମଶାନକୁ ପ୍ରେରିତ ହୋଇ କିରୋସିନି ସାହାଯ୍ୟରେ ତହିଁର ଦାହକ୍ରିୟା ସମ୍ପନ୍ନ ହେଲା।

ଏହି ଘଟଣାଟା ଯୋଗୁଁ ଦରବାର ସେଦିନ ଭାଙ୍ଗିଲା ଓ ଦରବାରୀମାନେ ଯେଝା ସ୍ଥାନକୁ ଗଲେ। ସନ୍ଧ୍ୟା ବେଳକୁ ପୁଣି ମୋ ବୈଠକଖାନାରେ ସାନ୍ଧ୍ୟ ବୈଠକ ଜମିଲା। ଆମର ସଦର ଡିଭିଜନର ମେଜେଷ୍ଟର ଏ ବୈଠକକୁ ପ୍ରତିଦିନ ଆସନ୍ତି, ସେ ଦିନ ମଧ

ଆସିଲେ। ମନ୍ତ୍ରୀ ସାହେବ ମୁହଁରେ ପାଳବିଣ୍ଡା ମାରି ମଧ୍ୟ ଯୋଗଦେଲେ। ମେଜେଷ୍ଟର ମନ୍ତ୍ରୀସାହେବଙ୍କ କାନପାଖେ କ'ଣ ଫୁସ୍‌ଫସ୍ ହେଲେ। ମନ୍ତ୍ରୀଭାଇ ମୁହଁରୁ ପାଳଚୁଣ୍ଟାଟା କାଢ଼ି ଦେଇ ବଡ଼ପାଟି କରି ମୋତେ ଶୁଣାଇ କରି କହିଲେ, "ମେଜେଷ୍ଟର ହୋଇଛୁ, ତତେ କ'ଣ ଏତକ ଜଣାନାହିଁ ଯେ, ରାଜବାଟୀରେ ଓ ରାଜଦରବାରରେ ଯେତେ ଲୋକଙ୍କର ହଠାତ୍ ମୃତ୍ୟୁ ହୁଏ, ତାହା ସବୁ ହାର୍ଟଫେଲ୍ ହେତୁରୁ ହୁଏ। ଆଛା! ଦିନ ଦି'ପହରରେ ତତେ ଏଠାରେ ମାରି ପକାଇଲେ ଆମର ଭଲା କେହି କେଶାଗ୍ର ସ୍ପର୍ଶ କରିପାରିବ ? ଏକଥା ତୁ ବହୁବାର ଅଙ୍ଗେ ନିଭେଇ ପୁଣି ଏ ପ୍ରଶ୍ନ କରୁଛୁ ? ଦେଖୁଛି, ତୋର ଟିକିଏ ହେଲେ ବୁଦ୍ଧି ନାହିଁ ? ଆରେ ! କିଏ ଅଛରେ ! ଆମ ପାଟଘୋଡ଼ାର ଜିନ୍ ଲଗାମ ହେରିକା ଆଣିବଟି।" ମୋ ପାଟିରୁ ଏହା ବାହାରିବା ମାତ୍ରେ ଦୁଇଜଣ ପହରାବାଲା ଅସ୍ତାବାଲକୁ ଦଉଡ଼ିଲେ ଓ ସେଠାରୁ ଘୋଡ଼ାର ସାଜସଜ୍ଜା ଆଣି ଉପସ୍ଥିତ ହେଲେ। ମେଜେଷ୍ଟରଙ୍କୁ ମୁଁ ହୁକୁମ କଲି 'ତୁ ଘୋଡ଼ା ପରି ଦୁଇ ଆଣ୍ଠୁରେ ଓ ଦୁଇ ପଦୀକୃତ ହାତରେ ହାମୁଡ଼ା।' ମେଜେଷ୍ଟର ହାମୁଡ଼େଇଲା, ତା ପିଠି ଉପରେ ଘୋଡ଼ାର ଜିନ୍ କସା ହେଲା, ତା' ମୁହଁରେ ଘୋଡ଼ାର କଜେଇ ଓ ଲଗାମ ଦିଆହେଲା। ଉଆସକୁ ଖବର ଗଲା, ଆମ ରାଣୀସାହେବା ଆସିଲେ, ମୋ ହୁକୁମ ଅନୁସାରେ ରାଣୀସାହେବା ମେଜେଷ୍ଟର ପିଠିରେ ଜିନ୍ ଉପରେ ବସି ତା' ମୁହଁରେ ଲାଗିଥିବା ଲଗାମକୁ ଧଇଲେ। ମନ୍ତ୍ରିଆଣୀ (ସମାଜ ଚକ୍ଷୁରେ ଆମ ଭାଇବୋହୂ, କିନ୍ତୁ ଆମ ଚକ୍ଷୁରେ ନରଦେବୀ)ଙ୍କୁ ତଲବ ହେବାରୁ ସେ ଆସିଲେ। ମୋ ଆଦେଶ ଓ ମୋ ପାଳଚୁଣ୍ଟା ମନ୍ତ୍ରୀଭାଇଙ୍କ ଇଙ୍ଗିତକ୍ରମେ ମନ୍ତ୍ରିଆଣୀ ହଣ୍ଟର ଚାବୁକ୍ ଦ୍ୱାରା ମେଜେଷ୍ଟରର ପଛଭାଗ (ପିଚା)ର ସମ୍ବର୍ଦ୍ଧନା କଲେ ଓ ଘୋଡ଼ା ବୈଠକଖାନାର ଚତୁଃକୋଣ ଥରେ ବୁଲି ଆସିବା ପରେ ରାଣୀ ସାହେବା ଓହ୍ଲାଇଲେ। ଫୁଲବେହୀ ତଲବ ହୋଇ ଆସିଲେ। ସେ ଚଢ଼ିଲେ। ତାଙ୍କୁ ପୃଷ୍ଠରେ ଧାରଣ କରି ମେଜେଷ୍ଟର ବୈଠକଖାନାରେ ଦୁଇଭେରା ବୁଲିଲେ। ତା'ପରେ ମାଲବେହୀ, ଚଉକିବେହୀ, ଟଭାବେହୀ, ଟାହିଆବେହୀ, କୁକୁରବେହୀ, ଚଢ଼େଇବେହୀ, ମାଙ୍କଡ଼ବେହୀ, ଆମ ଉଆସରେ ଯେତକ ଯାକ ବେହୀ ଓ ଅବେହୀ ଥିଲେ ସମସ୍ତେ ଆସି ମେଜେଷ୍ଟର ପୃଷ୍ଠାରୋହିଣୀ ହେବା ପରେ ତା' ପିଠିରୁ ଜିନ୍ କଢ଼ା ହେଲା ଓ ତାକୁ ମନ୍ତ୍ରୀ ଭାଇ ନିଜ ମୁହଁରୁ ପାଳବିଣ୍ଡା କାଢ଼ି ପଚାରିଲେ, "କିରେ ମେଜେଷ୍ଟର ! ଛୁଆଳସିଂହ କିପରି ମଲା ବୁଝିଲୁ ?" ମେଜେଷ୍ଟର କହିଲେ, "ଆଜ୍ଞା ! ମଣିମା ! ଉଆସକୁ ଆସୁ ଆସୁ ବାଟରେ ନରୁ ମର୍ଦ୍ଦିଗାଜଠାରୁ ଛୁଆଳସିଂହର ରାଜବାଟୀରେ ହଠାତ୍ ମରିବା କଥା ଶୁଣିଲି ବୋଲି ମନ୍ତ୍ରୀ

ସାହେବଙ୍କୁ ପଚାରିଲି। ବର୍ତ୍ତମାନ ଆଚ୍ଛା କରି ବୁଝିଲି ଯେ, ସେ ନୈସର୍ଗିକ କାରଣରୁ ମରିଛି।" ଏହାଶୁଣି ମନ୍ତ୍ରୀ ସାହେବ ପୁଣି ମୁହଁରୁ କୁଟା ପୁଳାକ ଓଟାରି ପକେଇ ହୁକୁମ ଦେଲେ "ଆରେ! କିଏ ଅଛରେ! ଧରି ଆଣ ସେ ନରୁମର୍ଦ୍ଦଗାଜୀକୁ।" ପାଆଘଣ୍ଟାରେ ମର୍ଦ୍ଦଗାଜୀ ଧରା ହୋଇ ଆସିଲା। ତାକୁ ପ୍ରଥମେ ପ୍ରହରାବାଲାଙ୍କ ଦ୍ୱାରା ଦୁଇ ତିନ ବେତ୍ରାଘାତରେ ସମ୍ବର୍ଦ୍ଧନା ହେବା ପରେ ମୁଁ ତାକୁ ପଚାରିଲି, "କିରେ ମର୍ଦ୍ଦଗାଜୀ! ଛୁଆଳ ସିଂହ ରାଜବାଟୀରେ ହଠାତ୍ ମଲା ବୋଲି ତୁ କିପରି କହୁଥିଲୁ ? " ସେ କହିଲା, "ମୁଁ ଆଜି ହାଟରୁ ଆସିଲାବେଳେ ବାଟରେ ଶଙ୍କରା ଭଣ୍ଡାରିଠାରୁ କଥା ଶୁଣି ସେ ଏପରି ମିଥ୍ୟା ରଚନା କରିଥିବାରୁ ତା' ନାମରେ ଫେରାଦ ହେବାକୁ ମେଜେଷ୍ଟରଙ୍କ ହଜୁରକୁ ଆସୁଥିଲି। ବାଟରେ ପାଇକରାୟଙ୍କ ଦେଖାହେବାରୁ ତାଙ୍କୁ କହିଲି, ଶଙ୍କରାର ଜିଭରେ ହାଡ଼, ଲେଡ଼ିରେ ବାଳ ହେଲାଣି, ସେ ଆମ ଉଆସ ନାଁରେ ଏଡ଼େବଡ଼ କଥାଟାଏ କହୁଛି। ତୁମେ ଜଣେ ସାକ୍ଷୀ ହେବ, ମୁଁ ଏକଥା ମେଜେଷ୍ଟରଙ୍କୁ ଦରଖାସ୍ତ କରିବି।" ଏହାଶୁଣି ମୁଁ ଶଙ୍କରା ଭଣ୍ଡାରିକୁ ଛଅ ମାସ ଜେଲ୍। ସଙ୍ଗେ ସଙ୍ଗେ ପ୍ରହରାବାଲା ଦୁଇଜଣ ଆସି ତାକୁ ଜେଲ୍‌କୁ ନେଲେ। ପ୍ରହରାବାଲାଙ୍କ ହାତରେ ଜେଲ୍‌ର ଦାରୋଗା ପାଖକୁ ବାତନି ଗଲା ଯେ, ପ୍ରତିଦିନ ସକାଳୁ ମେହେନ୍ତରମାନେ ହାଣ୍ଡିଏ ବିଷ୍ଠା ଆଣି ଜେଲରବାବୁଙ୍କୁ ଦେବେ ଓ ଜେଲ୍‌ରବାବୁଙ୍କ ଉପସ୍ଥିତିରେ ଶଙ୍କରା ସ୍ୱୟଂ ହଳଦୀ ଲଗାଇଲା ପରି ସେଗୁଡ଼ିକ ନିଜ ଦେହରେ ବୋଳି ହେବ ଓ ସେ ଲେପ ଦେହରୁ ଶୁଖିବା ପର୍ଯ୍ୟନ୍ତ ସେ ଖଣ୍ଡିଏ ବିଞ୍ଚଣାରେ ବିଞ୍ଚି ହେବ। ସେ ଲେପ ଶୁଖିଗଲେ ହଳଦୀ ମଳଖୁଚି ଛଡ଼ା ହେବା ଭଳି ତାହାକୁ ନିଜେ ଦେହରୁ ଛଡ଼ାଇବ ଓ ପୁଣି ଥରେ ଦେହରେ ଲଗାଇବ। ଏହିପରି ସକାଳ ଛଅଟାଠାରୁ ସନ୍ଧ୍ୟା ଛଅଟା ପର୍ଯ୍ୟନ୍ତ ଶଙ୍କରା ଚତୁର୍ଥ ଥର ଦେହରେ ପୁରୀଷ-ଲେପନ ବିଧି ଏକ ସପ୍ତାହ ପାଇଁ ପାଳନ କରିବ। ଏ ଗଲା ଶଙ୍କରା ଭଣ୍ଡାରିର ମକଦ୍ଦମା ଫଏସେଲା। ତା'ପରେ ନରୁ ମର୍ଦ୍ଦଗାଜୀର ବିଚାର। ହୁକୁମ ହେଲା ଯେ, ଆମର ଦୁଇଜଣ କୁଟା ଶ୍ରେଣୀର ପାଖଲୋକ ତା' ଘରର ପିଣ୍ଡାକୁ ଯାଇ ତା' ଚାଳବାଟେ ଭରିଏ ଅଫିମ ତା' ଘର ଭିତରକୁ ଫିଙ୍ଗିଦେଇ ଆସିବେ ଓ ସଙ୍ଗେ ସଙ୍ଗେ ପୁଲିସ ଯାଇ ତା' ଘରୁ ଅଫିମ ବରାମଦ କରି ତାକୁ ଅବକାରୀ ଆଇନ ମୁତାବକ ଚଲାଣ ଦେବେ ଓ ତାକୁ ଦୁଇମାସ ଘଣାପେଲା କାମରେ ଲଗାଯିବ।"





ଶ୍ରୀ ସର୍ଦ୍ଦାର ପଟେଲ ଓ ଶ୍ରୀ ମହତାବ

# ରଣପୁର ପ୍ରଜା ଆନ୍ଦୋଳନ ଓ ବେଜେଲଗେଟ ହତ୍ୟା

ଓଡ଼ିଶାର ଗୋଟିଏ 'ଖ' ଶ୍ରେଣୀଭୁକ୍ତ ରାଜ୍ୟ ଥିଲା ରଣପୁର। ଏହାର ଆୟତନ ୨୦୩ ବର୍ଗ ମାଇଲ ଲୋକସଂଖ୍ୟା ୪୭୭୦୧ ଆୟ ପ୍ରାୟ ୭୦ ହଜାର। ରାଜା ସରକାରଙ୍କୁ ୧୪ ହଜାର ଟଙ୍କା ପେସ୍‌କିସ୍ ଦେଉଥିଲେ। କୁହାଯାଏ ରଣପୁର ଏକ ଅତି ପୁରୁଣା ରାଜ୍ୟ। କପିଳ ସଂହିତାରେ ଏହାର ନାମ ଉଲ୍ଲେଖ ଅଛି। ଗଜପତି ଅନଙ୍ଗଭୀମଦେବଙ୍କ ଠାରୁ ରାଜା ନରେନ୍ଦ୍ର ଉପାଧି ପାଇଥିଲେ। ଏହି ବଂଶର ଜଣେ ରାଜା ସାରଙ୍ଗଧର ନରେନ୍ଦ୍ର ଏକ ଆଖୁଗଛ ଉପାଡ଼ି ଗୋଟିଏ ଅରଣା ମହିଷିକୁ ବଧ କରିଥିବାରୁ ତାଙ୍କୁ ମରହଟ୍ଟା ରଘୁଜୀ ଭୋନସଲା ବଜ୍ରଧର ପଦବୀ ଦେଇଥିଲେ। ବିଂଶ ଶତାବ୍ଦୀର ତିରିଶ ଦଶକରେ ରଣପୁର ରାଜା ଥିଲେ ବୀରବର କୃଷ୍ଣଚନ୍ଦ୍ରସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର। ସେ ୧୮୭୨ରେ ଜନ୍ମ ଗ୍ରହଣ କରି ୧୮୯୯ ମସିହାରେ ରାଜ ଗାଦି

ପାଇଥିଲେ । ୧୮୯୩ ମସିହାରେ ବେଠି ଓ ତା' ଫଳରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଯୋଗୁଁ ରଣପୁରରେ ପ୍ରଜାମେଳି ଆରମ୍ଭ ହୋଇଥିଲା । ରାଜା ନାନା ପ୍ରକାର ମାଗଣ ନେଉଥିଲେ । ଖଜଣା ମଧ୍ୟ ସ୍ଥାନେ ସ୍ଥାନେ ଫସଲ ଆକାରରେ ନେଉଥିଲେ । ଏହା ପ୍ରଜାଙ୍କୁ ବାଧୁଥିଲା । କମିଶନର କରଦ ରାଜ୍ୟ ମାହାଲରେ ସୁପରିଟେଣ୍ଡେଣ୍ଟ ଥିଲେ । ସେ ଜଣେ ମାଜିଷ୍ଟ୍ରେଟ୍‌ଙ୍କୁ ୧୮୯୪ ମାର୍ଚ୍ଚ ମାସରେ ରଣପୁର ପଠାଇଲେ । ଦେଓ୍ୱାନଙ୍କୁ ବରଖାସ୍ତ କରାଗଲା । ପ୍ରଜାମାନଙ୍କୁ ସାମାନ୍ୟ ସୁବିଧା ଦିଆଗଲା । ମେଳି ସରଦାରମାନଙ୍କର ବିଚାର ହେଲା । ୧୩ଜଣ ଜେଲ୍‌ଦଣ୍ଡ ପାଇ କଟକ ପଠାଗଲେ । ସେଇବର୍ଷ ଶେଷବେଳକୁ ମେଳି ଭଙ୍ଗାଗଲା ମାତ୍ର ପ୍ରଜାମାନଙ୍କର ଅନେକ ଆପତ୍ତି ରହିଥାଏ । ୧୯୬୦ ପର୍ଯ୍ୟନ୍ତ ପ୍ରଜାମାନେ ନିଜ ଦୁଆରରେ ଯାଉଁଳି କବାଟ ଲଗାଇବା ମନାଥିଲା । ଯେଉଁ ରାସ୍ତାରେ ରାଜା ଓ ରାଜପରିବାର ଯାଉଥିଲେ ସେ ରାସ୍ତାରେ ସାଧାରଣ ଲୋକ ଯିବା ମନା ଥିଲା । ପ୍ରଜାମାନେ ଛତା ଓ ଜୋତା ପିନ୍ଧି ରାସ୍ତାରେ ଯିବା ମନା ଥିଲା । ରାଜାଙ୍କର ଅନେକ ଗୁଡ଼ିଏ ଜାଗିର ଥାଏ । ଏସବୁ ତାଙ୍କର ଅନୁଗତ ମାନଙ୍କୁ ଦିଆଯାଇ ପ୍ରଜା ପୀଡ଼ନ କରାଯାଉଥାଏ । ରଣପୁର ରାଜବଂଶର ଅଧିଷ୍ଠାତ୍ରୀ ଦେବତା ମଣିନାଗ । 'ନରେନ୍ଦ୍ର ମଉଳି କୁସୁମ ରେଣୁ ଭକ୍ତ ଚରଣା, ମୈନାକ ଶିଖର ବାସିନୀ ରଣପୁର ମଣ୍ଡନା' ବୋଲି କବିଙ୍କର ରାଧାନାଥ ଏହାକୁ ବର୍ଣ୍ଣନା କରିଛନ୍ତି । ଏଠାରେ ନର ବଳି ଦିଆଯାଉଥିଲା । ନିର୍ବିଘ୍ନରେ ରକ୍ତ ପାଟ ଜାଗିର ପାଇବା ଲୋକ ମଣିଷ ମାରି ରକ୍ତ ଦେବୀକୁ ଅର୍ପଣ କରୁଥିଲା ।

ସେମାନଙ୍କୁ ତଣ୍ଟି କଟିଆ ବା ମାଘମାସିଆ ବୋଲି ଲୋକମାନେ କହୁଥିଲେ । ଏହି ତଣ୍ଟିକଟିଆ ମାନଙ୍କୁ ରାଜାଘର ତରଫରୁ ପୁଷ ମାସରେ ମଣ୍ଡାପିଠା ଦିଆଯାଉଥିଲା । ପୁଷମାସ ଠାରୁ ମାଘମାସ ଶେଷ ହେବାଯାଏ ସେମାନେ ମଣିଷ ତଣ୍ଟି କାଟି ମାରୁଥିଲେ । ପାତ୍ରରେ ରକ୍ତ ଭରି ମଣିନାଗ ଦେବୀଙ୍କୁ ଅର୍ପଣ କରାଯାଉଥିଲା । ଯାହାର ଲୋକ ମରୁଥିଲେ ସେମାନେ ଏହା ପୁଲିସ ବା କୌଣସି କର୍ତ୍ତୃପକ୍ଷଙ୍କୁ ଜଣାଇବା ମନା ଥିଲା । ସେମିତି ଆଉ ଗୋଟିଏ ମଜାଦାର ଜାଗିର ଥିଲା ହୁଳ ହୁଳି ଜାଗିର । ଏହା ପାଇବା ଲୋକ ଆନନ୍ଦ ଉତ୍ସବ ସମୟରେ ରାଜାଘରେ ଆସି ହୁଳହୁଳି ଦେଇ ଶୁଭ ମନାସୁ ଥିଲେ । ସେମିତି ଥାଉ ଗୋଟିଏ ଜାଗିର୍ କାନ୍ଦ ବୋବାଳି । ରାଜକୀୟ ଶୋକ ପାଳନ ଅବସରରେ ଏମାନେ ରଜାଘରେ ଆସି କାନ୍ଦ ବୋବାଳି ଛାଡୁଥିଲେ ଯେମିତି ତାଙ୍କ ନିଜ ପରିବାରରେ କେହି ମରି ଯାଇଛି । ରାଜ୍ୟ ବାହାରେ ଏସବୁ ଅତ୍ୟାଚାର କାହାଣୀ ବିଶେଷ ଆଲୋଚିତ ହେବାର ସୁଯୋଗ ନଥିଲା ।

୧୯୩୬ ମସିହାରେ ଓଡ଼ିଶା ପ୍ରଦେଶ ଗଠନ ଉତ୍ତାରେ ୧୯୩୭ମସିହାରେ ମୋଗଲବନ୍ଦୀ ଅଞ୍ଚଳରେ ନିର୍ବାଚନ ହେଲା। ଲୋକ ପ୍ରତିନିଧିମାନେ ମନ୍ତ୍ରୀ ମଣ୍ଡଳ ଗଢ଼ି ରାଜ୍ୟ ସରକାର ଚଳାଇଲେ। ସମୁଦାୟ ଇଂରେଜଶାସିତ ଭାରତବର୍ଷରେ ଏମିତି ଲୋକ ପ୍ରତିନିଧି ଶାସନ ଚାଲିଲା। ଦେଶୀୟ ରାଜ୍ୟର ପ୍ରଜା ଏଥିରେ ନିଜକୁ ଅବହେଳିତ ମନେ କଲେ। ଦେଶରେ ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ ଗଢ଼ାହେଲା। ଭାରତବର୍ଷରେ ଏହାର ସଭାପତି ହେଲେ ଡକ୍ଟର ପର୍ଟ୍ଟାଭି ସୀତାରାମାୟ। ସେ କଂଗ୍ରେସର ଜଣେ ସର୍ବଭାରତୀୟ ଟାଣୁଆ ନେତା ଥିଲେ। ସମ୍ପାଦକ ହେଲେ ଗୁଜୁରାଟର ବଳବନ୍ତରାୟ ମେହେଟ୍ଟା। ସେମିତି ଆଉ ଜଣେ କଂଗ୍ରେସ ନେତା। ଅନ୍ୟ ସଭ୍ୟମାନେ ସବୁ ଆଡୁ ରହିଲେ। ଓଡ଼ିଶାରେ ଥିବା ଗଡ଼ଜାତ ମାନଙ୍କର ଅବସ୍ଥା ବାହାର ଲୋକଙ୍କୁ ଜଣାଇ ଦେବାକୁ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ଗଢ଼ା ଗଲା। କଂଗ୍ରେସ କାର୍ଯ୍ୟନିର୍ବାହୀ ସମିତିର ସଭ୍ୟ ଥିବା ହରେକୃଷ୍ଣ ମହତାବ ଏହାର ସଭାପତି ହେଲେ। ବାଲେଶ୍ୱର ଓକିଲ ଓ ନୀଳଗିରିର ପ୍ରଜାନେତା କୈଳାଶ ଚନ୍ଦ୍ର ମହାନ୍ତି, ପରେ ବ୍ୟବସ୍ଥାପକ ଓ ବାଚସ୍ପତି ହୋଇଥିବା ଲାଲମୋହନ ପଟ୍ଟନାୟକ, ଆମେରିକାରୁ ଉଚ୍ଚ ଶିକ୍ଷା ଲାଭ କରି ଆସି ଶିଳ୍ପ ସ୍ଥାପନରେ ଉଦ୍ୟମୀ ଥିବା ଢେଙ୍କାନାଳର ସାରଙ୍ଗଧର ଦାସ ଆଦି ପ୍ରତିଷ୍ଠିତ ବ୍ୟକ୍ତିମାନେ ଏହି ସମିତିରେ ରହିଲେ। ସେମାନେ ବିଭିନ୍ନ ଗଡ଼ଜାତମାନଙ୍କର ସମସ୍ୟାମାନ ଗସ୍ତ କରି ଅନୁଧ୍ୟାନ କଲେ। ରାଜାମାନେ ସେମାନଙ୍କର ପୁରୁଷାନୁକ୍ରମେ ଭୋଗ କରୁଥିବା କ୍ଷମତାରୁ ତିଳେମାତ୍ର ଛାଡ଼ିବାକୁ ପ୍ରସ୍ତୁତ ନଥିଲେ। ତେଣୁ ଏହି ଆନ୍ଦୋଳନ ଦମନ ପାଇ ବ୍ୟବସ୍ଥା ହେଲା। ସାର୍ବଭୌମ ଶକ୍ତି ଭାବରେ ତାଙ୍କ ଆଶ୍ରିତ ଏହି ରାଜାମାନଙ୍କ ଆସନ ରକ୍ଷା ନିମିତ୍ତ କେନ୍ଦ୍ରର ବ୍ରିଟିଶ ସରକାର ସୈନ୍ୟବଳ ଦେଇ ସାହାଯ୍ୟ କଲେ। ୧୯୨୨ ମସିହା ଠାରୁ ଗଡ଼ଜାତ ଉପରେ କର୍ତ୍ତୃତ୍ୱ କମିଶନରଙ୍କ ଠାରୁ କାଢ଼ି ନିଆଯାଇ ପଲଟିକାଲ ଏଜେଣ୍ଟଙ୍କୁ ଦିଆଯାଇଥାଏ। ସମ୍ବଲପୁରରେ ଏହି ସମୟରେ ଜଣେ ସେନା ବିଭାଗର ଅଫିସର ମେଜରଜେନେରାଲ ବେଜଲଗେଟ ପଲଟିକାଲ ଏଜେଣ୍ଟ ଥିଲେ।

ରଣପୁର ରାଜ୍ୟରେ ପ୍ରଜାମାନେ ସେମାନଙ୍କର ଆପତ୍ତି ରାଜାଙ୍କୁ ଜଣାଇଲେ। ସେମାନଙ୍କ ଦାବୀ ମଧ୍ୟରୁ ସାମାନ୍ୟ କେତୋଟି ରାଜା ମାନି ନେଲେ। ପ୍ରଜାମମାନଙ୍କର ଏହା ମନକୁ ପାଇଲା ନାହିଁ। ସେମାନେ ଆନ୍ଦୋଳନ ଆରମ୍ଭ କଲେ। ତାଙ୍କ ଭିତରୁ ମୁଖିଆ କେତେ ଜଣଙ୍କୁ ଦେଖି ରାଜା ଗିରଫ କରି ଜେଲରେ ରଖିଲେ। ଏ ଖବର ରାଜ୍ୟର ଚାରିଆଡ଼େ ବ୍ୟାପିଗଲା। ଲୋକମାନେ ଠିକ କଲେ ସେମାନେ ଏକାଠି ହୋଇ ନିଜର

ପ୍ରିୟ ନେତାମାନଙ୍କୁ ଜେଲ୍‌ରୁ ମୁକୁଳାଇ ଆଣିବେ। ଗଡ଼ଜାତମାନଙ୍କରେ ଏହି ପ୍ରକାର ପ୍ରାୟ ହୋଇଥାଏ। ଜନସମାବେଶ ଦେଖିଲେ ରାଜ ଦରବାର ଭୟରେ ବନ୍ଦୀମାନଙ୍କୁ ଖଲାସ କରି ଦେଉଥିଲେ।

ଏହି ଘଟଣାର ପୂର୍ବଦିନ ଜଣେ ସାଧାରଣ ପ୍ରଜା ବନମାଳୀ ରାମ ଅନୁମାନ କଲେ ହଜାର ହଜାର ଲୋକ ଏକାଠି ହେଲେ କଣ ଅଘଟଣ ଘଟି ବିପୁଳ ଧନ ଜନ କ୍ଷୟ ହୋଇପାରେ। ତେଣୁ ସେ ଗଡ଼ଜାତ ପ୍ରଜା ସମ୍ମିଳନୀର ନେତା ହରେକୃଷ୍ଣ ମହତାବଙ୍କୁ ଏ ବିଷୟ ଜଣାଇ ତାଙ୍କୁ ଆଣି ପ୍ରଜାମାନଙ୍କୁ ମନେଇବା ଓ ରାଜ ଦରବାର ସହିତ ସାଲିସ୍ କରବାକୁ ଉଚିତ ମନେକଲେ। ସେ ଜଣେ ସାଧାରଣ ନାଗରିକ ଥିଲେ। ତାଙ୍କ ପୁଅ ରାମଚନ୍ଦ୍ର ରାମ (ପରେ ଆଡ଼ଭୋକେଟ ଓ ବ୍ୟବସ୍ଥାପକ) ସେତେବେଳେ ଖୋର୍ଦ୍ଧା ହାଇସ୍କୁଲରେ ପଢୁଥାନ୍ତି। ବନମାଳୀ କଟକ ଯାଇ ମହତାବଙ୍କୁ ଦେଖାକଲେ। ମହତାବଙ୍କର ସେତେବେଳେ ନିଜର ବହୁତ କାମ ଥାଏ। ରଣପୁର ଶହେ ମାଇଲ ବାଟ। ଯିବା ଆସିବାକୁ ଗାଡ଼ି ମଟର ବ୍ୟବସ୍ଥା ନଥାଏ। ମାତ୍ର ବନମାଳୀ ଛାଡ଼ିବାର ନୁହଁନ୍ତି, ଶେଷରେ ଗୋଟାଏ ଭଡ଼ା ମଟରରେ ଯିବା ଠିକ ହେଲା। ଭଡ଼ାଟିଆ ମଟର ଖୋଜିବା ଓ ତାକୁ ଠିକ୍ କରି ରଖିବାରେ ଆରଦିନ ଅଧା ଚାଲିଗଲା।

ପଲଟିକାଲ ଏଜେଣ୍ଟ ବେଜେଲଗେଟ ଏହି ସମୟରେ ନୟାଗଡ଼ ଗସ୍ତରେ ଥିଲେ। ରଣପୁର ନୟାଗଡ଼ର ପାଖ। ବର୍ତ୍ତମାନ ଏହା ନୟାଗଡ଼ ସବ୍‌ଡ଼ିଭିଜନ ଓ ପରେ ଜିଲ୍ଲାରେ ମିଶିଯାଇଛି। ହଜାର ହଜାର ଲୋକସମାବେଶକୁ ଡରି ରାଜଦରବାରକୁ ସୁରକ୍ଷା ଦେବାକୁ ସେ କିଛି ସ୍ଥାନୀୟ ପୁଲିସ ଧରି ରଣପୁରରେ ପହଞ୍ଚିଲେ। ସେତେବେଳକୁ ହଜାର ହଜାର ସଂଖ୍ୟାରେ ପ୍ରଜାମାନେ  ଏକାଠି ହେଲେଣି। ସେମାନଙ୍କର କେହି ନେତା ନଥାନ୍ତି। ନିଜ ଦାବୀରେ ସେମାନେ ଆନ୍ଦୋଳନ କରୁଥାନ୍ତି। ଦାବୀ ପୂରଣ ପର୍ଯ୍ୟନ୍ତ ସେମାନଙ୍କୁ ଶୃଙ୍ଖଳିତ କରିବାକୁ କୌଣସି ଶକ୍ତି ନଥାଏ। ବେଜେଲଗେଟଙ୍କର ପୁଲିସ ଗୁପ୍ତ ରିପୋର୍ଟ ବୋଧହୁଏ ତାଙ୍କୁ ଏ ବିଷୟ ଜଣାଇ ନଥାନ୍ତି। ସେ ଲୋକମାନଙ୍କ ଭିତରକୁ ପଶିଗଲେ। ସେମାନଙ୍କ ଦାବୀ ପୂରଣ ନେଇ କିଛି ନ ଜଣାଇ ଓଲଟି ସେମାନଙ୍କୁ ଆୟତ୍ତ କରିବାକୁ ଉଦ୍ୟମ କଲେ। ଫଳରେ ଲୋକମାନେ ହିଂସ୍ରକ ହୋଇ ତାଙ୍କୁ ଆକ୍ରମଣ କଲେ। ତାଙ୍କ ସହିତ ଥିବା ପୁଲିସ୍ ମଧ୍ୟ ତାଙ୍କୁ ବିଶେଷ ସୁରକ୍ଷା ଦେଲାନାହିଁ। ସେ ନିଜ ରିଭଲଭରରୁ ଗୁଳି ଚଳାଇଲେ। ଫଳରେ ଦୁଇଜଣ ଲୋକ ସେହିଠାରେ ଟଳି ପଡ଼ିଲେ। ହିଂସ୍ର ଜନତା ଟେକା ଓ ପଥର ବାଉଁଶ ବାଡ଼ିରେ ତାଙ୍କୁ ଆକ୍ରମଣ କଲେ, ମୁଣ୍ଡ ଛେଚି ମାରିଦେଲେ। ଲୋକଙ୍କ

ଆକ୍ରମଣରେ ପୁଲିସର ଜଣେ ଆହତ ହେଲେ । ତାଙ୍କୁ ପୁଲିସ ଦଳ ମୃତ ଭାବି ଡାକ୍ତରଖାନା ନେଲେ ନାହିଁ । ତ୍ରସ୍ତ ହୋଇ ସମସ୍ତେ ସେଇଠି ରହିଲେ । ପ୍ରାଣ ବିକଳରେ ଦରବାର ବନ୍ଦୀମାନଙ୍କୁ ଛାଡ଼ି ଦେଲେ ।

କଟକରୁ ଆସୁଥିବା ମହତାବଙ୍କ ମଟର ଗାଡ଼ି ରାସ୍ତାରେ ଖରାପ ହେବା ଯୋଗୁ ତାଙ୍କର ପହଞ୍ଚିବା ବିଳମ୍ବ ହେଉଥାଏ । ୪ଟା ବେଳକୁ ସେ ଖୋରଧାରେ ପହଞ୍ଚି ଡାକଘରୁ ବା ଥାନାରୁ ପଲଟିକାଲ ଏଜେଣ୍ଟଙ୍କ ଗତିବିଧି କିଛି ଜାଣିପାରିଲେ ନାହିଁ । ରଣପୁରଠାରୁ ୭ ମାଇଲର ଦୂର ରାଜ ସୁନାଖଳାରେ ରାଜାଙ୍କର ଗୋଟିଏ କୋଠି ଥିଲା । ସେଠାରୁ ରଣପୁର ରାଜବାଟି ସହିତ ଫୋନ ଯୋଗାଯୋଗ ଥାଏ । ମହତାବରାଜାଙ୍କ ସହିତ କଥାବାର୍ତ୍ତା ହେଲେ ରାଜା ତାଙ୍କୁ ଖବର ଦେଲେ ସାହେବ ତ ମଲାଣି । ଯଦି ପାରନ୍ତି ମତେ ଆସି ମୃତ୍ୟୁ ମୁଖରୁ ରକ୍ଷା କରନ୍ତୁ । ରଣପୁରକୁ କିଛି ରାସ୍ତାଯିବା ପରେ ଗାଡ଼ିରେ ମହତାବ, ବନମାଳୀ ଓ ସେମାନଙ୍କ ସହିତ ଆଉ ଦୁଇଜଣ ଲୋକ ଗାଁବାଲା ରାସ୍ତାରେ ଗଛ ପକାଇ ଯେପରି କେହି ଯା'ଆସ ନ କରି ପାରନ୍ତି ସେହି ପ୍ରକାର ରାସ୍ତା ଅବରୋଧ ବ୍ୟବସ୍ଥା ଦେଖିଲେ । ରାସ୍ତା ସଫା କରାଇଲେ । ରାଜାଙ୍କ ନଅରଠାରୁ ଅଳ୍ପ ଦୂରରେ ଦେଖିଲେ ପୁଲିସ ଏଣେତେଣେ ଗୁଳି ଚଳାଇ ଫାଙ୍କା ଆୱାଜ କରୁଛି । ସେମାନେ ମଝିରେ ଅଟକାଇଲେ । ମହତାବଙ୍କ ପରିଚୟ ଜାଣି ଗାଡ଼ି ଛାଡ଼ିଦେଲେ । ପୁଲିସ ଇନ୍‌ସପେକ୍ଟରଙ୍କୁ ନେଇ ଦେଖିବାବେଳକୁ ବେଜେଲଗେଟଙ୍କ ଶବ ସେମିତି ଚଉକିରେ ବସାଇ ରଖାଯାଇଛି । ପାଖରେ ତାଙ୍କ ରିଭଲଭରରେ ମରିଥିବା ଦୁଇଜଣ ଲୋକ ଓ ଆଉଜଣେ ପୁଲିସ ବେଶଧାରୀ ଲୋକ ଆହତ ହୋଇ ପଡ଼ିଛନ୍ତି । ସେମାନେ ଏପରି ଭୀତତ୍ରସ୍ତ ହୋଇଥାନ୍ତି ଯେ ଆହତର ଚିକିତ୍ସା ବ୍ୟବସ୍ଥା କରିପାରୁନଥାନ୍ତି । ମହତାବ ନିଜ ମଟରରେ ତାକୁ ଡାକ୍ତରଖାନା ପଠାଇଲେ । ପୁଲିସ୍‌ବାଲା ତିରିଶ ଚାଳିଶ ଜଣ ଥାଇ ସାହେବ କିପରି ମଲା ଏଥିପାଇଁ ସେ ସେମାନଙ୍କୁ ତାଗିଦ୍ କରି ପ୍ରକୃତ ବିଷୟ କଣ ଜାଣିବାକୁ ଚେଷ୍ଟା କରୁଥାଆନ୍ତି । ଏହି ସମୟରେ ଦେୱାନ ଆସି ପହଞ୍ଚିଲେ । ତାଙ୍କଠାରୁ ସବୁ ଖବର ଜଣାଗଲା । ରିଭଲଭରରେ ଦି'ଟା ଲୋକ ମାରିବାରୁ ଲୋକେ ଟେକାପଥର ଓ ବାଉଁଶରେ ମୁଣ୍ଡ ଛେଚି ଛେଚି ସାହେବଙ୍କୁ ମାରି ଦେଇଛନ୍ତି । ମହତାବ ଅନୁମାନ କଲେ ଏହା ଫଳରେ ଇଂରେଜ ସରକାର ଓ ଦରବାର ପ୍ରଜାମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର ଚଳାଇବେ । ସେ ଜୟ ଜୟକାର କରୁଥିବା ମେଳିଆ ମାନଙ୍କୁ ନିଜ ଗାଁକୁ ଫେରାଇ ଦେଲେ । ଗାଁ ଖାଲି କରିବାକୁ ସେ ସେମାନଙ୍କୁ ବୁଝାଇଦେଲେ ଓ ନିଜେ ଗାଁ ମାନଙ୍କୁ ଯାଇ ଏହା କାର୍ଯ୍ୟକାରୀ କରାଇଲେ ।

ଗାଁ ମାନ ପରବର୍ତ୍ତୀ ଦିନ ମାନଙ୍କରେ ଖାଲି ହୋଇଗଲା। ରାଜା ଓ ଦରବାର ଏପରି ତ୍ରସ୍ତ ହୋଇଯାଇଥିଲେ ସେମାନେ ଭୟରେ କିଛି କରିପାରୁନଥାନ୍ତି। ରାଜ ଦରବାରର କରୁଣ ଅବସ୍ଥା ଦେଖି ପ୍ରାଦେଶିକ ଶାସନ ମଧ୍ୟ ପୋଲିସ ସାହାଯ୍ୟ ପଠାଇଲା। ଇଂରେଜ ସରକାରଙ୍କ ତରଫରୁ ତୋପ କମାଣ ସୈନ୍ୟବଳ ପହଞ୍ଚିଲା। ସେତେବେଳକୁ ଗାଁ ସବୁ ଶୂନଶାନ୍। ପ୍ରତିହିଂସାମୂଳକ ପୁଲିସ ଦମନର କୌଣସି ଅବକାଶ ନଥିଲା।

ଓଡ଼ିଶା ସରକାରଙ୍କ ପୁଲିସ ଦ୍ୱାରା ମକଦ୍ଦମାର ତଦନ୍ତ ହେଲା। ଓଡ଼ିଶାର ଜଣେ ଆଇ.ସି.ଏସ୍. ଜଏଣ୍ଟ ମାଜିଷ୍ଟ୍ରେଟ୍ ବଳରାମ ଶିବରମଣ ମକଦ୍ଦମା ସେସନ୍ସ କୋର୍ଟକୁ ଦୌରା ସୁପର୍ଦ୍ଦ କଲେ। ବିହାରରୁ ଜଣେ ଜିଲ୍ଲା ଜଜ ଆସି ବିଚାର କଲେ। ହାଇକୋର୍ଟକୁ ଅପିଲ୍ ଗଲା। ସେଠାରେ ଦୁଇଜଣ ଆସାମୀ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କର ଫାଶୀଦଣ୍ଡ ଓ ଅନ୍ୟ କେତେଜଣଙ୍କର ଯାବଦ ଜୀବନ କାରାଦଣ୍ଡ ଆଦେଶ କାଏମ ରହିଲା। ହାଇକୋର୍ଟ ତାଙ୍କ ରାୟରେ ଲେଖିଲେ ଯେ ନିଜ ହତ୍ୟା ପାଇଁ ବେଜେଲଗେଟ୍‌ଙ୍କର ଅବିମୃଶ୍ୟକାରିତା ଅନେକାଂଶରେ ଦାୟୀ। ଏଥିପାଇଁ ଚାରିଆଡ଼େ ଫାଶୀଦଣ୍ଡ କୋହଳ କରିବାକୁ ଦାବୀ ହେଲା। ମାତ୍ର ତାହା ହେଲାନାହିଁ।

ବେଜେଲଗେଟ୍ ହତ୍ୟା ପରେ ପ୍ରଜାମଣ୍ଡଳ ନେତା ଓ ରେସିଡ଼େଣ୍ଟଙ୍କ ମଧ୍ୟରେ କଥାବାର୍ତ୍ତା ହେଲା। ପ୍ରତିହିଂସାମୂଳକ ଦମନ ନ ହେବା ଓ ପ୍ରଜାମାନେ ନିଜ ବାସସ୍ଥଳକୁ ଫେରିଯିବା ନିଷ୍ପତ୍ତି ହୋଇଥିଲା। ରଣପୁର ଶାସନରେ ଆମୂଳଚୂଳ ପରିବର୍ତ୍ତନ ହେଲା ରାଜା ଗାଦିଚ୍ୟୁତ ହେଲେ। କେନ୍ଦ୍ର ରାଜନୀତିକ ବିଭାଗ ଶାସନ ନିଜ ହାତକୁ ନେଇ ନିଜ ନିଯୁକ୍ତ ଦେଓ୍ୱାନ ପଠାଇଲେ। ଯୁବରାଜ ନାବାଳକ ଥିବାରୁ ରାଜମାତା ରିଜେଣ୍ଟ ଭାବରେ କାର୍ଯ୍ୟ କଲେ। ହରେକୃଷ୍ଣ ମହତାବଙ୍କୁ ଏହି ହତ୍ୟାକାଣ୍ଡର ମୁଖ୍ୟ ଅଭିଯୁକ୍ତ ଭାବରେ ଯୋଡ଼ିବାକୁ ଉଦ୍ୟମ ହେଉଥିଲା। ମାତ୍ର ସେ ସମୟରେ ଗଡ଼ଜାତ ମାନଙ୍କରେ ସମାଜସେବା କରୁଥିବା ଇଂରେଜ ମହିଳା ମିସ୍ ଆଗାଥା ହରିସନ ତାଙ୍କର ସେଠାରେ ଉପସ୍ଥିତି କାକତାଳୀୟ ବୋଲି ଓଡ଼ିଶା ଗଭର୍ଣ୍ଣରଙ୍କୁ ଦର୍ଶାଇବାରେ ତଦନ୍ତ ଭିନ୍ନ ମୋଡ଼ ନେଲା। ରଣପୁର ଆନ୍ଦୋଳନ ରାଜ୍ୟର ସମସ୍ତ ଦରବାରକୁ ତ୍ରସ୍ତ କରିଦେଲା ଓ ସେମାନେ ଅତି ବିଳମ୍ବରେ କାଳର ଗତି ନିରୂପଣ କରିବାରେ ସକ୍ଷମ ହେଲେ।





ରାଜା କିଶୋରଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ

# କିରୀଟରେ ନିପତନ ନୀଳଗିରି

ଗଡ଼ଜାତର ଅତ୍ୟାଚାରିତ ଲୋକଙ୍କ ସମ୍ବନ୍ଧରେ ଅବଗତ ହେବା ଉଦ୍ୟେମରେ ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ ନିଯୁକ୍ତ କମିଟି ଯେତେବେଳେ ବିଭିନ୍ନ ଗଡ଼ଜାତ ବୁଲିଲେ, ଲୋକଙ୍କ ମନରେ ଆଶା ଓ ଆନନ୍ଦର ସଞ୍ଚାର ହେଲା । ଶହ ଶହ, କେଉଁଠି ହଜାର ହଜାର ଲୋକ, ଆପତ୍ତି ଅଭିଯୋଗମାନ ଘେନି କମିଟି ଆଗରେ ପହଞ୍ଚିଲେ । କମିଟି ସେମାନଙ୍କ ଅତ୍ୟାଚାର ଆଗରେ ମୁଣ୍ଡ ନ ନୁଆଁଇବାକୁ ଓ ମନରେ ସାହସ ବାନ୍ଧିବାକୁ ବୁଝାଉ ଥାଆନ୍ତି । ଗଡ଼ଜାତମାନଙ୍କରେ ଏହା ଫଳରେ ବିଦ୍ରୋହର ହୁ ହୁ ନିଆଁ ଲାଗିଲା ପରି ଆନ୍ଦୋଳନ ଆରମ୍ଭ ହୋଇଗଲା - ପ୍ରଥମେ ନୀଳଗିରି । ଫକୀରମୋହନ ସେନାପତି ନିଜ ମେନେଜର ପଦରୁ ଯାଇଥିଲେ ଏହି ରାଜ୍ୟ ମେଳି ସମ୍ଭାଳି ନ ପାରିବା ଯୋଗୁ । ଏଥର ନୂଆ ହୋଇ ପ୍ରଜାମଣ୍ଡଳ ଗଢ଼ାଯାଇ ଶୃଙ୍ଖଳିତ ଭାବରେ ଆନ୍ଦୋଳନ ଚାଲିଥାଏ ।

ନୀଳଗିରି ବାଲେଶ୍ୱରକୁ ପାଖ। ବାଲେଶ୍ୱର ଦେଇ ସେଠାକୁ ଡାକ ଯାଏ। ବାଲେଶ୍ୱର ନ ଗଲେ ସେମାନେ ବାହାରକୁ ଯାଇପାରିବେ ନାହିଁ। ସ୍ୱେଚ୍ଛାଚାର ଶାସନର ପ୍ରତିରୋଧ ହେଲା। ଓକିଲ କୈଳାସଚନ୍ଦ୍ର ମହାନ୍ତି ନେତୃତ୍ୱ ନେଲେ। କୈଳାସଚନ୍ଦ୍ର ଗଡ଼ଜାତର ଲୋକ ଓ ମୋଗଲବନ୍ଦୀରେ ତାଙ୍କର ସୁନାମ ଥାଏ। ତାଙ୍କର ସାଙ୍ଗଠନିକ ଦକ୍ଷତା ମଧ୍ୟ ଉଚ୍ଚକୋଟୀର। ସେ ମୋଗଲ ବନ୍ଦୀରୁ ଓ ନିଯୁକ୍ତି କମିଟିର ଦମ୍ଭ ପାଇଲେ। ତାଙ୍କର ମନୋବଳ ବଢ଼ିଗଲା। ସେ ଦରବାର ବିରୁଦ୍ଧରେ ସଭା କଲେ। ଆନ୍ଦୋଳନର ପ୍ରତିବାଦରେ ଦରବାର, ଲୋକମାନଙ୍କୁ ଧରପଗଡ଼ କଲେ। ମାତ୍ର ସୀମାନ୍ତ ଏକ ଗ୍ରାମରେ କର୍ମୀମାନଙ୍କୁ ଆନ୍ଦୋଳନ ତାଲିମ ଦିଆଗଲା। ଏହି ସ୍ୱେଚ୍ଛାସେବକମାନେ ଲୋକଙ୍କ ମଧ୍ୟରେ ଅଭୂତ ଉତ୍ସାହ ଆଣିଦେଲେ। ଦରବାର ଶୋଭାଯାତ୍ରା ଓ ସଭା ଉପରେ ନିଷେଧାଜ୍ଞା ଜାରି କଲେ। ଲୋକେ ଏହାର ବିରୋଧ କରିବାରୁ କେତେ ଜଣଙ୍କୁ ଧରି ଜେଲ୍ ପଠାଗଲା। ଜୋରିମାନା ମଧ୍ୟ ହେଲା। ଲୋକେ ଜୋରିମାନା ଦେବାକୁ ମନା କଲେ। ସେମାନଙ୍କର ସମ୍ପତ୍ତି କୋରକ କରି ଏହା ଅସୁଲ ନିମିତ୍ତ ଉଦ୍ୟମ ହେଲା ମାତ୍ର ଲୋକେ ଏପରି ସଙ୍ଗଠିତ ହୋଇଥାଆନ୍ତି ଯେ ସେମାନେ ଗାଁକୁ ଘେରି ରହିଲେ। ନିଲାମ କରିବାକୁ ଦରବାରର ଲୋକଙ୍କୁ ଗାଁରେ ପୁରାଇ ଦେଲେ ନାହିଁ। ରାଜା ଓଡ଼ିଶା ସରକାରଙ୍କ ଠାରୁ ପୁଲିସ ସାହାଯ୍ୟ ମାଗିଲେ। କଂଗ୍ରେସ ମନ୍ତ୍ରୀମଣ୍ଡଳ ଏଥିପାଇଁ ସାହାଯ୍ୟ ଦେବାକୁ ମନାକଲେ। ପଲଟିକାଲ ଏଜେଣ୍ଟ ମୟୂରଭଞ୍ଜରୁ କିଛି ପୋଲିସ ସାହାଯ୍ୟ ଦେଲେ। ଆନ୍ଦୋଳନର ଗୁରୁତ୍ୱ ଅବଗତ ହୋଇ ନିଜେ ପଲିଟିକାଲ ଏଜେଣ୍ଟ ରାଜ୍ୟକୁ ଆସିଲେ। ବନମାଳୀ ଦାସ ଏହାର ପରିଚାଳକ ଥିଲେ। ସେ ପରେ ବ୍ୟବସ୍ଥାପକ ହୋଇଥିଲେ। ବନମାଳୀଦାସଙ୍କୁ ଡ଼ାକି ସାହେବ ପଚାରିଲେ କଣ ସେମାନେ ଚାହୁଁଛନ୍ତି। ଜୋରିମାନା ଆଦାୟ ରଦ୍ଦ କରାଯାଉ ଓ କୋରକ ବନ୍ଦ ହେଉ ବୋଲି ସେ ଦାବୀ କଲେ। ଅନ୍ୟପକ୍ଷରୁ କୁହାଗଲା ଲୋକେ ଆଗେ ହଟି ଯାଆନ୍ତୁ ପୁଲିସ ହଟିଯିବ। ବହୁ ଆଲୋଚନା ପରେ ଉଭୟ ଏକସାଙ୍ଗରେ ହଟିଯିବା ଠିକ୍ ହେଲା। ସେଇଆ ମଧ୍ୟ ହେଲା। ପଲିଟିକାଲ ଏଜେଣ୍ଟ ଆନ୍ଦୋଳନର ଏହି ଶୃଙ୍ଖଳା ଦେଖି ଖୁସି ହେଲେ। ମାତ୍ର ଆଇନ୍ ଅମାନ୍ୟ ଆନ୍ଦୋଳନ ଚାଲିଥାଏ। ପ୍ରତିଦିନ ସ୍ୱେଚ୍ଛାସେବକ ମାନେ ଯାଉଥାନ୍ତି। ଥରେ ସେମାନଙ୍କ ଉପରେ ଏପରି ମାଡ଼ ହେଲା ଯେ ବହୁଲୋକ ଆହତ ହେଲେ। ଲୋକେ ଭୟରେ ପଳାଇଲେ, ପରଦିନ ଓକିଲ କୈଳାସଚନ୍ଦ୍ର ନିଜେ ଜନତାର ନେତା ହୋଇ ବାହାରିଲେ ଆନ୍ଦୋଳନ ଚଳେଇବାକୁ। ତାଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳନ କରି ମହତାବ ବାଲେଶ୍ୱରରୁ ତାଙ୍କ ପାଖକୁ ଯାଉଥିବାବେଳେ ବାଟରେ ବାଲେଶ୍ୱର ଜିଲ୍ଲା

ମାଜିଷ୍ଟ୍ରେଟ୍ ସୋଲମନ ସାହେବଙ୍କୁ ଭେଟିଲେ। ସେ ଜଣେ ଇହୁଦୀ ଓ ଜାତୀୟତାବାଦୀ ଆଇସିଏସ୍ ହାକିମ ଥିଲେ। ଏହାର ମୀମାଂସା ନ ହେଲେ ହିଂସାତ୍ମକ ଆନ୍ଦୋଳନ ହେବ ଓ ବହୁଲୋକ ମରିବେ ବୋଲି ସେ ମହତାବଙ୍କୁ ଶୁଣାଇଲେ। ସେ ମଧ୍ୟ ପ୍ରତିଶ୍ରୁତି ଦେଲେ ଯେ ଯଦି ମୀମାଂସା ନହୁଏ ସେ ଆନ୍ଦୋଳନକାରୀଙ୍କୁ ସାହାଯ୍ୟ ଦେବେ। ମହତାବ ବାଟରେ ସାତ ଆଠ ହଜାର ଲୋକ ଯାଉଥିବା ଦେଖି ସେମାନଙ୍କୁ ଅଟକାଇ ସେଇଠି ସଭା କଲେ। ଲୋକଙ୍କୁ ବୁଝାଇ ଦିଆଗଲା ଆନ୍ଦୋଳନ ଆକାର ଯେପରି ହେଉଛି ସେଥିରେ ପଛରେ ଆମକୁ କେହି ଯେପରି ଦୋଷ ନ ଦିଅନ୍ତି ସେଥିପାଇଁ ପଦକ୍ଷେପ ନେବା ଦରକାର। ରାଜାଙ୍କୁ ପଚାରିବା ସେ ଦାବୀ ମାନିବେ କି ନା। ମାନିଗଲେ ଭଲ ନହେଲେ ଶେଷ ପର୍ଯ୍ୟନ୍ତ ଲଢ଼ିବାକୁ ହେବ। ମହତାବ କୈଳାସବାବୁ ଓ ଅନ୍ୟମାନଙ୍କୁ ସେମିତି ବୁଝାଇ ମୀମାଂସା ପାଇଁ ରାଜି କରାଇଲେ। ରାଜାଙ୍କୁ ଏହି ମର୍ମରେ ଚିଠି ଲେଖାଗଲା ସେଦିନ ଆନ୍ଦୋଳନ ବନ୍ଦ ରହିଲା। ଚିଠି ନକଲ ବାଲେଶ୍ୱରର କଲେକ୍ଟର ସୋଲମନ ସାହେବଙ୍କୁ ଦିଆଗଲା ସେଦିନ। ପଲଟିକାଲ ଏଜେଣ୍ଟ ନୀଳଗିରି ଆସିବାର ଥିଲା। ଟ୍ରେନରୁ ଓହ୍ଲାଇବା ପରେ ଯେପରି ଏ ଚିଠି ତାଙ୍କୁ ଦିଆଯାଏ ତା'ର ବ୍ୟବସ୍ଥା ମଧ୍ୟ ହେଲା। ସେଦିନ ବେଜେଲଗେଟ୍‌ଙ୍କୁ ସୋଲମନ ତାଙ୍କ ଘରକୁ ନିମନ୍ତ୍ରଣ କରିଥିଲେ। ମହତାବଙ୍କୁ ମଧ୍ୟ ନିମନ୍ତ୍ରଣ କଲେ। ରାଜା ଓ ପ୍ରଜା ଉଭୟ ପକ୍ଷର ସମସ୍ୟାମାନ ଆଲୋଚନା ହେଲା। କଥାବାର୍ତ୍ତାରେ ରାଜାଙ୍କ ତରଫରୁ ଦେଓ୍ୱାନ, ପ୍ରଜାଙ୍କ ତରଫରୁ ମହତାବ ଓ କୈଳାସବାବୁ ଆଲୋଚନାରେ ଭାଗ ନେଲେ। ବହୁ ବାଧାବିଘ୍ନ ସତ୍ୱେ ମୀମାଂସା ହେଲା ରାଜା ବନ୍ଦୀମାନଙ୍କୁ ଛାଡ଼ି ଦେବେ। ପ୍ରଜାମାନେ ରାଜାଘର ବାସନ୍ଦ ମଧ୍ୟ ଉଠାଇନେବେ। ଦୁଇକଥା ଏକ ସମୟରେ ହେବ। ପରଦିନ ଏହା ପାଳିତ ହେଲା। ଆନ୍ଦୋଳନ ଉପରେ ଲୋକମାନଙ୍କର ଭରସା ରହିଲା। ଦରବାର ମଧ୍ୟ ଲୋକଶକ୍ତିର କ୍ଷମତା ବୁଝି ପାରିଲେ। ମାତ୍ର ପରବର୍ତ୍ତୀ ଆନ୍ଦୋଳନ ହେଲା ୧୯୪୭ରେ। ଭାରତ ସ୍ୱାଧୀନ ହେବା ପରେ। ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ। ଇଂରେଜ ସରକାରର ବଡ଼ଲାଟ ଲର୍ଡ଼ ୱାଭେଲ ହିନ୍ଦୁ ମୁସଲମାନ ସମସ୍ୟାର ସମାଧାନ ହେଲେ ମଧ୍ୟ ଆଦିବାସୀ ସମସ୍ୟା ରହିବ ଏହି ଧାରଣା ଦେଇଥାନ୍ତି। ସେତେବେଳେ ଆଦିବାସୀମାନଙ୍କ ଉପରେ ଗବେଷଣା କରି ଅନେକ ପୁସ୍ତକ ଲେଖିଥିବା ନୃତତ୍ତ୍ୱବିଶାରଦ ସାହେବ ଭେରିଅର (Verrier Elwin) ଏଲଉଇନ୍ ମଧ୍ୟ ଆଦିବାସୀମାନେ ସାଧାରଣ ଲୋକଙ୍କ ଠାରୁ ପୃଥକ ଏ ଧାରଣା ସୃଷ୍ଟି କରିଥାଆନ୍ତି। 'ଖ'ଶ୍ରେଣୀ ନୀଳଗିରି ରାଜା କିଶୋରଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ। ରାଜ୍ୟର ଲୋକସଂଖ୍ୟା ୭୩ହଜାର ମଧ୍ୟରୁ

ଶତକଡ଼ା ୧୫ ଆଦିବାସୀ ଥିଲେ। ସେମାନେ ଧରି ନେଇଥାଆନ୍ତି ଯେ ରାଜ୍ୟର ସବୁ ଜମି ସେମାନଙ୍କର। ସେମାନେ ଜଙ୍ଗଲ ସଫା କରି ଜମି ସମତଳ କରି ଚାଷ କଲେ। ପରେ ସାଧାରଣଲୋକ ତାଙ୍କ ଜମିରୁ ତାଙ୍କୁ ବେଦଖଲ କଲେ। ସେମାନେ ନିଜ ଜମି ପୁଣି ମାଡ଼ି ବସିବାକୁ ଚାହୁଁଥାଆନ୍ତି। ନୀଳଗିରିରାଜା କିଶୋରଚନ୍ଦ୍ରଙ୍କ ଅପାରଗତା ନିମିତ୍ତ ପଲିଟିକାଲ ଡିପାଟମେଣ୍ଟ ତାଙ୍କୁ କ୍ଷମତାଶୂନ୍ୟ କରି ୧୯୪୨ରୁ ୧୯୪୬ ଯାଏ ରାଜ୍ୟ ବାହାରେ ରଖିଥିଲେ। ନୀଳଗିରିର ଏହି ଆଦିବାସୀମାନେ ଦେଶ ସ୍ୱାଧୀନ ହେବା ପରେ କମ୍ୟୁନିଷ୍ଟମାନଙ୍କ ପ୍ରୋତ୍ସାହନ ପାଇଁ ଆନ୍ଦୋଳନ ଆରମ୍ଭ କରିଥାଆନ୍ତି। କମ୍ୟୁନିଷ୍ଟମାନେ ଏଥିରୁ ଫାଇଦା ଉଠାଇବା ମତଲବରେ ଥାଆନ୍ତି। ସ୍ୱାଧୀନ ଦେଶର ରାଜଦରବାର ମଧ୍ୟ ନିଜର ମତିଗତି ବଦଳାଇ ନଥାନ୍ତି। ଏହି ଆଦିବାସୀ ଆନ୍ଦୋଳନକୁ ରାଜାଙ୍କର ସମର୍ଥନ ମିଳିଲା। ଆନ୍ଦୋଳନକାରୀମାନେ ଅଣ-ଆଦିବାସୀଙ୍କର ଘରପୋଡ଼ି ଦେଲେ। ଜମିରୁ ଫସଲ ଜବରଦସ୍ତ କାଟି ନେଇଗଲେ। ଏମିତି ନାନା ପ୍ରକାର ଅତ୍ୟାଚାର କଲେ। ଭୟରେ ଅଣଆଦିବାସୀମାନେ ବାଲେଶ୍ୱର ଜିଲ୍ଲାକୁ ପଳାଇ ଆସିଲେ। ଏହା ସେଠାରେ ଆଇନ୍ ଶୃଙ୍ଖଳା ସୃଷ୍ଟି କଲା। ଓଡ଼ିଶାର ପ୍ରଧାନମନ୍ତ୍ରୀ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ସହିତ ପରାମର୍ଶ କଲେ। ଆନ୍ଦୋଳନ ଫଳରେ ପ୍ରାଦେଶିକ ଶାନ୍ତି ଶୃଙ୍ଖଳା ବ୍ୟାହତ ହେବ। ତେଣୁ ଏହି ଆନ୍ଦୋଳନ ଆୟତ୍ତ କରାଯାଉ। ପାର୍ଶ୍ୱବର୍ତ୍ତୀ ରାଜ୍ୟରେ ଶାନ୍ତି ଶୃଙ୍ଖଳା ଭଙ୍ଗର କାରଣ ହେଲେ ସେ ରାଜ୍ୟକୁ ପ୍ରାଦେଶିକ ଶାସନ ଦଖଲକୁ ନେଇପାରେ ବୋଲି ପ୍ରଧାନମନ୍ତ୍ରୀ ବୁଝାଇଲାରୁ କେନ୍ଦ୍ର କୌଣସି ନିର୍ଦ୍ଦେଶ ଦେବାକୁ ସ୍ୱରାଷ୍ଟ୍ରମନ୍ତ୍ରୀ ମନା କଲେ ଓ ନିଜ ଦାୟିତ୍ୱରେ ଯାହା ଉଚିତ କରିବାକୁ ପରାମର୍ଶ ଦେଲେ। ଓଡ଼ିଶା ଫେରି ଆସି ପ୍ରଧାନମନ୍ତ୍ରୀ ମହତାବ ଅତି ସନ୍ତର୍ପଣରେ ଏ ବିଷୟରେ କାର୍ଯ୍ୟାନୁଷ୍ଠାନ ସମ୍ବନ୍ଧରେ ଚିଫ୍ ସେକ୍ରେଟାରୀ ଭବାନୀ ଚରଣ ମୁର୍ଖାର୍ଜୀ, ରାଜସ୍ୱ କମିଶନର ନୀଳମଣି ସେନାପତି, ପୁଲିସ ବିଭାଗ ମୁଖ୍ୟ, ଜେ.ଇ. ପିଆର-ମ୍ୟାନଙ୍କ ସହିତ ଆଲୋଚନା କଲେ। ସେତେବେଳକୁ ଗଢ଼ା ଯାଇଥିବା ପୂର୍ବାଞ୍ଚଳ ଗଡ଼ଜାତ ୟୁନିୟନର ଏକ ପୋଲିସ ଫୋର୍ସ ଥାଏ। ସେମାନଙ୍କର ଏକ ବାଟେଲିୟନ ଆସି ନୀଳଗିରି ରାଜପ୍ରସାଦକୁ ଜଗିଥାଆନ୍ତି। ଆଇ.ଜି, ପିଆର-ମ୍ୟାନ ଜଣେ ଆଇ.ପି ଗୋରା ସାହେବ। ଦେଶ ସ୍ୱାଧୀନ ହେବା ପରେ ଭାରତ ପ୍ରତି ଆନୁଗତ୍ୟ ଜଣାଇ ସେ ଚାକିରୀ କରୁଥାଆନ୍ତି। ସେ କଲିକତାରେ ଏହି ଫୋର୍ସର ଆଇ.ଜିଙ୍କ ସହିତ କଥାବାର୍ତ୍ତା କରି ସେମାନଙ୍କର ସୈନିକ ସଂଖ୍ୟା, ବନ୍ଧୁକ, ଗୋଳାବାରୁଦ ଓ ପୁଲିସ୍ ପାଇଥିବା ଟ୍ରେନିଂ ଆଦି ତଥ୍ୟ ସଂଗ୍ରହ କରି ରାଜ୍ୟ ସରକାରଙ୍କୁ ଜଣାଇଲେ। ନୀଳଗିରିର କେହି

ଯେପରି କଲିକତା ଯିବା ଆସିବା କରିପାରିବେନାହିଁ ତାହା ମଧ୍ୟ ପିଆର-ମ୍ୟାନ ଜଗିଦେଲେ। ଦରବାର ଡାକ ମଧ୍ୟ ଡାକ ବିଭାଗରେ ଯାଞ୍ଚ କରାଯାଉଥାଏ। ନୀଳଗିରି ଦେୱାନ ଥିଲେ ଅଦ୍ୱୈତ ଚରଣ ମହାନ୍ତି ଓ ପୋଲିସ୍ ଇନ୍ସପେକ୍ଟର ଜଣେ ସ୍ଥାନୀୟ ପୁଲିସ ମୁଖ୍ୟ ଥାଆନ୍ତି। ସେମାନଙ୍କୁ ବାଲେଶ୍ୱର ଡକାଇ ରାଜ୍ୟ ଦଖଲ କରାଗଲେ ସେମାନଙ୍କୁ ଚାକିରୀର ସୁରକ୍ଷା ପ୍ରତିଶ୍ରୁତି ଦିଆଗଲା। ରାଜାଙ୍କ ପାଖକୁ ଏକ ବାର୍ତ୍ତା ପଠାଗଲା। ତାଙ୍କୁ ବନ୍ଧୁ ଓ ଓଡ଼ିଶା ପ୍ରଧାନମନ୍ତ୍ରୀଙ୍କ ବିଶ୍ୱସ୍ତ ଜଣେ ସାମ୍ବାଦିକଙ୍କ ଜରିଆରେ ଖବର ପଠାଗଲା। ବର୍ତ୍ତମାନ ପରିସ୍ଥିତିରେ ଅରାଜକତା ଲୋପ ଓ ଅଯଥା ରକ୍ତପାତ ଏଡ଼ାଇବାକୁ ସେ ଯଦି ରାଜ୍ୟ ଶାସନ ଓଡ଼ିଶା ସରକାରଙ୍କୁ ଅର୍ପଣ କରନ୍ତି ତେବେ ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍ ତାଙ୍କ ଦେୱାନ ଭାବରେ କାର୍ଯ୍ୟ କରିବେ। ପୂର୍ବ ନିର୍ଦ୍ଧାରଣ ଅନୁସାରେ ଓଡ଼ିଶାର ରାଜସ୍ୱ କମିଶନର ନୀଳମଣି ସେନାପତିଙ୍କ ନେତୃତ୍ୱରେ ୧୯୪୭ ନଭେମ୍ବର ୧୫ ତାରିଖରେ ଓଡ଼ିଶା ମିଲିଟାରୀ ପୋଲିସ ନୀଳଗିରି ଭିତରକୁ ମାର୍ଚ୍ଚ କରି ପଶିଲେ। ସେମାନଙ୍କୁ କମ୍ୟୁନିଷ୍ଟମାନେ ମଧ୍ୟ ସମ୍ବର୍ଦ୍ଧନା ଦେଲେ। ଦରବାର ଶାସନ ଶେଷ ହୋଇ ଯାଉଛି ଜାଣି ଲୋକମାନଙ୍କର ଆନନ୍ଦର ସୀମା ନଥାଏ। ସେମାନେ ମଧ୍ୟ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ। ଆଦିବାସୀମାନେ ରାଜାଙ୍କ ଶରଣ ପଶିଲେ। ରାଜା କଲିକତାରୁ ସାହାଯ୍ୟ ମାଗି ଥିଲେ। ସେମାନେ ତାଙ୍କ ଆଇଜିଙ୍କ ହୁକୁମ ପାଇଲେ ଯାହା କରିବେ ବୋଲି କହିଲେ। ସେମାନଙ୍କ ପାଖରେ ମଧ୍ୟ ଯଥେଷ୍ଟ ପୁଲିସ, ବନ୍ଧୁକ ଓ ଗୋଳାବାରୁଦ ନଥିଲା। ଓଡ଼ିଶା ମିଲିଟାରୀ ପୋଲିସ ଧରି ସେନାପତି ନୀଳଗିରି ଗଡ଼ରେ ପହଞ୍ଚିଲେ। ଦେୱାନ ଓ ପୋଲିସ ଇନ୍ସପେକ୍ଟର କେହି ନଥିଲେ। କଚେରୀରେ ଅମଲାମାନେ ମଧ୍ୟ କେହି ନଥାନ୍ତି। ସେନାପତି ଅନୁମତି ନେଇ ରାଜାଙ୍କ ସହିତ ସାକ୍ଷାତ କଲେ। ଅରାଜକତାର ପୂର୍ଣ୍ଣଚିତ୍ର ଦେଲେ। ଆନ୍ଦୋଳନରେ କ୍ଷତିଗ୍ରସ୍ତ ହୋଇଥିବା ଗାଁ ଗୁଡ଼ିକର ଫଟୋ ସେ ନେଇଥିଲେ। ସେ ସବୁ ରାଜାଙ୍କୁ ଦେଖାଇଲେ। ରାଜା ଏସବୁ ତାଙ୍କ ନଜରକୁ ଆସି ନଥିବା କହିଲେ। ସେନାପତି ସୂଚନା ଦେଲେ ରାଜ୍ୟ ଶାସନ ସେ ଓଡ଼ିଶା ସରକାରଙ୍କୁ ଦେଇଦେଲେ ଉଭୟ ରାଜା ଓ ପ୍ରଜାଙ୍କର ମଙ୍ଗଳ ହେବ। କିଛି ସମୟ ଚିନ୍ତା କରି ରାଜା ରାଜି ହେଲେ। ସାଙ୍ଗେ ସାଙ୍ଗେ ସେନାପତି ସାହେବ ଶାସନ ପରିଚାଳନା ନିମିତ୍ତ ଜଣେ ସବଡ଼ିଭିଜନାଲ ଅଫିସର ଓ ଜଣେ ପୋଲିସ ଇନ୍ସପେକ୍ଟରଙ୍କୁ ନିଯୁକ୍ତି ଦେଲେ। ସେମାନେ ରାଜ୍ୟ ଦାୟିତ୍ୱରେ ରହିଲେ। ସେମାନଙ୍କୁ ସାହଯ୍ୟ ଦେବାକୁ କିଛି ପୁଲିସ ବାହିନୀ ରହିଲେ । ସେନାପତି ଘୋଷଣା କଲେ ଯେ ରାଜ୍ୟ ଶାସନ ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍ ଓଡ଼ିଶା ସରକାର ତରଫରୁ ନେଇଛନ୍ତି। ରାଜା ଏଥିପାଇଁ

# କିଛି 'କ' ଶ୍ରେଣୀ ରାଜା



ମହାରାଜା ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜଦେଓ
(ମୟୁରଭଞ୍ଜ)



ମହାରାଜା ସାର ରାଜେନ୍ଦ୍ର ନାରାୟଣ ସିଂଦେଓ
(ପାଟଣା)

## କିଛି 'କ' ଶ୍ରେଣୀ ରାଜା



ରାଜା ଭାନୁଗଙ୍ଗ ତ୍ରିଭୂବନ ଦେବ
(ବାମଣ୍ଡାର ଶେଷ ମହାରାଜା)



ମହାରାଜା ପ୍ରତାପକେଶରୀ ଦେଓ
(କଳାହାଣ୍ଡୀ ଶେଷ ମହାରାଜା)



ମହାରାଜା ସୁଧାଂଶୁ ଶେଖର ସିଂଦେଓ
(ସୋନପୁର ଶେଷ ମହାରାଜା)



ରାଜା ବୀରଉଦ୍ଦିତ ପ୍ରତାପ ଶେଖର ଦେଓ
(ଗାଙ୍ଗପୁର ଶେଷ ମହାରାଜା)

ଅନୁରୋଧ କରିଥିଲେ। ସମସ୍ତେ ଶାନ୍ତିପୂର୍ଣ୍ଣ ଭାବରେ ଚାଲନ୍ତୁ ଓ ଯେଝା କାମ ନିଜ ଦାୟିତ୍ୱରେ କରନ୍ତୁ। ରାଜାଘର ସେବା ଲୋକେ ପୂର୍ବପରି କରନ୍ତୁ। ଆନ୍ଦୋଳନ ଦିନ ଓଡ଼ିଶାର ପ୍ରଧାନମନ୍ତ୍ରୀ ମହତାବ ଦିଲ୍ଲୀରେ ଥିଲେ । ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏହି କାର୍ଯ୍ୟ ତତ୍ତ୍ୱବଧାନ କରୁଥିଲେ। ମହତାବଙ୍କୁ ବେତାରଯୋଗେ ଏହି ଦିନର ବିବରଣୀ ଜଣାଇ ଦିଆଗଲା। ସେ ପଟେଲଙ୍କୁ ଜଣାଇଲେ। ସଚିବ ଭି.ପି.ମେନନ ମଧ୍ୟ ଜାଣିଲେ। ଆନନ୍ଦରେ ପଟେଲ ମହତାବଙ୍କୁ କୁଣ୍ଢେଇ ପକାଇଲେ।

ଭାରତ ସରକାରଙ୍କ ପାଖରେ ରାଜନ୍ୟ ମଣ୍ଡଳୀ ତରଫରୁ ନୀଳଗିରିରେ ଓଡ଼ିଶା ସରକାର ଅତ୍ୟାଚାର କଲେ ବୋଲି ଅଭିଯୋଗ ହୋଇଥାଏ । ସର୍ଦ୍ଦାର ପଟେଲ ମିଶ୍ରଣ ବିଷୟ ମହାତ୍ମାଗାନ୍ଧିଙ୍କୁ ଜଣାଇବାକୁ ମହତାବଙ୍କୁ ପରାମର୍ଶ ଦେଲେ । ଭାରତ ବିଭାଜନ ଓ ହିଂସାକାଣ୍ଡ ଯୋଗୁ ଗାନ୍ଧିଜୀ ବିବ୍ରତ ଥାଆନ୍ତି । ସେ କହିଲେ ଗଡ଼ଜାତ ମିଶ୍ରଣ ସପକ୍ଷରେ ଅନ୍ତତଃ ଦୁଇଜଣ ରାଜାଙ୍କର ସମ୍ମତି ଆଣିଲେ ସେ ଏହା ସପକ୍ଷରେ କହିବେ । ମହତାବ ଓଡ଼ିଶାରୁ ହିନ୍ଦୋଳ ରାଜା ଓ ରଣପୁରର ରାଜାମାତାଙ୍କର ସମ୍ମତିପତ୍ର ନେଇ ଗାନ୍ଧିଜିଙ୍କୁ ଦେଖାଇଲେ । ୧୩ ତାରିଖ ଡିସେମ୍ବର ଦିନ କଟକରେ ରାଜାମାନଙ୍କୁ ଡାକି ଆଲୋଚନା ପାଇଁ ଭାରତ ସରକାରଙ୍କ ପକ୍ଷରୁ ନିଷ୍ପତ୍ତି ହେଲା । ସେଦିନ 'କ' ଶ୍ରେଣୀ ଏଗାର ବ୍ୟତୀତ 'ଖ' ଶ୍ରେଣୀ ଓ 'ଗ' ଶ୍ରେଣୀ ରାଜ୍ୟ ମଧ୍ୟରୁ ୧୨ ଜଣ ଯୋଗଦାନ କଲେ । ସେମାନେ ହେଲେ – 'କ' ଶ୍ରେଣୀ : ୧) ମହାରାଜା ସାର ପ୍ରତାପଚନ୍ଦ୍ର ଭଂଜଦେଓ, ୨) ମହାରାଜା ସାର ରାଜେନ୍ଦ୍ର ନାରାୟଣ ସିଂହଦେପ, ପାଟଣା, ୩) ମହାରାଜା ପ୍ରତାପକେଶରୀ ଦେଓ, କଳାହାଣ୍ଡି, ୪) ମହାରାଜା ସୁଧାଂଶୁ ଶେଖର ସିଂହଦେଓ, ସୋନପୁର ୫) ରାଜା ନାରାୟଣ ପ୍ରସାଦ ଦେଓ, ବଉଦ, ୬) ମହାରାଜା ଶଙ୍କର ପ୍ରତାପ ମହୀନ୍ଦ୍ର ବାହାଦୁର, ଢେଙ୍କାନାଳ, ୭) ରାଜା ବୀର ଉଦୀତ ପତାପ ଶେଖର ଦେଓ, ଗାଙ୍ଗପୁର, ୮) ରାଜା ଆଦିତ୍ୟ ପ୍ରତାପ ସିଂହଦେଓ, ସରେଇକଳା, ୯) ରାଜା ବଳଭଦ୍ର ନାରାୟଣ ଭଂଜଦେଓ, କେନ୍ଦୁଝର, ୧୦) ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ, ବାମଣ୍ଡା, ୧୧) ରାଜା କୃଷ୍ଣଚନ୍ଦ୍ର ସିଂହ ମାନ୍ଧତା, ନୟାଗଡ଼ ତରଫରୁ ତାଙ୍କ ଭାଇ ବୃନ୍ଦାବନ ସିଂହ।

'ଖ' ଓ 'ଗ' ଶ୍ରେଣୀ : ୧) ରାଜା ବ୍ରଜେନ୍ଦ୍ର ଚନ୍ଦ୍ର ବ୍ରଜଧର ନରେନ୍ଦ୍ର ମହାପାତ୍ର, ରଣପୁର, ୨) ରାଜା ଶ୍ରୀରାମଚନ୍ଦ୍ର ସିଂହଦେଓ, ଖରସୁଆଁ, ୩) ରାଜା ହରିହର ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ, ଖଣ୍ଡପଡ଼ା, ୪) ରାଜା ନାରାୟଣ ଚନ୍ଦ୍ର ବୀରବର ମଙ୍ଗରାଜ ମହାପାତ୍ର, ବଡ଼ମ୍ବା, ୫) ରାଜା ବାହାଦୁର ଅନନ୍ତନାରାୟଣ ମାନସିଂହ ହରିଚନ୍ଦନ ମହାପାତ୍ର,

ନରସିଂହପୁର । ୬) ରାଜା ବାହାଦୁର ନବକିଶୋର ଚନ୍ଦ୍ର ମର୍ଦ୍ଦରାଜ ଜଗଦେବ, ହିନ୍ଦୋଳ, ୭) ରାଜା ଶ୍ରୀକରଣ ରାଧାନାଥ ବେବର୍ତ୍ତା ପଟ୍ଟନାୟକ, ଆଠଗଡ଼, ୮) ରାଜା ଶରତଚନ୍ଦ୍ର ମୁନିପାଲ, ପାଲଲହଡ଼ା, ୯) ରାଜା ବୀରଚନ୍ଦ୍ର ଯଦୁମଣି ଦେବ ଜେନାମଣି, ରେଢ଼ାଖୋଲ, ୧୦) ରାଜା କିଶୋର ଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ, ନୀଳଗିରୀ, ୧୧) ରାଜା ବାହାଦୁର କିଶୋର ଚନ୍ଦ୍ର ଦେଓଭଞ୍ଜ, ଦଶପଲ୍ଲା, ୧୨) ରାଜା ହୃଦୟଚନ୍ଦ୍ର ଦେଓ ବୀରବର ହରିଚନ୍ଦନ, ତାଳଚେର । ଆଠମଲ୍ଲିକ ଓ ତିଗିରିଆ ରାଜା ଅସୁସ୍ଥତା ବଶତଃ ଅନୁପସ୍ଥିତ ଥିଲେ ।

ପ୍ରଥମେ 'ଖ' ଓ 'ଗ' ଶ୍ରେଣୀ ରାଜାମାନଙ୍କୁ ଏକାଠି ଡକାଯାଇ ସେମାନଙ୍କର ମିଶ୍ରଣ ନିମିତ୍ତ ସମ୍ମତି ନିଆଗଲା । ସର୍ଦ୍ଦାରପଟେଲ ଏକ ପାରିବାରିକ ସମସ୍ୟା ଭାବରେ ଏହାର ସମାଧାନ କରିବାକୁ ବୁଝାଇ ଦେଲେ । ସେମାନଙ୍କର ହାତପାଣ୍ଡି ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ସୁରକ୍ଷିତ ରହିଲା । ଆଲୋଚନା ସମୟରେ ରଣପୁରର ସଦ୍ୟ କ୍ଷମତାପ୍ରାପ୍ତ ରାଜା ସେମାନେ ପ୍ରଜାମାନଙ୍କ ସହିତ ଆଲୋଚନା କରି ନିଷ୍ପତ୍ତି ନେବାକୁ ସମୟ ଚାହିଁବାରୁ ସର୍ଦ୍ଦାରପଟେଲ ବିରକ୍ତି ପ୍ରକାଶ କଲେ । ଯେଉଁ ପ୍ରଜାମାନେ ବର୍ଷବର୍ଷ ଧରି ଅତ୍ୟାଚାରିତ ହୋଇ ରାଜାମାନଙ୍କ ବିରୋଧରେ ଆନ୍ଦୋଳନ ଚଳାଇ ଅଛନ୍ତି ସେହି ପ୍ରଜାମାନଙ୍କ ନାମରେ ରାଜାମାନେ କିଛି କହିବାର ମୁହଁ ସେମାନଙ୍କର ନାହିଁ । ଏହା ତାଙ୍କୁ ନୀରବ କଲା । କେତେକ ରାଜ୍ୟର ପ୍ରଜାମଣ୍ଡଳ ଶାସନ ଭାର ସେମାନଙ୍କୁ ଦିଆଯିବା ଦାବି ଅଗ୍ରାହ୍ୟ କରି ସର୍ଦ୍ଦାରପଟେଲ କହିଲେ ଚୋରଙ୍କଠାରୁ ରାଜ୍ୟ ନେଇ ମୁଁ ଡକାୟତଙ୍କ ହାତରେ ରାଜ୍ୟ ଦେବି ? ଅବଶ୍ୟ ଏହି ମନ୍ତବ୍ୟ ପ୍ରଜାମଣ୍ଡଳକୁ ଦୁଃଖ ଦେଇଥିଲା ।

୧୩ ତାରିଖ ଉପରବେଳା 'କ' ଶ୍ରେଣୀ ରାଜାମାନଙ୍କ ସହିତ ପୁଣି ଆଲୋଚନା ହେଲା । ପାଟଣା ମହାରାଜ ସେମାନଙ୍କର ମୁଖପାତ୍ର ଓ ନେତା ଥିଲେ । ସେମାନଙ୍କର ପୂର୍ବରାଜ୍ୟ ଇଉନିଅନ ୧୯୪୭ ଅପ୍ରେଲରୁ କାର୍ଯ୍ୟକରୁଥିଲା । ମାତ୍ର ଭାରତ ସରକାରଙ୍କର ସମ୍ମତି ପାଇନଥାଏ । ପାଟଣା ମହାରାଜା, ପ୍ରଦେଶ ଓ ରାଜ୍ୟମାନଙ୍କ ମଧ୍ୟରେ ସଂଘୀୟ ବ୍ୟବସ୍ଥା ସପକ୍ଷରେ ଥିଲେ, ସଚିବ ମେନନ ଏହାର ଅସୁବିଧା ଓ ଅବାସ୍ତବତା ବୁଝାଇ ଦେଲେ । ଉପରବେଳା ବୈଠକରେ କିଛି ନିଷ୍ପତ୍ତି ହେଲା ନାହିଁ । ମେନନ ଢେଙ୍କାନାଳ ରାଜାଙ୍କୁ ବିଶ୍ୱାସରେ ନେଇ ପ୍ରଥମେ ତାଙ୍କଠାରୁ ସମ୍ମତି ନେଲେ । ସେ ନିଜ ରାଜ୍ୟରେ ଅପ୍ରିୟ ଥିଲେ । ପ୍ରଜାମଣ୍ଡଳ ଆନ୍ଦୋଳନ ଦମନ ତାଙ୍କ ପକ୍ଷରେ ସମ୍ଭବପର ନଥିଲା । ହାତପାଣ୍ଡି ଆଦି ସୁରକ୍ଷିତ ହେବା ସୁନିଶ୍ଚିତ ଜାଣି ସେ ନିଜର ଓ ଅନ୍ୟ ରାଜାମାନଙ୍କର ସମ୍ମତି ଆଣିଲେ ଓ ଶେଷରେ ସମସ୍ତେ ମିଶ୍ରଣକୁ ସମ୍ମତି ହେଲେ । ସଚିବ ମେନନ ପାଟଣା



'କ' ଶ୍ରେଣୀ ରାଜାମାନେ ମିଶ୍ରଣ ଚୁକ୍ତି ସ୍ୱାକ୍ଷର କରୁଛନ୍ତି

ମହାରାଜା, ଦସ୍ତଖତ କଲା । ପରେ ତାଙ୍କ ନିଜର ଆନନ୍ଦ ଜଣାଇଲେ । ପାଟଣା ମହାରାଜାଙ୍କ କହିବା ଅନୁସାରେ ମେନନ ତାଙ୍କୁ ଲେଖିକରି ଦେଲେ । ଦସ୍ତଖତ ନ କରିଥିଲେ ଶାନ୍ତିଶୃଙ୍ଖଳା ରକ୍ଷା ନିମିତ୍ତ ଆବଶ୍ୟକ ପଡ଼ିଲେ ଭାରତସରକାର ରାଜ ଶାସନ ଭାରତ ଦଖଲ କରିଥାନ୍ତେ । କଳାହାଣ୍ଡି ଓ ବଉଦ ରାଜା ମଧ ଦାବିକଲାରୁ ସେମାନଙ୍କୁ ସେମିତି ଚିଠି ଦିଆଗଲା ।

ମୟୁରଭଞ୍ଜ ମହାରାଜା ତାଙ୍କ ରାଜ୍ୟ ଶାସନଭାର ଲୋକପ୍ରତିନିଧିମୂଳକ ଶାଧନଙ୍କୁ ଦେଇ ନିଜେ କେବଳ ସାମ୍ବିଧାନିକ ରାଜ୍ୟ ମୁଖ୍ୟ ଇଣାଇଦେବାରୁ ତାଙ୍କ ରାଜ୍ୟ ମିଶ୍ରଣ କଥା ଉଠିନଥିଲା । ସେଦିନ ସଡ଼େଇକଳା ଓ ଖରସୁଆଁ ଓଡ଼ିଶା ସହିତ ମିଶ୍ରଣଚୁକ୍ତି ସ୍ୱାକ୍ଷର କରିଥିଲେ । ଓଡ଼ିଶା ସରକାର ନିଜର ପ୍ରଶାସନ ସେଠାରେ ଜାରିକରିଥିଲେ ମାତ୍ର ମୟୂରଭଞ୍ଜ ମିଶ୍ରଣ ହୋଇ ନଥିବାରୁ ଏହା ଓଡ଼ିଶା ସୀମାକୁ ଲାଗି ନଥିଲା । ଶାସନର ଅସୁବିଧା ଅଛି ବୋଲି ବିହାରର ଏହି ଯୁକ୍ତି କେନ୍ଦ୍ର ସରକାର ଗ୍ରହଣ କଲେ । ତେଣୁ ଅସ୍ଥାୟୀ ଭାବରେ ଏହା ୧୯୪୮ ମେ ୧୭ ତାରିଖରେ ବିହାରକୁ ହସ୍ତାନ୍ତର ହେଲା । ମୟୂରଭଞ୍ଜର ପ୍ରଧାନମନ୍ତ୍ରୀ ଶରତଚନ୍ଦ୍ର ଦାସ ଓ ମହାରାଜା ୧୭ ଅକ୍ଟୋବର ୧୯୪୮ରେ ଦିଲ୍ଲୀରେ ସର୍ଦ୍ଦାର ପଟେଲଙ୍କୁ ସାକ୍ଷାତ କରି ମିଶ୍ରଣ ଚୁକ୍ତି ଦସ୍ତଖତ କଲେ । କିଛିଦିନ କେନ୍ଦ୍ର ଶାସନ



ରାଜା ଶ୍ରୀ ରାମଚନ୍ଦ୍ର ସିଂହଦେଓ
(ଖରସୁଆଁ)



ରାଜା ଶ୍ରୀ ଉଦିତନାରାୟଣ ସିଂହଦେଓ
(ସଢ଼େଇକଳା)

ଅଧିନରେ ରହି ୧୯୪୯ ଜାନୁଆରି ପହିଲାରେ ଅନ୍ୟ ରାଜ୍ୟମାନଙ୍କ ମିଶ୍ରଣର ଏକ ବର୍ଷ ପରେ ମୟୂରଭଞ୍ଜ ଓଡ଼ିଶାରେ ମିଶିଲା । ମାତ୍ର ସଢ଼େଇକଳା ଖରସୁଆଁ ଆଉ ବିହାରରୁ ଫେରିଲା ନାହିଁ । ଓଡ଼ିଶା ବ୍ୟବସ୍ଥାପକ ସଭାରେ ସର୍ବଦଳୀୟ ପ୍ରସ୍ତାବ ଗୃହୀତ ହୋଇ କେନ୍ଦ୍ର ସରକାରଙ୍କଠାରେ ଦାବି ଉପସ୍ଥାପିତ ହେଲେ ମଧ ତାହା କାର୍ଯ୍ୟକାରୀ ହୋଇନାହିଁ । ନୀଳଗିରିରେ ନଭେମ୍ବର ୧୯୪୭ରେ ଯାହା ଆରମ୍ଭ ହେଲା ତାହା ହାଇଦ୍ରାବାଦରେ ନିଜାମଙ୍କର ଶାସନ ପ୍ରତ୍ୟାର୍ପଣରେ ଶେଷ ହେଲା । ଓଡ଼ିଶା ଗଡ଼ଜାତ ସମୂହର ରାଜାମାନଙ୍କର ନିଜ ରାଜ୍ୟ ଶାସନ ହସ୍ତାନ୍ତର ଦୃଶ୍ୟ କବିଚନ୍ଦ୍ର କାଳୀଚରଣ ତାଙ୍କ ଆତ୍ମଜୀବନୀ 'କୁମ୍ଭାରଚକ'ରେ ବର୍ଣ୍ଣନା କରିଅଛନ୍ତି ।

୧୯୪୭ ମସିହା ଡିସେମ୍ବର ପ୍ରଥମ ସପ୍ତାହ । କଟକରେ ଓଡ଼ିଶା ଥିଏଟରରେ ତାଙ୍କ ଦଶଭୂଜା ନାଟକ ଚାଲୁଥାଏ । ଲୋକ ସମ୍ପର୍କ ବିଭାଗର ପରିଚାଳକ ଶ୍ରୀଚିନ୍ତାମଣି ମିଶ୍ର ତାଙ୍କୁ ଡକେଇ ପଠାଇଲେ । କହିଲେ ସର୍ଦ୍ଦାର ପଟେଲ ୧୩ ତାରିଖରେ ଓଡ଼ିଶା ଆସୁଛନ୍ତି । ଏଥିଲାଗି ଚଳଚ୍ଚିତ୍ର ଗ୍ରହଣ କରିବାକୁ ହେବ ଓ ଏହାର ଦାୟିତ୍ୱ ସେ ନେବେ । କବିଚନ୍ଦ୍ର ଓଡ଼ିଶାରେ ପୂର୍ବରୁ ଚଳଚ୍ଚିତ୍ର ନିର୍ମାଣ ସହିତ ସମ୍ପୃକ୍ତ ଥିଲେ । ଡିସେମ୍ବର ୯ ତାରିଖରେ କଲିକତା ଛାଡ଼ିଲେ । ୧୨ ତାରିଖରେ ସେ ଚିନ୍ତାମଣି ମିଶ୍ରଙ୍କୁ ସାକ୍ଷାତ କରି

ସବୁ ବ୍ୟବସ୍ଥା ହୋଇଥିବା ଜଣାଇଲେ । ପରଦିନ ଡିସେମ୍ବର ୧୩ ତାରିଖ ସକାଳୁ ଭୀଷଣ ବର୍ଷା । ଚିନ୍ତାମଣି ବାବୁ ସେଦିନ ସକାଳ ୯ଟା ସୁଦ୍ଧା କ୍ୟାମେରା ଓ କ୍ୟାମେରାମ୍ୟାନ ସହିତ ଭୁବନେଶ୍ୱରରେ ପହଞ୍ଚିବାକୁ କହିଥାନ୍ତି । ଉଡ଼ାଜାହାଜ ଭୁବନେଶ୍ୱରକୁ କେବଳ ଆସୁଥାଏ । ଭୀଷଣ ପାଣି ପବନ ଭିତରେ ୧୩ ତାରିଖ ସକାଳ ଦଶଟା ବେଳେ ସମସ୍ତେ ତିନି ବୁଢ଼ି ଭୁବନେଶ୍ୱରରେ ପହଞ୍ଚିଲେ । ସେଇ ବର୍ଷାରେ ସର୍ଦ୍ଦାର ପଟେଲ ଆସି ଦିନ ୧୨ଟାରେ ପହଞ୍ଚିଲେ । ଚିତ୍ର ଗ୍ରହଣ କରାଗଲା । ଜଣାଗଲା ରାଜ୍ୟମାନଙ୍କ ଭବିଷ୍ୟତ ନିଷ୍ପତ୍ତି କରିବାକୁ ସର୍ଦ୍ଦାର ପଟେଲ ଆସିଛନ୍ତି । ଡଃ କାଳୀଚରଣ ଲେଖିଛନ୍ତି -ସେଦିନ ରାତିରେ ତାଙ୍କୁ ଦାନା ରୁଚିଲା ନାହିଁ କି ଆଖିରେ ପଲକ ପଡ଼ିଲା ନାହିଁ । ଭୋକ ଶୋଷ ଯେମିତି ଉଭାନ ହୋଇଗଲା । ସକାଳୁ ଦେଖାଗଲା ସୂର୍ଯ୍ୟ ଯେପରି ମୁହଁଛପା ଦେଇଛନ୍ତି । ଚାରିମେଘ ଏକାଠି ହୋଇ ଚାରିଦିଗ ଘୋଟି ରହିଛି । ଝଡ଼ ପବନ ବର୍ଷା ପ୍ରବଳରୁ ପ୍ରବଳତର ହେବାରେ ଲାଗିଛି । ସକାଳୁ କ୍ୟାମେରାମ୍ୟାନ ସହିତ ତିନି ବୁଢ଼ି ଲାଲବାଗ କାଠଯୋଡ଼ି କୂଳର ପୁରୁଣା କମିଶନର କୋଠିକୁ ଚାଲିଲେ । ସେତେବେଳେ ଏହା ରାଜଭବନ । ବର୍ତ୍ତମାନ ଏହା ସର୍ଦ୍ଦାର ପଟେଲ ଶିଶୁ ଭବନ । ପ୍ରଶସ୍ତ ରାଜଭବନ ହଲରେ ଚାରିପଟେ ଚଉକି । ଗୋଟି ଗୋଟି ହୋଇ ଓଡ଼ିଶା ଫିଉଡ଼େଟାରୀ ଷ୍ଟେଟର ରାଜାମାନେ କେତେକ ବସିଥାନ୍ତି । କେତେକ ଆସି ବସୁଥାଆନ୍ତି । ସେ ଲେଖିଛନ୍ତି ମୋର ଆଖି ଆଉ ଅନାଇ ପାରୁନଥାନ୍ତି । ଏଇ ରାଜାମାନଙ୍କ ମଧ୍ୟରୁ ଅନେକଙ୍କ ସାଙ୍ଗରେ ମୋର ଖୁବ ଜଣାଶୁଣା ଥିଲା । କେତେ ରାଜା ମୋତେ ଗାୟକ ରୂପେ, ନାଟ୍ୟକାର ରୂପେ, ସଙ୍ଗୀତକାର ରୂପେ, ଓ କବିରୂପେ କେତେ ସାହାଯ୍ୟ ସହାନୁଭୂତି ଦେଇ ଉତ୍ସାହିତ କରିଛନ୍ତି । ଏଇ ଓଡ଼ିଶାର ରାଜା ତ ପୁଣି କୋଣାର୍କ, ଶ୍ରୀମନ୍ଦିର ଇତ୍ୟାଦି ଗଢ଼ାଇ ଅଛନ୍ତି । ଓଡ଼ିଶାର କଳା କୁଶଳୀଙ୍କୁ ତ ଏଇ ରାଜାମାନଙ୍କ ବଂଶ ଭୁବନ ଭରି ବିଖ୍ୟାତ କରାଇ ଅଛନ୍ତି ।

ହଁ ଏଇ କଥା ସତ ଯେ ଏଇଥିରୁ କେହି କେହି ଅତ୍ୟାଚାରୀ ଥିଲେ । କିନ୍ତୁ ପାଞ୍ଚ ଆଙ୍ଗୁଠି କଣ ସମାନ ବୋଲି ବିଚାରିବା ? ଦିନଟାକୁ ଚବିଶ ଘଣ୍ଟା ଧରିଲେ ଦିନ ବେଳାର ଆଲୁଅ ବାରଘଣ୍ଟା ଆଉ ରାତିର ଅନ୍ଧାର ବାରଘଣ୍ଟା ତ ଅଛି !

ମୁଁ ଯେମିତି ଚେତନହରା ହୋଇ ପଡ଼ିଥାଏ । ଆଜି ଏଇ ରାଜାମାନେ ତାଙ୍କ ରାଜ୍ୟଗୁଡ଼ିକ ଭାରତ ସରକାରଙ୍କୁ ହସ୍ତାନ୍ତର କରିବେ - କରିବାକୁ ବାଧ ହେବେ ଭାବି ।

ଅବଶ୍ୟ ସମସ୍ତେ ମୋ ପରି ନୁହଁନ୍ତି କେହି କେହି କୌଣସି ଭବିଷ୍ୟତ କଳ୍ପନା ଘେନି ଆନନ୍ଦ ହେଉଥିବେ । ମୁଁ ମୋ କଥା ଭାବୁଛି, କିଛି ବେଳ ପରେ ସର୍ଦ୍ଦାର ପଟେଲ

ଆସିଲେ। ଅଳ୍ପ କଥାବାର୍ତ୍ତା ପରେ ରାଜ୍ୟ ହସ୍ତାନ୍ତର ଲାଗି ସ୍ୱୀକୃତି ପତ୍ରରେ ଗୋଟିଗୋଟି କରି ରାଜାମାନେ ସ୍ୱାକ୍ଷର କଲେ । କେବଳ ମୟୂରଭଞ୍ଜ ରାଜା ରାଜିହେଲେ ନାହିଁ। ସର୍ଦ୍ଦାରଜୀଙ୍କ ଏକା କଲମ ଗାରକେ ପରମ୍ପରାର ମଥାରେ କୁରାଢ଼ୀ ଚୋଟ ବାଜିଲା । ଭାରତର ସ୍ୱାଧୀନ ଯୁଗର ଆରମ୍ଭରେ ଓଡ଼ିଶାର ଏହି ପରିକା ଗଛହଣାରୁ ଆରମ୍ଭ ହେଲା । ନୂଆ ରାହା ଫିଟିଲା, ସବୁରାଜା, ମୋ ଆଡ଼େ ଚାହି ଥାଆନ୍ତି (ମୟୁରଭଞ୍ଜକୁ ଛାଡ଼ି) କିନ୍ତୁ ଆଖିରେ ଆଖି ମିଳାଇବା ସାହସ ମୋର ନଥିଲା। ଏହିଠାରେ ଏହି ସ୍ୱାକ୍ଷର କରିବା ବେଳର ଚିତ୍ର ମଧ ଗ୍ରହଣ କରାଗଲା।

ଦୁଇ ପହର ବେଳେ 'ବି' ଓ 'ସି' କ୍ଲାସ ଷ୍ଟେଟସ ରାଜାମାନେ ସ୍ୱାକ୍ଷର କଲେ। ଏ ଅଧିବେଶନର ଚିତ୍ର ଗ୍ରହଣ ପରେ ପରେ ଯଥା ସମ୍ଭବ ଶୀଘ୍ର କ୍ୟାମେରାମ୍ୟାନଙ୍କୁ ନେଇ ଘୋର ବର୍ଷାରେ ତିନି ବସାକୁ ଫେରିଲି। ପୁଣି ରାତିରେ ସେହିପରି ବର୍ଷା ମଧରେ ଯାଇ ଓଡ଼ିଶାର 'ଏ' କ୍ଲାସ ରାଜାମାନଙ୍କର ରାଜ୍ୟ ଛାଡ଼ିବା ସ୍ୱୀକୃତି ପତ୍ରରେ ସ୍ୱାକ୍ଷର କଲାବେଳର ଚିତ୍ର ଗ୍ରହଣ କରିବାକୁ ହେଲା। ୧୯୪୭ ଡିସେମ୍ବର ୧୩ ତାରିଖ ଦିନ ଓଡ଼ିଶାର ଏଇ ଐତିହାସିକ ପରିବର୍ତ୍ତନ ଘଟିଲା। ଓଡ଼ିଶା ରାଜାମାନଙ୍କ ମଥାରୁ ମୁକୁଟ ଖସି ପଡ଼ିବା ବେଳର ମୂକସାକ୍ଷୀ ମୁଁ। ଏ ମୋ ମନର ଅଭୁଲା ସ୍ମୃତି।"

କାଳଜୟୀ କବି, ଗୋଦାବରୀଶ "ନିଆଁ ଖୁଣ୍ଟାରେ" "ମୁକୁଟର ପରାଜୟ" କବିତାରେ ଏହି ବିଷୟ ଲେଖିଥିଲେ।

x x x

ଗିରିକନ୍ଦରେ, ଦେବ ମନ୍ଦିରେ, ଘନ ଅନ୍ଧାରେ କୁହ,
ହେଲା ଏତେକାଳେ କୌପିନ ପାଖେ ମୁକୁଟର ପରାଜୟ।

ଶତବର୍ଷର ଥିଲା ଏଠି ଯେତେ ନବର ଚନ୍ଦ୍ରଶାଳ
ଥିଲା ଶତ ଶତ ବିହାର ବାଟିକା କାମିନୀ ହଂସପୁର

ପାଟ ପ୍ରାଙ୍ଗଣ ପାଟ ମହାଦେଇ ପାଟଜେମା ପାଟହାତୀ
ଏ ନାମ ସମାଧି ହେଲା ଏଠି ଆଜି ଲୁଚିଗଲା ପାଟଛତି,

ଲୁଚିଲା 'ମଣୋହି' ପହୁଡ଼' ଏଠାରେ ଇତିହାସେ ହେବ ଲେଖା,
ପଛ ଘୁଞ୍ଚାରେ 'ଛାମୁ' ଗଲେ ଛାଡ଼ି ବିଜେ ହେବେ ନାହିଁ ଦେଖା

ଗଡ଼ଜାତ ହେଲା ମୋଗଲ ବନ୍ଦୀ ଜାଗି ପ୍ରଜା ପରିଷଦେ
ମସ୍ତକ କର ଅବନତ ଭାଇ ମହା ଉତ୍କଳ ପଦେ
ଘନ ଅନ୍ଧାରେ ଗିରିକନ୍ଦରେ ଦେବ ମନ୍ଦିରେ କୁହ
ହେଲା ଏତେକାଳେ କୌପୀନ ପାଖେ ମୁକୁଟର ପରାଜୟ ।



ମିଶ୍ରଣ ଚୁକ୍ତି ଶେଷରେ - ଫଟୋ ବାମରୁ : ରାଜା ସାହେବ-ଆଠଗଡ଼, କୁମାରୀ ମଣିବେନ ପଟେଲ, ରାଜା ସାହେବ-ଖରସୁଆଁ, ସରଦାର ପଟେଲ, ରାଜାସାହେବ-ରଣପୁର, ରଣପୁର ରାଜମାତା, ଶ୍ରୀ ମହତାବ



# ଇଂରେଜ ଶାସନରେ ଦେଶୀୟ ରାଜ୍ୟମାନଙ୍କ ସୃଷ୍ଟି, ସ୍ଥିତି ଓ ବିଳୟ

ଅଖଣ୍ଡ ଭାରତ ବର୍ଷକୁ ଦୁଇଖଣ୍ଡ କରି ଦୁଇଟି ରାଜ୍ୟ ଗଠନ କରି ୧୯୪୭ ଅଗଷ୍ଟ ୧୫ରେ ଇଂରେଜମାନେ ଆମଦେଶ ଛାଡ଼ିଲେ। ବ୍ରିଟିଶ ଶାସନ ଅଧିନରେ ଯେତେ କ୍ଷେତ୍ରଫଳ ଥିଲା ସେଥିରୁ ତିନି ଭାଗରୁ ଏକ ଭାଗ ଦେଶୀୟ ରାଜାମାନଙ୍କ ଅଧିନରେ ଥିଲା ଓ ସମୁଦାୟ ଭାରତର ଲୋକସଂଖ୍ୟାରୁ ଚାରିଭାଗରୁ ଭାଗେ ଏଇ ରାଜ୍ୟମାନଙ୍କରେ ବାସ କରୁଥିଲେ। ବଡ଼ ସାନ ହୋଇ ଦେଶରେ ୫୬୫ ଗୋଟି ଦେଶୀୟ ରାଜ୍ୟ (କ୍ରୋରଫିଲ୍ଡ) ଥିଲା। ପ୍ରାୟ ୮୨ ହଜାର ବର୍ଗମାଇଲ କ୍ଷେତ୍ରଫଳ ବିଶିଷ୍ଟ ହାଇଦ୍ରାବାଦ ରାଜ୍ୟ ଏହା ଭିତରେ ବଡ଼ ଥିଲା ଓ ମାତ୍ର ଅଳ୍ପ ବର୍ଗମାଇଲ କ୍ଷେତ୍ରଫଳ ଥିବା ଛୋଟ ରାଜ୍ୟ ମଧ ଥିଲେ। ବ୍ରିଟିଶ ସରକାର ରାଜ୍ୟ ମାନଙ୍କର ମର୍ଯ୍ୟଦା, ସେମାନଙ୍କୁ ସେମାନଙ୍କ ରାଜ୍ୟ ବାହାରେ ଦିଆଯାଉଥିବା ତୋପ ସଲାମିରୁ ଜଣେଇ ଦେଉଥିଲେ। କୌଣସି ରାଜ୍ୟ ଶାସକ, ୨୧ ତୋପରୁ ଅଧିକ ସଲାମିର ଅଧିକାରୀ ନଥିଲେ। ୨୧ ତୋପ ସଲାମିରେ ହାଇଦରାବାଦ, କାଶ୍ମୀର, ମହୀଶୂର, ବରୋଦା, ଗୋଆଲିୟର ଏମିତି ପାଞ୍ଚଗୋଟି ବଡ଼ ରାଜ୍ୟ ଥିଲେ। ସେମିତି ୧୯ ତୋପ ସଲାମି ପାଇବା ରାଜ୍ୟ ସଂଖ୍ୟା ଥିଲା ଛଅ ତ୍ରିବାଙ୍କୁର, ଭୋପାଳ, ଇନ୍ଦୋର ଏହା ଭିତରେ ଥିଲେ। ୧୭ ତୋପ ସଲାମି ପାଇବା ରାଜ୍ୟ ତେର। ତା ଭିତରେ ଯୋଧପୁର, ବିକାନିର, ପାତିଆଲା ଜୟପୁର ଆଦି ରାଜ୍ୟ ଥିଲେ। ତା' ତଳକୁ ପନ୍ଦର ତେର ଓ ଏଗାର ତୋପ ସଲାମି ରାଜ୍ୟ ଥିଲେ। ଓଡ଼ିଶାର କେହି ରାଜା ଏଗାର ତୋପ ସଲାମି ପାଇ ହକଦାର ନଥିଲେ। ଏଗାର ତୋପ ସଲାମିରୁ ଅଧିକ ରାଜା ନିଜ ନାମ ପୂର୍ବରୁ ହିଜହାଇନେସ ଲେଖି ପାରୁଥିଲେ। ନରେନ୍ଦ୍ର ମଣ୍ଡଳ ବୋଲି ବ୍ରିଟିଶ ସରକାର ରାଜାମାନଙ୍କର ଗୋଟିଏ ଗୋଷ୍ଠୀ ଗଠନ କରିଥିଲେ। ଏହି ରାଜାମାନେ ନିଜ ହକ



ନରେନ୍ଦ୍ର ମଣ୍ଡଳ (Chamber of Princes)
ନଭେମ୍ବର ୧୯୨୧ - ଦିଲ୍ଲୀ

ବଳରେ ଏହାର ସଭ୍ୟ ଥିଲେ। ଅନ୍ୟ ରାଜାମାନେ ଏକାଠି ହୋଇ ଜଣେ ପ୍ରତିନିଧି ଏଥିପାଇଁ ପଠାଉଥିଲେ। ଓଡ଼ିଶାର ମୟୂରଭଞ୍ଜ, କଳାହାଣ୍ଡି, ପାଟଣା, ସୋନପୁର ମାତ୍ର ନଅ ତୋପ ସଲାମିର ହକଦାର ଥିଲେ।

ଭାରତର ଦେଶୀୟ ରାଜ୍ୟମାନ ଇଂରେଜମାନଙ୍କ ସହିତ ବିଭିନ୍ନ ସମୟରେ ସମ୍ପର୍କରେ ଆସି ସନ୍ଧି ଓ ସନନ୍ଦ ଦ୍ୱାରା ନିଜର ସ୍ଥିତି ଜାହିର କରିଥିଲେ। ଭାରତରେ ମୋଗଲ ସମ୍ରାଟ ଆକବରଙ୍କର ରାଜତ୍ୱର ଶେଷ ଆଡ଼କୁ ୧୬୦୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରୁ ସେଠାରେ ଗଢ଼ା ଯାଇଥିବା ଇଷ୍ଟ ଇଣ୍ଡିଆ କମ୍ପାନୀ ବାଣିଜ୍ୟ କାରବାର ପାଇଁ ଏ ଦେଶକୁ ଆସିଲେ। ସେମାନେ ସମ୍ରାଟଙ୍କ ଦରବାରରୁ ବାଣିଜ୍ୟ କେନ୍ଦ୍ର ସ୍ଥାପନ ନିମିତ୍ତ ଅନୁମତି ପାଇଲେ। ଏହି କେନ୍ଦ୍ରମାନଙ୍କୁ ସେମାନେ ଫ୍ୟାକ୍ଟ୍ରି ବୋଲି କହୁଥିଲେ। ପ୍ରଥମେ ସୁରାଟ ଓ ପରେ ବମ୍ବେରେ ସେମାନେ ଆସ୍ଥାନ ଜମାଇଲେ। ସମ୍ରାଟ ଆଓ୍ୱରଙ୍ଗଜେବଙ୍କ ବେଳକୁ ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇ ଆସିଲା ଓ ଏହା ଖଣ୍ଡ ଖଣ୍ଡ ହୋଇଯିବାର ଲକ୍ଷଣ ଦେଖାଗଲା। ମୋଗଲ ସମ୍ରାଟଙ୍କର ବିଭିନ୍ନ ଅଞ୍ଚଳରେ ପ୍ରତିନିଧି ଥିଲେ। ସେମାନେ ନିଜ ନିଜର ଆଧିପତ୍ୟ ଜାହିର କଲେ। କେତେକ ମୋଗଲ ସମ୍ରାଟଙ୍କର ଆଧିପତ୍ୟ ସ୍ୱୀକାର କଲେ। କିଛି କର ଦେଲେ ଓ ନିଜ ମନମୁଖୀ ଶାସନ ଚଳାଇଲେ। ଇଷ୍ଟଇଣ୍ଡିଆ କମ୍ପାନୀ ନିଜର ବାଣିଜ୍ୟିକ ସ୍ୱାର୍ଥରକ୍ଷା କରିବାକୁ ଓ ଆଇନ୍ ଶୃଙ୍ଖଳାରେ ବିଶୃଙ୍ଖଳା ଦେଖା ନ ଦେବାକୁ ଏହି ରାଜ୍ୟ ମାନଙ୍କରେ ନିଜର ଜଣେ ଜଣେ ଅଧିକାରୀ ରଖିଲେ। ରାଜାମାନଙ୍କ ସହିତ ତାଙ୍କ ସମ୍ପର୍କ ଯୋଗୁ ତାଙ୍କୁ ରାଜନୈତିକ ଅଧିକାରୀ କୁହାଗଲା। କମ୍ପାନୀର ଅନେକ କର୍ମଚାରୀ ମଧ୍ୟରୁ ଏମାନେ ବିଶେଷ ଖାତିର ପାଇଲେ। ଅନ୍ୟମାନେ ଖାଲି ବେପାର କଥା ବୁଝିଲେ। ଇଂରେଜମାନଙ୍କ ପରି ଫରାସୀମାନେ ମଧ୍ୟ ବାଣିଜ୍ୟ ସୁବିଧା ପାଇବାକୁ ସମ୍ରାଟ ଓ ତାଙ୍କ ପ୍ରତିନିଧିଙ୍କଠାରୁ ସୁବିଧା ଲୋଡ଼ିଲେ। ଇଂରେଜ ମାନଙ୍କର ସଫଳ ବାଣିଜ୍ୟ ହେତୁ ଶ୍ରୀବୃଦ୍ଧି ଦେଖି ଦୁର୍ବଳ ରାଜଶକ୍ତି ସେମାନଙ୍କୁ ଏକଘରକିଆ କରି ବସିଲେ। ବଙ୍ଗଳାର ନବାବ ସିରାଜଉଦୌଲାଙ୍କ ସାଙ୍ଗରେ ଇଂରେଜମାନେ ଯୁଦ୍ଧ କଲେ। ସେନାପତିଭାବେ କ୍ଲାଇଭ ୧୭୫୭ ମସିହା ପଲାସୀ ଯୁଦ୍ଧରେ ତାଙ୍କୁ ହରାଇଦେଇ। ନିଜକୁ ବଙ୍ଗଳାର ଗଭର୍ଣ୍ଣର ବୋଲି ଘୋଷଣା କଲେ। ବାଣିଜ୍ୟ ଦ୍ରୁତ ବଢ଼ିଲା। ବିଭିନ୍ନ ଜାଗାରେ ସେମାନେ ଫ୍ୟାକ୍ଟ୍ରି କଲେ। ଦୁର୍ବଳ ରାଜାମାନଙ୍କୁ ଆୟତ୍ତ କଲେ। ଦେଶତମାମ ଛଳେ ବଳେ କୌଶଳେ ସେମାନେ ନିଜର ଆଧିପତ୍ୟ ବିସ୍ତାର କଲେ। ରାଜ୍ୟ ବଢ଼ିବାରୁ ମାନ୍ଦ୍ରାଜ, ବମ୍ବେରେ ତାଙ୍କର ଗଭର୍ଣ୍ଣର ରହିଲେ । ଖ୍ରୀ ୧୭୯୮ ବେଳକୁ ତାଙ୍କର ରାଜ୍ୟ ଆୟତନ ବଢ଼ିଗଲା । ଲର୍ଡଓ୍ୱେଲସଲି

ନିଜକୁ ଗଭର୍ଣ୍ଣର ଜେନେରାଲ ବୋଲି ଘୋଷଣା କଲେ। ଆପଣା ରାଜ୍ୟ ବଢ଼ାଇବାରେ ଫ୍ରାନ୍ସ ସେମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦୀ ଥିଲା। ମାତ୍ର ସେମାନଙ୍କୁ ଦେଶରୁ ମୂଳପୋଛ କରିଦେଲେ। ଠାଏ ଠାଏ ଖାଲି ସେମାନେ ଯାହା ରହିଗଲେ। ୧୮୦୫ ମସିହା ବେଳକୁ ଭାରତବର୍ଷରେ ଇଂରେଜମାନେ ଅଧିକାଂଶ ଅଞ୍ଚଳ ଦଖଲ କରି ଶାସନ ଜାହିର କରି ବସିଲେ। ବାଣିଜ୍ୟ ମଧ୍ୟ ଏହା ଫଳରେ ଉନ୍ନତତର ହେଲା।

ମୋଗଲ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହେବା ଫଳରେ ଦେଶରେ ଅନେକ ଗୁଡ଼ିଏ ରାଜ୍ୟ ଗଢ଼ି ଉଠିଲା । କେତେକଙ୍କୁ ଯୁଦ୍ଧରେ ପରାସ୍ତ କରି ଇଂରେଜମାନେ ସେମାନଙ୍କର ରାଜ୍ୟ ମାଡ଼ି ବସିଲେ। ଅନ୍ୟ ରାଜାମାନେ ଦେଖିଲେ ଇଂରେଜମାନେ ଯେପରି ବଢ଼ି ଚାଲିଛନ୍ତି ସେମାନଙ୍କ ସହିତ ବିବାଦ କରି ଲାଭ ନାହିଁ। ଲର୍ଡ଼ ୱେଲସଲି ଏହି ରାଜାମାନଙ୍କ ସହିତ ପରସ୍ପର ସାହାଯ୍ୟକୃତ ସନ୍ଧି କଲେ। ସର୍ତ୍ତ ରହିଲା ସେମାନେ ଇଂରେଜମାନଙ୍କୁ ବଡ଼ ଶକ୍ତି ଭାବେ ଗ୍ରହଣ କରିବେ। ବଦଳରେ ବାହାର ଶତ୍ରୁ ଆକ୍ରମଣରୁ ଇଂରେଜ ସେମାନଙ୍କୁ ରକ୍ଷା କରିବେ। ବାହାର ବିଦେଶୀ ଶକ୍ତି ସହିତ ସେମାନଙ୍କର କିଛି ସମ୍ପର୍କ ରହିବ ନାହିଁ। ସେମାନଙ୍କର ରାଜ୍ୟରେ ସେମାନଙ୍କ ନିଜ ଶାସନ ଜାରି ରଖିବେ। ଯଦି ଆଇନ୍ ଶୃଙ୍ଖଳା କୌଣସି ପ୍ରକାର ବ୍ୟାହତ ହୁଏ ତାହା ପ୍ରତିଷ୍ଠା ନିମିତ୍ତ ଇଂରେଜ ଶକ୍ତି ତାଙ୍କୁ ସାହାଯ୍ୟ ଯୋଗାଇ ଦେବ। ଅନେକ ଗୁଡ଼ିଏ ରାଜ୍ୟ ଏମିତି ଭାବରେ ଇଂରେଜ କବଳକୁ ଆସିଥିଲେ। ରାଜ୍ୟର ପ୍ରଜାମାନଙ୍କ ସ୍ୱାର୍ଥ କେହି ବିବେଚନା କଲେନାହିଁ। ସହଜରେ ରାଜାମାନେ ଇଂରେଜ ସୁରକ୍ଷା ପାଇଲେ ଓ ମନମୁଖୀ ଶାସନ ନିଜ ରାଜ୍ୟରେ ଚଳାଇଲେ। ବଡ଼ ସାନ ଅନେକ ଗୁଡ଼ିଏ ରାଜ୍ୟ ଏମିତି ଭାବରେ ଇଂରେଜଙ୍କର ମିତ୍ର ହେଲେ। ଲର୍ଡ଼ ଡେଲହାଉସ୍ ଗଭର୍ଣ୍ଣର ଜେନେରାଲ ହୋଇ ରାଜ୍ୟସ୍ୱତ୍ୱଲୋପନୀତି ଚାଲୁ କଲେ।

ଯଦି କୌଣସି ଦେଶୀୟ ରାଜା, ଯାହାର ଅସ୍ତିତ୍ୱ ଇଂରେଜମାନେ ଆସିବା ଆଗରୁ ନଥିଲା, ଅପୁତ୍ରିକ ହୋଇ ପ୍ରାଣ ତ୍ୟାଗ କରେ ଓ ତାଙ୍କୁ ଜଣେ ପୋଷ୍ୟପୁତ୍ର ଗ୍ରହଣ ନିମିତ୍ତ ଇଂରେଜ ସରକାର ଅନୁମତି ଦେଇ ନଥାଆନ୍ତି ତାହାହେଲେ ସେଇ ରାଜ୍ୟ ଇଂରେଜ ଶାସନରେ ମିଶିଯିବ । ଫଳରେ ଅନେକ ଗୁଡ଼ିଏ ରାଜ୍ୟର ଆଉ ସତ୍ତା ରହିଲାନାହିଁ। ଅଯୋଧ୍ୟାର ନବାବ ଖୁବ ଖାନ୍‌ଦାନୀ ରାଜବଂଶ। ଏମିତି ଆଳ ଦେଖାଇ ସେ ରାଜ୍ୟ ଡେଲହାଉସ ଇଂରେଜ ଶାସନରେ ମିଶାଇ ଦେଲେ। ଯେତେ ଯେତେ ସାମ୍ରାଜ୍ୟ ବଢ଼ିଲା କୂଟନୀତି କରି ରାଜ୍ୟମାନଙ୍କୁ ନିର୍ବିଯ୍ୟ ଓ ଖାସ କରିଦିଆଗଲା। ଦେଶର ପ୍ରଜାପୁଞ୍ଜି ସେଥିରେ ବିରକ୍ତି ପ୍ରକାଶ କଲେ। ସିପାହୀମାନେ ଇଂରେଜ ସୈନ୍ୟ ବାହିନୀରେ ଥାଇ

ସେମାନଙ୍କ ଶାସନର ମୂଳଦୁଆ ମଜଭୂତ କରୁଥିଲେ। ସେମାନେ ନିଜର ଅସନ୍ତୋଷ ବିଦ୍ରୋହ ଆକାରରେ ପ୍ରକଟ କଲେ। ଏହା ହେଲା ଦେଶର ପ୍ରଥମ ସ୍ୱାଧିନତା ଯୁଦ୍ଧ ୧୮୫୭। ଇଂରେଜମାନେ ଏହାକୁ ସିପାହୀ ବିଦ୍ରୋହ ଆଖ୍ୟା ଦେଲେ। ବିଦ୍ରୋହ ଦମନ ହେଲା। ମାତ୍ର ବ୍ରିଟେନର ରାଜା ଏଥିରେ ହସ୍ତକ୍ଷେପ କଲେ। ସେମାନଙ୍କ ପାଖରୁ ଅନୁମତି ଆଣି ଇଷ୍ଟ ଇଣ୍ଡିଆ କମ୍ପାନୀ ଏହି ଦେଶକୁ ଆସିଥିଲା। ଇଂଲଣ୍ଡର ମହାରାଣୀ ଦେଖିଲେ ସେମାନେ ଏଡ଼େ ବଡ଼ ସାମ୍ରାଜ୍ୟ ବସେଇଲେଣି ଯାହା ଚଳେଇବା ସେମାନଙ୍କ ପକ୍ଷରେ କଷ୍ଟକର। ତେଣୁ କମ୍ପାନୀକୁ ଭାଙ୍ଗି ଦିଆଗଲା ଓ ରାଜ୍ୟ ଶାସନ ଇଂଲଣ୍ଡର ମହାରାଣୀଙ୍କ ନାମରେ ଚାଲିଲା। ମହାରାଣୀ ଭିକ୍ଟୋରିଆ ଭାରତ ସାମାଜ୍ଞୀ ଭାବେ ଶାସନ ଗ୍ରହଣ କରି ଯୁଗାନ୍ତକାରୀ ଘୋଷଣା କଲେ। ପୂର୍ବର ଚୁକ୍ତି ସନନ୍ଦକୁ ଆମେ ସମ୍ମାନ ଦେବୁ। କୌଣସି ଶତ୍ରୁ ପକ୍ଷର ଆମ ବିରୁଦ୍ଧରେ ଅଭିଯାନ ଆମେ ଗ୍ରହଣ କରିବୁନାହିଁ। ଦେଶକୁ ରକ୍ଷା କରିବୁ। ଅନ୍ୟ କାହାର ରାଜ୍ୟ ମଧ ଆମେ ଦଖଲ କରିବୁ ନାହିଁ। ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଆମେ ଦେଶ ଶାସନ କରିବୁ। ଦେଶୀୟ ରାଜାମାନଙ୍କର ଆଭ୍ୟନ୍ତରୀଣ ଶାସନରେ ଆମେ କୌଣସି ପ୍ରକାର ହସ୍ତକ୍ଷେପ କରିବୁ ନାହିଁ। ସେମାନେ ନିଜ ରାଜ୍ୟରେ ସୁଶାସନ ରଖିବେ ଓ ସେମାନଙ୍କୁ ବାହାର ଶତ୍ରୁ ଆକ୍ରମଣରୁ ଆମେ ରକ୍ଷା କରିବୁ। ଆଗରୁ ଏହି ରାଜାମାନେ ନିଜ ନିଜ ମଧରେ ଯୁଦ୍ଧ କରି ଧନଜନ କ୍ଷୟ କରୁଥିଲେ। ଏହା ଫଳରେ ତାହା ବନ୍ଦ ହେଲା। ଇଂରେଜମାନେ ଦେଶରେ ରହିଲେ। ମହାରାଣୀ ଭିକ୍ଟୋରିଆ ଦେଶର ସାର୍ବଭୌମ ଶକ୍ତି ଭାବରେ ପ୍ରତିଷ୍ଠିତ ହେଲେ। ବିଭିନ୍ନ ପ୍ରଦେଶରେ ବିଭକ୍ତ କରି ଦେଶକୁ ଇଂରେଜମାନେ ଶାସନ କଲେ। ମିତ୍ରରାଜ୍ୟ ମାନେ ନିଜ ରାଜ୍ୟରେ ମନମୁଖୀ ଶାସନ ଚଳାଇଲେ। ଅର୍ଦ୍ଧ ଶତାବ୍ଦୀରୁ ବେଶି ଏମିତି ଚାଲିଲା। ବିଂଶ ଶତାବ୍ଦୀର ଆରମ୍ଭରେ ଭାରତରେ ସ୍ୱାୟତ୍ତଶାସନ ନିମିତ୍ତ ଆନ୍ଦୋଳନ ଆରମ୍ଭ ହେଲା। ଦାବୀ ହେଲା, ଶାସନ ଲୋକ ପ୍ରତିନିଧିମାନଙ୍କୁ ହାତକୁ ଆସୁ। ଏହି ଦାବୀ ପୂରଣ କରିବାକୁ ଇଂରେଜ ସରକାର ଭାରତ ଶାସନ ଆଇନ୍ ୧୯୦୯ ଓ ୧୯୧୯ ଚଳେଇଲେ। ଲୋକଙ୍କ ହାତକୁ ଆଂଶିକ ଶାସନ କ୍ଷମତା ହସ୍ତାନ୍ତର ହେଉଥାଏ ମାତ୍ର ଦେଶୀୟ ରାଜ୍ୟମାନଙ୍କର ଶାସନ ପୂର୍ବପରି ଚାଲିଲା।

ବଡ଼ ବଡ଼ ଦେଶୀୟ ରାଜ୍ୟମାନଙ୍କରେ ରାଜନୈତିକ ସମ୍ପର୍କ ରକ୍ଷା ପାଇଁ ଇଂରେଜମାନେ ଜଣେ ଜଣେ ରେସିଡ଼େଣ୍ଟ ରଖିଥିଲେ। ବେଳେବେଳେ ଗୋଟିଏ ରାଜ୍ୟ ଗୋଷ୍ଠୀ ପାଇଁ ଜଣେ ରେସିଡ଼େଣ୍ଟ ରହୁଥିଲେ। ଯେମିତି ହାଇଦରବାଦ ଓ ମହୀଶୂରରେ ଜଣେ ରେସିଡ଼େଣ୍ଟ ରାଜପୁତାନାର ରାଜ୍ୟପୁଞ୍ଜ ପାଇଁ ଜଣେ । ଯଦି ଗୋଟିଏ ରାଜ୍ୟ

ପୁଞ୍ଜରେ ବେଶି ରାଜ୍ୟ ରହୁଥିଲା ରେସିଡ଼େଣ୍ଟଙ୍କୁ ସାହାଯ୍ୟ କରିବାକୁ ପଲଟିକାଲ ଏଜେଣ୍ଟ ରହୁଥିଲେ। କଲିକତାରେ ପୂର୍ବଭାରତ ଓ ଛତିଶଗଡ଼ ରାଜ୍ୟ ପାଇଁ ଜଣେ ରେସିଡ଼େଣ୍ଟ ଥିଲେ। ତାଙ୍କ ଅଧିନରେ ସମ୍ବଲପୁର ଓ ରାୟପୁରରେ ଜଣେ ଜଣେ ପଲିଟିକାଲ ଏଜେଣ୍ଟ ରହୁଥିଲେ। ସମଗ୍ର ଭାରତବର୍ଷରେ ଦେଶୀୟ ରାଜାମାନଙ୍କ ସହିତ ସମ୍ପର୍କକୁ ଶକ୍ତିଶାଳୀ ଓ ଦୃଢ଼ତର କରିବାକୁ ମୋଟରେ ବଡ଼ ରାଜ୍ୟ ପାଇଁ ସାତଜଣ, ରାଜ୍ୟଗୋଷ୍ଠୀ ପାଇଁ ପାଞ୍ଚ ଜଣ ଏମିତି ବାର ଜଣ ପଲିଟିକାଲ୍ ଏଜେଣ୍ଟ ଥିଲେ। ଏଥିରେ ଭାରତୀୟ ପୋଲଟିକାଲ ସର୍ଭିସ୍‌ର କର୍ମଚାରୀମାନେ ରହୁଥିଲେ। ଭାରତୀୟ ସିଭିଲ ସର୍ଭିସ୍ (ଆଇ.ସି.ଏସ୍.) ପୋଲିସ ସର୍ଭିସ (ଆଇପି) ଓ ସୈନ୍ୟ ବିଭାଗରୁ ପ୍ରାର୍ଥୀମାନଙ୍କୁ ଏ ଦିଗରେ କୃତିତ୍ୱ ଓ ଦକ୍ଷତା ବିଚାର କରାଯାଇ ନିଆଯାଉଥିଲା। ଆଗରୁ ଭାରତୀୟମାନେ ଏଥିରେ ନ ଥିଲେ। ରାଜା ମହାରାଜାମାନେ ବ୍ରିଟିଶ ପ୍ରତିନିଧି ବିଦେଶୀମାନଙ୍କୁ ବେଶି ସଂଭ୍ରମର ସହିତ ଗ୍ରହଣ କରୁଥିଲେ। ୧୯୨୦ ପରଠାରୁ ଭାରତୀୟମାନେ ଏହି ଚାକିରୀରେ ନିଆଗଲେ।

ପ୍ରଥମ ବିଶ୍ୱଯୁଦ୍ଧରେ (୧୯୧୪-୧୮) ରାଜାମାନେ ଇଂରେଜମାନଙ୍କୁ ବହୁତ ସାହାଯ୍ୟ କଲେ। ଇଂରେଜମାନେ ଯୁଦ୍ଧରେ ଜିତିଲେ। ରାଜାମାନଙ୍କର ପରସ୍ପର ସମ୍ପର୍କ ସେମାନେ ଆଗରୁ ଚାହୁଁ ନଥିଲେ। ଡ଼ର ଥିଲା କାଳେ ସେମାନେ ଏକାଠି ହୋଇ ଇଂରେଜ ବିରୋଧି ହେବେ। ମାତ୍ର ପ୍ରଥମ ଯୁଦ୍ଧ ପରେ ରାଜା ମାନଙ୍କର ଗୋଟିଏ ଗୋଷ୍ଠୀ ଗଠନ କଲେ 'ନରେନ୍ଦ୍ର ମଣ୍ଡଳ'। ଦେଶୀୟ ରାଜ୍ୟ ଓ ଇଂରେଜ ସରକାର ମଧ୍ୟରେ ସମ୍ପର୍କ ଏହା ମାଧ୍ୟମରେ ହେଉଥିଲା । ରାଜାମାନେ ଏହାକୁ ସେମାନଙ୍କର ସ୍ୱାଧିନତା ଉପରେ ସାର୍ବଭୌମ ଶକ୍ତିର ହସ୍ତକ୍ଷେପ ବୋଲି ଭାବିଲେ। ବଡ଼ ବଡ଼ ରାଜ୍ୟମାନେ ଏଥିରେ ମିଶିଲେ ନାହିଁ। ସମଗ୍ର ଦେଶର ସମୂହ ସ୍ୱାର୍ଥ, ସୁଶାସନ ଓ ଦେଶୀୟ ରାଜ୍ୟରେ କୁଶାସନ ଲୋପ ନିମିତ୍ତ ପରାମର୍ଶ ଏହିମାନେ ଦେଇଥାନ୍ତେ। ମାତ୍ର କାର୍ଯ୍ୟରେ କିଛି ହେଲାନାହିଁ।

ଦେଶରେ ଉତ୍ତରଦାୟୀ ଲୋକ ପ୍ରତିନିଧିମୂଳକ ଶାସନ ନିମିତ୍ତ ଆନ୍ଦୋଳନ ତୀବ୍ରତର ହେଲା। ବିଲାତରେ ଗୋଲଟେବୁଲ ବୈଠକ, ବିଭିନ୍ନ ବର୍ଗର ରାଜନେତା ମାନଙ୍କ ସହିତ ଆଲୋଚନା, ଭାରତୀୟ ଜାତୀୟ କଂଗ୍ରେସର ଜନ ଆନ୍ଦୋଳନ ଫଳରେ ବ୍ରିଟିଶ ପାର୍ଲାମେଣ୍ଟ 'ଭାରତ ଶାସନ ଆଇନ ୧୯୩୫' ପାସ୍ କଲେ। ଦେଶୀୟ ରାଜ୍ୟ ଓ ବ୍ରିଟିଶ ପ୍ରଦେଶକୁ ଘେନି ଗୋଟିଏ ସଂଘୀୟ ବ୍ୟବସ୍ଥା କେନ୍ଦ୍ରରେ କାର୍ଯ୍ୟକାରୀ କରିବାକୁ ଏହି ଆଇନ୍‌ରେ ବ୍ୟବସ୍ଥା ଥିଲା। ଇଷ୍ଟ ଇଣ୍ଡିଆ କମ୍ପାନୀଠାରୁ ଭାରତ ଶାସନ ଗ୍ରହଣ କଲାପରେ ଭାରତ ସମ୍ରାଟଙ୍କର ପ୍ରତିନିଧି ଭାବେ ଗଭର୍ଣ୍ଣର ଜେନେରାଲ କାର୍ଯ୍ୟ କରୁଥିଲେ। ଦେଶୀୟ

ରାଜାମାନଙ୍କ ସହିତ ସମ୍ପର୍କ ଏହି ରାଜ ପ୍ରତିନିଧି (ଭାଇସରୟ) ତୁଲାଉ ଥିଲେ। ତାଙ୍କୁ ପରାମର୍ଶ ଦେବାକୁ କେନ୍ଦ୍ରରେ ଗୋଟିଏ ବିଭାଗ ଥିଲା। ଅନ୍ୟ ବିଭାଗୀୟମାନଙ୍କରେ ଦେଶୀୟ ଲୋକ ପ୍ରତିନିଧି ଥିଲେ ମଧ ଏହି ରାଜନୀତିକ ବିଭାଗ ଖୋଦ ଭାଇସରୟଙ୍କ ନିଜ ହାତରେ ଥିଲା। ଜଣେ ଶାସନ ସଚିବ ତାଙ୍କୁ ଏଥିରେ ସାହାଯ୍ୟ କରୁଥିଲେ। ଅନ୍ୟ କୌଣସି ବିଭାଗ ଦେଶୀୟ ରାଜ୍ୟ ସହିତ ସମ୍ପର୍କ ଚାହିଁଲେ କେବଳ ଏହି ଶାସନ ସଚିବଙ୍କ ଜରିଆରେ ଆସୁଥିଲେ। ରାଷ୍ଟ୍ରୀୟ ସଂଘ ୧୯୩୫ ମସିହା ଆଇନ୍ ଅନୁସାରେ ଗଢ଼ା ହେଲେ କାମ ବଢ଼ିଯିବ। ଆଗରୁ ଭାଇସରୟଙ୍କର ଦାୟିତ୍ୱରେ କାମ ବହୁତ ବେଶି ଥିଲା। ତାହା ତାଙ୍କୁ ନ ଦେଇ ସମ୍ରାଟଙ୍କର ପ୍ରତିଭୂ ଭାବରେ ଜଣକୁ ରଖାଗଲା। ଖୋଦ ଭାରସରୟ ଏହା ପଦବୀ ନିର୍ବାହ କଲେ। ତାଙ୍କୁ ପରାମର୍ଶ ଦେବାକୁ ଜଣେ ପୋଖତ ସିଭିଲିଆନ ପରାମର୍ଶଦାତା ରହିଲେ। ବଡ଼ଲାଟଙ୍କର ମନ୍ତ୍ରୀ ସଭାର ଜଣେ ସଭ୍ୟ ଭାବରେ ତାଙ୍କର ଖାତିର୍ ରହିଲା। ଆଇନରେ ବ୍ୟବସ୍ଥା ଥିଲା ଦେଶରେ ମୋଟ ଦେଶୀୟ ରାଜ୍ୟ ମଧରୁ ସଂଖ୍ୟାର ଅଧେ ଯଦି ସମ୍ମତି ଦିଅନ୍ତି ଏହି ରାଷ୍ଟ୍ରୀୟସଂଘ କାମ କରିବ। ରାଜାମାନେ ଏହାକୁ ସାର୍ବଭୌମ ଶକ୍ତିର ସେମାନଙ୍କର କ୍ଷମତା ସଙ୍କୁଚିତ କରିବାରେ ଷଡ଼ଯନ୍ତ୍ର ଭାବି ବହୁ ଉଦ୍ୟମ ସତ୍ତ୍ୱେ ମିଶିଲେ ନାହିଁ। ପ୍ରାଦେଶିକ ଶାସନରେ ଲୋକପ୍ରତିନିଧି ଶାସନ ଗଢ଼ାଗଲା। ଭୋଟ ଅଧିକାର ବଳରେ ନାଗରିକମାନେ ନିଜର ପ୍ରତିନିଧି ବାଛିଲେ। ବିଧାନସଭାରେ ନିଜର ରାଜ୍ୟର ଆୟବ୍ୟୟ, ଆଇନ୍ ବ୍ୟବସ୍ଥା, ବହୁବିଧ ଉନ୍ନତିର ଆଲୋଚନା ହେଲା। ଏହାର ପ୍ରତିକ୍ରିୟା ପଡ଼ୋଶୀ ଦେଶୀୟ ରାଜ୍ୟ ମାନଙ୍କରେ ପଡ଼ିଲା। ଲୋକମାନେ ସମ୍ପୂର୍ଣ୍ଣ କ୍ଷମତା ଓ ରାଜକୀୟ ଶାସନର ଅନ୍ତ ଦାବୀ କଲେ। ସେମାନେ ସର୍ବଭାରତୀୟ ଦେଶୀୟ ପ୍ରଜା ସମ୍ମିଳନୀ ୧୯୨୯ ମସିହାରେ ଗଢ଼ିଲେ। ଇଂରେଜ ସରକାର ଆନ୍ତରିକ ଇଚ୍ଛା କରିଥିଲେ ସଂଘୀୟ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇପାରିଥାଆନ୍ତା। ମାତ୍ର ତାହା ହେଲା ନାହିଁ। ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା ଓ ଯୁଦ୍ଧ ଶେଷରେ ଦୁର୍ବଳ ଇଂରେଜ ରାଜଶକ୍ତି ପରିବର୍ତ୍ତିତ ରାଜନୈତିକ ସ୍ଥିତି ଓ ବିଶ୍ୱ ଜନମତ ପ୍ରତି ସମ୍ମାନ ଦେବାକୁ ଭାରତକୁ ସ୍ୱାଧିନତା ନିଷ୍ପତ୍ତି ନେଲେ। ଭାରତ ଓ ପାକିସ୍ଥାନ ଦୁଇଦେଶ ସୃଷ୍ଟି କରି ସେମାନେ ଦେଶ ଛାଡ଼ି ଯିବା ସୁନିଶ୍ଚିତ ହେଲା। ସେମାନେ ଉପଭୋଗ କରୁଥିବା ସାର୍ବଭୌମ କ୍ଷମତାକୁ ସ୍ୱାଧୀନତା ପରବର୍ତ୍ତୀ ଶାସନକୁ ହସ୍ତାନ୍ତର ନକରି ସେମାନେ ଚାଲିଗଲା ପୂର୍ବରୁ ସେମାନଙ୍କର ସାର୍ବଭୌମତ୍ୱ ସେଇ ରାଜାମାନଙ୍କୁ ଫେରାଇଦେବାର ମସୁଧା କଲେ। ଫଳରେ ୨୧ ତୋପ ସଲାମି ରାଜ୍ୟଠାରୁ ଦେଶର ଅନ୍ୟତ୍ର ବିଛାଡ଼ି ହୋଇ ପଡ଼ିଥିବା କ୍ଷୁଦ୍ର କ୍ଷୁଦ୍ର ରାଜ୍ୟମାନେ

ମଧ୍ୟ ନିଜକୁ ୧୯୪୭ ଅଗଷ୍ଟ ପରେ ସାର୍ବଭୌମ ରାଜ୍ୟ ବୋଲି ଗୃହୀତ ହେବେ ବିଚାର କଲେ। ଭାଇସରୟ ସମ୍ରାଟଙ୍କର ପ୍ରତିଭୂ ଭାବରେ ଏହି ନିଷ୍ପତ୍ତି ମଧ୍ୟ ପତ୍ରାଳାପ ଦ୍ୱାରା ଜଣାଇ ଦେଲେ। ବଡ଼ ବଡ଼ ରାଜ୍ୟମାନଙ୍କୁ କୁହାଗଲା ସେମାନେ ନିଜ ସୁବିଧା ଦୃଷ୍ଟିରୁ ଭାରତ ବା ପାକିସ୍ତାନ କୌଣସି ସ୍ୱାଧୀନ ରାଜ୍ୟରେ ମିଶିପାରନ୍ତି ବା ନିଜେ ବର୍ତ୍ତମାନ ପାଇଁ ସ୍ୱାଧୀନ ରହିପାରନ୍ତି। କ୍ଷୁଦ୍ର ରାଜ୍ୟମାନଙ୍କୁ ନିଜର ଓ ପ୍ରଜାମାନଙ୍କର ସ୍ୱାର୍ଥ ଦୃଷ୍ଟିରୁ ଉଚିତ ପଦକ୍ଷେପ ନେବାକୁ ପରାମର୍ଶ ଦିଆଗଲା।

ଦେଶ ସ୍ୱାଧୀନ ହେବା ପୂର୍ବରୁ ସମ୍ବିଧାନ ଗଢ଼ିବା ନିମିତ୍ତ ପ୍ରତିନିଧିମୂଳକ ସମ୍ବିଧାନ ସଭା ଗଠିତ ହେଲା। ସାର ବେନିଗଲ ନରସିଂହ ରାଓ ଜଣେ ବିଶିଷ୍ଟ ନ୍ୟାୟ ବିଶାରଦ ଥିଲେ। ତାଙ୍କୁ ଏହି ସଭାର ପରାମର୍ଶଦାତା ଭାବରେ ରଖାଗଲା। ବିଲାତ ପାର୍ଲାମେଣ୍ଟରେ ଭାରତ ସ୍ୱାଧୀନତା ଆଇନ୍ ଆଲୋଚନା ହେଉଥିବା ସମୟରେ ସେ ଲର୍ଡ଼ ମାଉଣ୍ଟବେଟେନ ବଡ଼ଲାଟକୁ ଜୁଲାଇ ୨ ତାରିଖରେ ଜଣାଇଲେ ଭାରତରେ କ୍ଷୁଦ୍ର କ୍ଷୁଦ୍ର ଦେଶୀୟ ରାଜ୍ୟ ମାନଙ୍କରେ ୩୨୭ ସ୍ୱାଧୀନ ନରପତି ଥିଲେ। ସେମାନଙ୍କର ହାରାହାରି ଆୟତନ ପ୍ରାୟ ୨୦ ବର୍ଗମାଇଲ, ହାରାହାରି ଲୋକସଂଖ୍ୟା ପ୍ରାୟ ତିନି ହଜାର ଓ ହାରାହାରି ବାର୍ଷିକ ରାଜସ୍ୱ ୨୨ ହଜାର ଟଙ୍କା। ସେମାନେ ଏ ପର୍ଯ୍ୟନ୍ତ ନାମକୁ ମାତ୍ର ବିଚାର ବିଭାଗ କ୍ଷମତା ଉପଭୋଗ କରୁଛନ୍ତି। ସେମାନେ ଛୋଟ ଛୋଟ ଅପରାଧମାନ ବିଚାର କରନ୍ତି। ସେମାନେ ସ୍ୱାଧୀନ ହେଲେ ରାତାରାତି ପ୍ରଜାମାନଙ୍କର ଜୀବନ ମରଣ ସମସ୍ୟା ଉପରେ ଆଇନଗତ ଅଧିକାର ପାଇ ମୃତ୍ୟୁ ବା ଯାବଦ ଜୀବନ କାରାଦଣ୍ଡ ପ୍ରଦାନ କରିପାରିବେ। ସେ ପ୍ରସ୍ତାବ ଦେଇଥିଲେ ସେମାନଙ୍କ ବିଚାର ବିଭାଗୀୟ କ୍ଷମତା ଖର୍ବ ବା ସଙ୍କୁଚିତ କରାଯାଉ। ଲର୍ଡ଼ ମାଉଣ୍ଟବେଟେନ ଏହା ସହିତ ଏକମତ ହୋଇ ବିଲାତରେ ଥିବା ଭାରତ ସଚିବଙ୍କୁ ପଠାଇଲେ ମାତ୍ର ସେମିତି କିଛି ଆଇନ୍‌ଗତ ବ୍ୟବସ୍ଥା ରଖାଗଲା ନାହିଁ। ଏମିତି ଗୋଳମାଳିଆ ଅବସ୍ଥା ବେଳେ କେନ୍ଦ୍ରରେ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ ସ୍ୱାଧୀନତା ପୂର୍ବର ଅନ୍ତରୀଣ ସରକାର ଗଢ଼ା ହେଲା। ମୁସ୍‌ଲିମ ଲିଗ ବିଳମ୍ବରେ ଏଥିରେ ଯୋଗଦାନ କଲେ। ଏହି ମନ୍ତ୍ରୀ ମଣ୍ଡଳରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ସ୍ୱରାଷ୍ଟ୍ର ଓ ତଥ୍ୟ ବେତାର ବିଭାଗର ମନ୍ତ୍ରୀ ଥିଲେ। ସେ ପରେ ଦେଶୀୟ ରାଜ୍ୟମାନଙ୍କ ସହିତ କଥାବାର୍ତ୍ତା କରିବାକୁ ଗୋଟିଏ ନୂତନ ମନ୍ତ୍ରଣାଳୟ ସ୍ଥାପନ କଲେ ଓ ସମ୍ବିଧାନ ବିଶେଷଜ୍ଞ ଅନୁଭବୀ ଭି.ପି.ମେନନଙ୍କୁ ଏହାର ପ୍ରଥମ ସଚିବ ରୂପେ ନିଯୁକ୍ତି ଦେଲେ। ସର୍ଦ୍ଦାର ପଟେଲ ଜାଣିଥିଲେ ଯେ ରାଜ୍ୟମାନଙ୍କରେ କ୍ୱଚିତ ପ୍ରତିନିଧିମୂଳକ ଓ ସୁଶାସନ ଥିଲା। ପ୍ରଜାମଣ୍ଡଳ ଆନ୍ଦୋଳନ

ଫଳରେ ସେମାନେ ବିରାଟ ପରିବର୍ତ୍ତନର ସମ୍ମୁଖୀନ ହେଲେ। ସେମାନେ ଆଇନ୍‌ର ଶାସନ ବା ନାଗରିକ ସ୍ୱାଧିନତା ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ। କେବଳ ବ୍ରିଟିଶ ସରକାରଙ୍କର କର୍ମଚାରୀମାନଙ୍କୁ ମନାଇ ଖୁସି ରଖି ସେମାନଙ୍କର ମରଜି ଉପରେ ଶାସନ ଚଳେଇବା ସେମାନଙ୍କୁ ଜଣା ଥିଲା। ଇଂରେଜ ଶାସନର ବିଲୋପ ପରେ ଭାରତବର୍ଷରେ ଏକ ଦୃଢ଼ ଓ ଐକ୍ୟକୃତ ଶାସନ ପ୍ରତିଷ୍ଠା ସର୍ଦ୍ଦାର ପଟେଲଙ୍କ ଲକ୍ଷ୍ୟ ଥିଲା। ଏହି ଉଦ୍ଦେଶ୍ୟରେ ସେ ରାଜାମାନଙ୍କୁ ମନେଇଲେ ଫୁସଲେଇଲେ ଓ ସେମାନଙ୍କର ଦେଶପ୍ରେମ ପ୍ରତି ଆବେଗପୂର୍ଣ୍ଣ ଆବେଦନ କଲେ। ବଡ଼ଲାଟ ମାଉଣ୍ଟବେଟେନ ରାଜାମାନଙ୍କୁ କହିଲେ ସେମାନେ ଭାରତ ବା ପାକିସ୍ତାନ ଯେ କୌଣସି ଗୋଟିଏ ରାଜ୍ୟର ସହିତ ପ୍ରଜାମାନଙ୍କର ଭାବାବେଗ ମତାମତ ଓ ଭୌଗଳିକ ସ୍ଥିତି ବିଚାର କରି ମିଶିବା ଉଚିତ ମାତ୍ର ସ୍ୱାଧିନ ସ୍ଥିତି ଚିନ୍ତା କରିବା ଶୁଭଙ୍କର ନୁହେଁ।

ନୂଆ ମନ୍ତ୍ରଣାଳୟ ସ୍ଥାପନ ହେବା ସମୟରେ ସର୍ଦ୍ଦାର ପଟେଲ ରାଜ୍ୟବାସୀ ଓ ପଡ଼ୋଶୀ ପ୍ରଦେଶବାସୀଙ୍କ ମଧ୍ୟରେ ଭାବଗତ ଐକ୍ୟ ସଂସ୍କୃତି ପ୍ରତି ଧ୍ୟାନ ଆକର୍ଷଣ କଲେ। ସେ ରାଜ୍ୟମାନଙ୍କୁ ଶୁଭେଚ୍ଛୁ ବନ୍ଧୁ ଭାବରେ ଉପଦେଶ ଦେଇ ସମ୍ବିଧାନ ସଭାରେ ଯୋଗ ଦିଆଇଲେ। ଏହି ବିରାଟ ଐତିହାସିକ ଯୁଗାନ୍ତକାରୀ କାର୍ଯ୍ୟରେ ଦେଶପ୍ରେମରେ ଭାଗ ନେବାକୁ ନିବେଦନ କଲେ। ସେ ରାଜାମାନଙ୍କୁ ଚେତାଇ ଦେଲେ ଯେ ସର୍ବସାଧାରଣ ହିତ ଦୃଷ୍ଟିରୁ ସହଯୋଗ ଦ୍ୱାରା ଯଦି କାର୍ଯ୍ୟ କରାନଯାଏ ତାହା ହେଲେ ଅରାଜକତା ଓ ସାମୂହିକ ଧ୍ୱଂସ ଏହାର ପ୍ରତିଫଳ ହେବ। ଆମେ ମିଳିମିଶି କାମ ନ କଲେ ବଡ଼ସାନ ସମସ୍ତେ ଏହି ସମୂହ ଧ୍ୱଂସରେ ଭାଗୀଦାର ହେବା। କେନ୍ଦ୍ରୀୟ ଦେଶୀୟ ରାଜ୍ୟ ମନ୍ତ୍ରଣାଳୟ ମୁସ୍‌ଲିମ ଲିଗ ଓ ଜିନ୍ନାଙ୍କର ବିରୋଧ ସତ୍ତ୍ୱେ କାର୍ଯ୍ୟ କରୁଥିଲେ। ଜିନ୍ନା ଚାହୁଁଥିଲେ ରାଜାମାନେ ଭାରତ ସହିତ ନ ମିଶନ୍ତୁ। ଯୋଧପୁର ରାଜ୍ୟ ପାକିସ୍ତାନକୁ ଲାଗିଛି। ମହାରାଜା ହନୱନ୍ତ ସିଂହ ଓ ଜୟସଲମିରର ମହାରାଜା କୁମାର ଏହି ଦୁଇଜଣଙ୍କୁ ଜିନ୍ନା ଡାକି ପାକିସ୍ଥାନରେ ମିଶିବାକୁ ପ୍ରବର୍ତ୍ତାଇଲେ। ସେମାନଙ୍କୁ ଅଲେଖା ଫର୍ମ ଦେଲେ। ଯେକୌଣସି ସର୍ତ୍ତ ରଖି ପାକିସ୍ଥାନ ସହିତ ଯୋଗଦେବାକୁ ସେ କହିଲେ। ସେତେବେଳେ ମୁସ୍‌ଲିମ୍ ବହୁଳ ଅଞ୍ଚଳରେ ହିନ୍ଦୁ-ମୁସଲମାନ ଦଙ୍ଗା ଚାଲିଥାଏ। ଯୋଧପୁର ରାଜ୍ୟ ପାକିସ୍ଥାନକୁ ଲାଗିଛି। ସେ ମହାରାଜ କୁମାରଙ୍କୁ ମନାଇଲେ। ଜିନ୍ନାଙ୍କୁ ତାଙ୍କ ଉତ୍ତର ଥିଲା ଯଦି ମୋ ରାଜ୍ୟରେ ହିନ୍ଦୁ ମୁସଲମାନ ସଂଘର୍ଷ ହୁଏ ମୁଁ କଦାପି ହିନ୍ଦୁମାନଙ୍କ ବିରୁଦ୍ଧରେ ଯିବିନାହିଁ। ସେତେବେଳେ ଦଙ୍ଗା ହେତୁ ପାକିସ୍ଥାନରୁ ହିନ୍ଦୁମାନେ ପଳାଇ ଆସୁଥାଆନ୍ତି। ଯୋଧପୁର ମହାରାଜା ଲର୍ଡ଼

ମାଉଣ୍ଟବେଟେନଙ୍କୁ ଅଳ୍ପଦିନ ପରେ ସାକ୍ଷାତ କଲେ। ବଡ଼ଲାଟ ତାଙ୍କୁ ତାଙ୍କର ପ୍ରସ୍ତାବିତ ଯୋଗଦାନର ଅବାଞ୍ଛିତ ପ୍ରତିକ୍ରିୟା ବିଷୟରେ ସାବଧାନ କରିଦେଲେ। ଅନିଚ୍ଛାସତ୍ତ୍ୱେ ସେ ଭାରତରେ ଯୋଗଦାନ କଲେ। ଏହା ପୂର୍ବରୁ ପାତିଆଲା, ବରୋଦା, ବିକାନୀର ଗ୍ୱାଲିୟର ଆଦି ବଡ଼ ରାଜ୍ୟମାନେ ଯୋଗଦାନ କରିସାରିଥାଆନ୍ତି। ଭୋପାଳରେ ନବାବ ସ୍ୱାଧିନ ରହିବାର ଦୀର୍ଘଦିନ ଆଶା ପୋଷଣ କରି ଶେଷରେ ପ୍ରଜାମାନଙ୍କର ବିରୋଧ ଦୃଷ୍ଟେ ଅଗଷ୍ଟ ପ୍ରଥମ ସପ୍ତାହରେ ଭାରତରେ ଯୋଗଦାନ କଲେ। ଭାରତ ସ୍ୱାଧିନତା ଆଇନ୍ ବଳରେ ବ୍ରିଟିଶ ସରକାରଙ୍କ ସହିତ ସମସ୍ତ ଚୁକ୍ତି ଓ ସନନ୍ଦ ରଦ୍ଦ ହେବା ବ୍ୟବସ୍ଥା ଥିବା ହେତୁ ରାଜ୍ୟମାନଙ୍କ ସହିତ ପ୍ରଚଳିତ ବ୍ୟବସ୍ଥା ଚାଲୁ ରହିବାକୁ କାମଚଳା ରାଜିନାମା (Standstill Agreement) ସ୍ୱାକ୍ଷର ହେଲା। ସର୍ଦ୍ଦାର ପଟେଲଙ୍କର ନିରଳସ ଉଦ୍ୟମ ଓ ରାଜାମାନଙ୍କର ଦେଶପ୍ରୀତି ହେତୁ ଅଗଷ୍ଟ ପନ୍ଦର ୧୯୪୭ରେ ଦେଶ ସ୍ୱାଧିନ ହେବା ପୂର୍ବରୁ କେବଳ ହାଇଦରାବାଦ କାଶ୍ମୀର ଓ ଜୁନାଗଡ଼ ବ୍ୟତୀତ ଭାରତର ଅନ୍ୟ ସମସ୍ତ ନରପତିମାନେ ଭାରତ ସରକାରଙ୍କ ସହିତ (Instrument of Accession Standstill Agreement) ସମୀକୃତ ଚୁକ୍ତି କାମଚଳା ରାଜିନାମାରେ ଦସ୍ତଖତ କରିସାରିଥିଲେ। ସର୍ଦ୍ଦାର ପଟେଲଙ୍କ କଳ୍ପନା ଥିଲା ସବୁ ରାଜ୍ୟ ଭାରତବର୍ଷରେ ମିଶିବ। ଦେଶର ଏକ ମୁଣ୍ଡରୁ ଶେଷ ମୁଣ୍ଡ ପର୍ଯ୍ୟନ୍ତ ହୁକୁମନାମା କାର୍ଯ୍ୟକାରୀ ହେଉଥିବ। ଦେଶୀୟ ରାଜ୍ୟମାନେ ଭାରତବର୍ଷରେ ଯୋଗଦାନ କରିବା ଫଳରେ ଭାରତ ଏକତ୍ରୀକରଣ ସହଜ ହେଲା।

ସର୍ଦ୍ଦାର ପଟେଲ ରାଜାମାନଙ୍କୁ ବୁଝାଇଦେଲେ ଯେ ସାର୍ବଭୌମତ୍ୱ ଶକ୍ତି କେବଳ ପ୍ରଜାମାନଙ୍କର ଆନ୍ଦୋଳନ ଫଳରେ ଓହରିଯାଇଛି ଓ ଏଥିରେ ଦେଶୀୟ ରାଜାମାନଙ୍କର କୌଣସି ଅବଦାନ ନାହିଁ। ସେମାନେ ନିଜ ରାଜ୍ୟରେ ପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠା କରି ନିଜେ ଶାସନର ସାମ୍ବିଧାନିକ ମୁଖ୍ୟ ହୁଅନ୍ତୁ। ଅରାଜକତା ବ୍ୟାପିଗଲେ ସେମାନେ କୌଣସି ପ୍ରକାର ଲାଭବାନ ହେବେନାହିଁ। ଅଖଣ୍ଡକ୍ଷମତା ଉପଭୋଗ କରୁଥିବା ନରପତିମାନଙ୍କୁ ସେମାନଙ୍କର ସମସ୍ତ ବ୍ୟକ୍ତିଗତ କ୍ଷମତା ଓ ସୁବିଧା ପରିତ୍ୟାଗ କରିବା ନିମିତ୍ତ ଚାପ ପଡ଼ିଲା। ସେମାନଙ୍କର ହାତପାଣ୍ଠି, ବ୍ୟକ୍ତିଗତ ସମ୍ପତ୍ତିର ମାଲିକାନା, ପରିବାରବର୍ଗଙ୍କର ସୁରକ୍ଷା ଓ ସମ୍ମାନ ସୁନିଶ୍ଚିତ କରିବାକୁ ସର୍ଦ୍ଦାର ପଟେଲ ସେମାନଙ୍କୁ ପ୍ରତିଶ୍ରୁତି ଦେଲେ।

ସର୍ଦ୍ଦାର ପଟେଲ ରାଜ୍ୟମାନଙ୍କର ମିଶ୍ରଣ ବା ୟୁନିୟନ ଗଠନ କାର୍ଯ୍ୟ ଓଡ଼ିଶାରୁ ଆରମ୍ଭ କଲେ। ଦୁଇଦିନ ମଧ୍ୟରେ ସମସ୍ତ ସମସ୍ୟାର ଆଲୋଚନା ହୋଇ ସମାଧାନ ବାହାରିଲା ଓ ପଚିଶ ଗୋଟି ରାଜ୍ୟ ମିଶ୍ରଣ ଚୁକ୍ତିରେ ଦସ୍ତଖତ କଲାପରେ ସର୍ଦ୍ଦାର ପଟେଲ

ଓଡ଼ିଶା ଛାଡ଼ିଲେ। ଏହି ଯୁଗାନ୍ତକାରୀ ଐତିହାସିକ ପଦକ୍ଷେପ ସମଗ୍ର ଭାରତବର୍ଷରେ ଆନନ୍ଦ ସୃଷ୍ଟି କରିଥିଲା। କଟକରୁ ସର୍ଦ୍ଦାର ନାଗପୁର ଯାତ୍ରା କଲେ ଓ ସେଠାରେ ମଧ୍ୟ ସେହିପରି ରାଜାମାନଙ୍କୁ ସେମାନଙ୍କର ଭବିଷ୍ୟତ ସ୍ୱାର୍ଥ ଓ ପ୍ରଜା ଆନ୍ଦୋଳନର ହିଂସ୍ରତାର ପରିଣାମ ବୁଝାଇ ପନ୍ଦର ଗୋଟି ରାଜ୍ୟର ମଧ୍ୟ ପ୍ରଦେଶ ସହିତ ମିଶ୍ରଣର ଚୁକ୍ତିନାମା ସ୍ୱାକ୍ଷରିତ କରାଇଲେ। ଏହି ରାଜ୍ୟମାନଙ୍କ ମଧ୍ୟରେ ସର୍ବବୃହତ ବସ୍ତରର କ୍ଷେତ୍ରଫଳ ୧୩ ହଜାର ବର୍ଗମାଇଲ ଲୋକସଂଖ୍ୟା ୫ଲକ୍ଷ ଥିବାବେଳେ କ୍ଷୁଦ୍ରତମ 'ସାକଟି' ରାଜ୍ୟ ୧୩୮ ବର୍ଗମାଇଲ ଓ ୧ଲକ୍ଷ ବିଶିଷ୍ଟ ଥିଲା।

ଏହାପରେ ଗୋଟିଏ ପରେ ଗୋଟିଏ ରାଜ୍ୟର ମୁକୁଟ ଖସି ପଡ଼ିବାରେ ଲାଗିଲା। ସର୍ଦ୍ଦାର ପଟେଲ କାଥିଆୱାର୍ଡ଼ ଗଲେ ସେଠାରେ ୨୨୨ ଗୋଟି କ୍ଷୁଦ୍ର ସ୍ୱାଧିନ ରାଜ୍ୟ ଥିଲେ। ସେମାନଙ୍କୁ ବୁଝାସୁଝା କରି ସେ ଫେବୃୟାରୀ ୧୫ ତାରିଖରେ କାଥିଆୱାର୍ଡ଼ ସଂଯୁକ୍ତ ରାଜ୍ୟ ଗଠନ କଲେ। ୧୯୪୮ ଫେବୃୟାରୀ ୨୮ ତାରିଖରେ ଆଲୱାର ଭରତପୁର ଢ଼ୋଲପୁର ଓ କରଓ୍ୱାଲ ଚାରି ରାଜ୍ୟ ମିଶି ମତ୍ସ୍ୟ ୟୁନିୟନ ଗଠନ କଲେ। ମହାଭାରତରେ ମତ୍ସ୍ୟ ଦେଶରେ ବିରାଟ ରାଜା ରାଜତ୍ୱ କରୁଥିବା ଉଲ୍ଲେଖ ଅଛି। ଦାକ୍ଷିଣାତ୍ୟ ଓ ଗୁଜୁରାଟର ରାଜ୍ୟଗୁଡ଼ିକ ଦେଶ ଭିତରେ ବିକ୍ଷିପ୍ତ ହୋଇ ବମ୍ବେ ରାଜ୍ୟରେ ପଡ଼ିଥିଲେ। ସେମାନେ ସମସ୍ତେ ବମ୍ବେ ପ୍ରଦେଶରେ ଜୁନ ୧୯୪୮ରେ ମିଶିଯିବାକୁ ରାଜି ହେଲେ। କୋଲହାପୁର ବଡ଼ରାଜ୍ୟ ଥାଇ ମାର୍ଚ୍ଚ ୧୯୪୮ ଏହା ମଧ୍ୟ ଏହି ମିଶ୍ରଣରେ ଭାଗୀ ହେଲା। ମଧ୍ୟଭାରତରେ ଗୋଆଲିୟର, ଇନ୍ଦୋର ଓ ମାଳବ ରାଜ୍ୟମାନେ ମଧ୍ୟ ନିଜ ନିଜ ମଧ୍ୟରେ ବିବାଦକୁ ବିସର୍ଜନ ଦେଇ ମଧ୍ୟଭାରତ ୟୁନିୟନ ୧୯୪୮ ମଇ ମାସରେ ଗଢ଼ିବାକୁ ରାଜି ହେଲେ। ଭାରତର ମଧ୍ୟସ୍ଥଳରେ ବୁନ୍ଦେଲ ଖଣ୍ଡ ଓ ବାଘେଲଖଣ୍ଡ ମଧ୍ୟରେ ତିନି ପାଖେ ଉତ୍ତର ପ୍ରଦେଶ ଓ ଦକ୍ଷିଣରେ ମଧ୍ୟପ୍ରଦେଶ ଥାଇ ରହିଥିବା ୩୫ଗୋଟି ରାଜ୍ୟ ବିନ୍ଧ୍ୟ ପ୍ରଦେଶ ଗଠନ କଲେ। ପଞ୍ଜାବର ରାଜ୍ୟମାନେ ମଧ୍ୟ ଏକାଠି ହୋଇ ୧୯୪୮ ଜୁଲାଇ ମାସରେ ପାତିଆଲା ପୂର୍ବ ପଞ୍ଜାବ ରାଜ୍ୟ ୟୁନିୟନ ଗଠନ କଲେ। ରାଜସ୍ଥାନର ଅନ୍ୟ ରାଜ୍ୟ ଗୁଡ଼ିକ ମଧ୍ୟ ମତ୍ସ୍ୟ ୟୁନିୟନ ସହିତ ମିଶି ୧୯୪୯ ମେ ମାସରେ ରାଜସ୍ଥାନ ୟୁନିୟନ ଗଠନ କଲେ। ଏହା ପୂର୍ବରୁ ରାଜସ୍ଥାନର ନରପତିମାନେ ପ୍ରଥମେ ଗୋଟିଏ ୟୁନିୟନ ଗଢ଼ି ସାରିଥିଲେ।

ଦକ୍ଷିଣରେ ୧୯୪୯ ମେ ମାସରେ ଦୁଇ ସ୍ୱାଧିନ ରାଜ୍ୟ ତ୍ରିବାଙ୍କୁଡ଼ ଓ କୋଚିନ୍ ମିଶି ୟୁନିୟନ ଗଠନ କଲେ। ଏହି ୟୁନିୟନ ମାନଙ୍କରେ ରାଜାମାନଙ୍କ ମଧ୍ୟରୁ ଜଣେ

ରାଜ ପ୍ରମୁଖ ନିଯୁକ୍ତ ହେଉଥିଲେ ପ୍ରଦେଶମାନଙ୍କ ରାଜ୍ୟପାଳ ପରି ସେମାନେ ସମ୍ବିଧାନଗତ କ୍ଷମତା ଉପଭୋଗ କରୁଥିଲେ। ୧୯୪୯ ଜୁନ ମାସରେ ମହୀଶୂର ରାଜ୍ୟ ସମ୍ପୂର୍ଣ୍ଣ ଭାବରେ ଭାରତ ସହିତ ମିଶ୍ରଣ ହେବା ଘୋଷଣା କଲା ଓ ମହୀଶୂରର ମହାରାଜା ରାଜ୍ୟ ପ୍ରମୁଖ ଭାବେ ନିଯୁକ୍ତ ହେଲେ। ବରୋଦା ଏକ ପ୍ରଗତିଶୀଳ ରାଜ୍ୟ ଥିଲେ ମଧ୍ୟ ବରୋଦାର ରାଜା ସାର ପ୍ରତାପ ସିଂହ ଗାଇଗୋଓ୍ୱାର୍ଡ଼ କାଳ କ୍ଷେପଣ କରି ଶେଷରେ ୧୯୪୯ ଜାନୁୟାରୀ ମାସରେ ବମ୍ବେ ପ୍ରଦେଶ ସହିତ ମିଶ୍ରଣ ଘୋଷଣା କଲେ।

ଯାଦୁ ସମ୍ରାଟ କୁହୁକ କାଠି ଜରିଆରେ ନିଜ ପେଡ଼ିରୁ ଗୋଟିଏ ପରେ ଗୋଟିଏ କୁହୁକ ଦେଖାଇ ଦର୍ଶକମାନଙ୍କୁ ମୁଗ୍ଧ କଲାପରି ନିଜ ସଚିବ ଭି.ପି. ମେନନଙ୍କର ଦୂରଦୃଷ୍ଟି ସମ୍ପନ୍ନ ସହାୟତାରେ ଭଗ୍ନ ସ୍ୱାସ୍ଥ୍ୟ ସର୍ଦ୍ଦାର ପଟେଲ ଓଡ଼ିଶା ଓ ଛତିଶଗଡ଼ ରାଜ୍ୟ ମିଶ୍ରଣ ପରେ ଗୋଟିଏ ପରେ ଗୋଟିଏ ସ୍ୱାଧିନରାଜ୍ୟର ଭାରତ ସହିତ ସମ୍ପୂର୍ଣ୍ଣ ମିଶ୍ରଣର ଘୋଷଣା କରିବାରେ ଲାଗିଲେ। ଭାରତର ବିଖଣ୍ଡିତ ମାନଚିତ୍ର ପାକିସ୍ତାନ ସୃଷ୍ଟି ହେବା ପରେ ଯେଉଁ ରୂପ ଧରିଥିଲା ଏହା ଫଳରେ ତାହା ସମ୍ପୂର୍ଣ୍ଣ ବଦଳିଗଲା। ୫୫୪ ଗୋଟି ଦେଶୀୟ ରାଜ୍ୟ ମଧ୍ୟରୁ ୨୧୬ ଗୋଟି ନିକଟତମ ପ୍ରଦେଶ ସହିତ ମିଶିଗଲେ। ୩୧୦ ଗୋଟି ୟୁନିୟନ ଫଳରେ ଦୃଢ଼ୀକୃତ ହେଲେ। ପାଞ୍ଚଗୋଟି ବଡ଼ରାଜ୍ୟ ଯଥା ଭୋପାଳ, କଚ୍ଛ, ମଣିପୁର, ତ୍ରିପୁରା ଓ ବିଳାସପୁର କେନ୍ଦ୍ରର ପ୍ରତ୍ୟକ୍ଷ ଶାସନରେ ଚିଫ୍ କମିଶନରଙ୍କ ମାଧ୍ୟମରେ ରହିଲେ। ୨୧ଗୋଟି ପଞ୍ଜାବରେ ପାର୍ବତୀୟ ରାଜ୍ୟ ହିମାଚଳ ପ୍ରଦେଶ ସହିତ ମିଶିଗଲେ ଓ ଦୁଇଟି ରାଜ୍ୟ ମହୀଶୂର ହାଇଦରାବାଦ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା। ମୋଟ ଉପରେ ୫୫୪ ଗୋଟି ରାଜ୍ୟ ନିଜର ସତ୍ତା ହରାଇ ୧୪ଗୋଟି ୟୁନିୟନ ଓ ରାଜ୍ୟରେ ସୀମିତ ହେଲେ।* ରାଜ୍ୟମାନଙ୍କରେ ପ୍ରଚଳିତ ଶାସନ ପୁରୁଣାକାଳିଆ ଓ ଭିନ୍ନଭିନ୍ନ ଥିଲା। ଅଭିଜ୍ଞ କର୍ମଚାରୀମାନଙ୍କୁ ପ୍ରଦେଶରୁ ପଠାଯାଇ ଏହି ଶାସନକୁ ନୂତନ ପ୍ରଣାଳୀରେ ଶୃଙ୍ଖଳିତ ଓ ସରଳ ଲବ୍ଧ କରାଇ ଦିଆଗଲା। ସ୍ୱାଧିନ ଭାରତରେ ନୂତନ ସମ୍ବିଧାନ ୨୬ ଜାନୁୟାରୀ ୧୯୫୦ ତାରିଖରେ କାର୍ଯ୍ୟକାରୀ ହେଲା ଓ ତାହା ପୂର୍ବରୁ ଏହି ସବୁ ରାଜ୍ୟର ମିଶ୍ରଣ ଓ ଶାସନର ଦୃଢ଼ୀକରଣ ଶେଷ ହୋଇସାରିଥିଲା।

ଇତିହାସରେ ଯୁଗପୁରୁଷ ଲୌହମାନବଙ୍କ ଦେଶପ୍ରେମ ଓ କୂଟନୀତି ହୃଦୟଙ୍ଗମ କରି ହେବ ଯଦି ଆମ୍ଭେମାନେ ମନେ ରଖୁ ଯେ ସ୍ୱାଧିନତାର ପ୍ରାକ କାଳରେ ପାକିସ୍ତାନ

---

*ମାତ୍ର ଲର୍ଡ଼ ମାଉଣ୍ଟବେଟେନ ୧୯୪୭ ମସିହା ଜୁଲାଇ ୨୯ ତାରିଖରେ ଢୋଲପୁର ମହାରାଜାରାଣଙ୍କୁ ଏକପତ୍ରରେ ଏହି ସଂଖ୍ୟା ୫୬୫ ଦର୍ଶାଇଅଛନ୍ତି।

ଗଠନ ଫଳରେ ଆମ୍ଭେମାନେ ୩ ଦଶମିକ ୬ଲକ୍ଷ ବର୍ଗମାଇଲ ଭୂଖଣ୍ଡ ଓ ୮କୋଟି ୧୫ଲକ୍ଷ ଲୋକସଂଖ୍ୟା ହରାଇଥିଲୁ । ଦେଶୀୟ ରାଜ୍ୟର ଏକୀକରଣ ଫଳରେ ଆମ୍ଭେମାନେ ୫ଲକ୍ଷ ବର୍ଗମାଇଲ ଭୂଖଣ୍ଡ ଓ ୮କୋଟି ୬୫ ଲକ୍ଷ ଲୋକସଂଖ୍ୟା ଖଣ୍ଡିତ ଭାରତବର୍ଷରେ ମିଶାଇବାକୁ ସକ୍ଷମ ହେଲୁ । ସମଗ୍ର ଭାରତରେ ଭେଦ ସୃଷ୍ଟିକାରୀ ଅଞ୍ଚଳ ଲୋପ ପାଇ ଏକ ଭାରତ ଭୂଖଣ୍ଡର ଜୟଧ୍ୱନି ଶୁଣାଗଲା ।





ନିଜାମ ମିର ଉସମାନ ଅଲ୍ଲୀଖାନ୍
(୧୮୮୬-୧୯୬୭)

# ହାଇଦ୍ରାବାଦର ସପ୍ତମ ଓ ଶେଷ ନିଜାମ
# ମିର ଉସମାନ ଅଲିଖାଁ

ଭାରତରେ ସମସ୍ତ ଦେଶୀୟ ରାଜ୍ୟ ମଧ୍ୟରେ ହାଇଦରାବାଦ ପ୍ରଥମ ସ୍ଥାନ ଦଖଲର ଯୋଗ୍ୟତା ରଖିଥିଲା । ଏହାର ଶାସକ ୨୧ତୋପ ସଲାମି ପାଇବାକୁ ଅଧିକାରୀ ଥିଲେ । ରାଜ୍ୟର ଆୟତନ ୮୨ ହଜାର ବର୍ଗମାଇଲ । ୟୁରୋପର ଫ୍ରାନ୍ସ ଦେଶ ସହିତ ପ୍ରାୟ ସମାନ ଏବଂ ଲୋକସଂଖ୍ୟା ୧ କୋଟି ୬୨ଲକ୍ଷ । ଏହାର ରାଜସ୍ୱ ଥିଲା ବାର୍ଷିକ ୨୬ କୋଟି । ରାଜ୍ୟର ନିଜର ମୁଦ୍ରା, ଛପା ନୋଟ ଓ ଡାକ ଟିକେଟ୍ ଚାଲୁଥିଲା । ଏଡ଼େବଡ଼ ରାଜ୍ୟ ଭାରତର ଠିକ ମଝିରେ ଉତ୍ତର ଦକ୍ଷିଣ ଭାରତକୁ ଅଲଗା କଲାପରି ଥିଲା । ଏହାର ଉତ୍ତରରେ ମଧ୍ୟ ପ୍ରଦେଶ ପଶ୍ଚିମରେ ବମ୍ବେ ପ୍ରେସିଡ଼େନ୍ସି ଓ ପୂର୍ବ ଦକ୍ଷିଣରେ ମାଦ୍ରାଜ ପ୍ରେସିଡ଼େନ୍ସି ଘେରି ରହିଥିଲା । ସମଗ୍ର ଲୋକ ସଂଖ୍ୟାର ଶତକଡ଼ା ୮୫ଭାଗ ହିନ୍ଦୁ ଥିଲେ ।

ଶାସକ ମୁସଲମାନ ଥିଲେ ତେଣୁ ସରକାରୀ ଚାକିରୀ ପୁଲିସ ଓ ସୈନ୍ୟ ବାହିନୀରେ ମୁସଲମାନମାନେ ଅଧିକ ସଂଖ୍ୟାରେ ଥିଲେ। ପୁଲିସ ବାହିନୀରେ ଶତକଡ଼ା ଦଶ ଓ ସୈନ୍ୟ ବିଭାଗରେ କାଁ ଭାଁ ହିନ୍ଦୁ କର୍ମଚାରୀ ନିଯୁକ୍ତ ଥିଲେ। ୧୯୪୬ ମସିହାରୁ ନିଜର ଗୋଟିଏ ବିଧାନ ସଭା ଥିଲା। ସେଥିରେ ୧୩୨ ଜଣିଆ ସଭାରେ ହିନ୍ଦୁ ମାନଙ୍କ ଠାରୁ ମୁସଲମାନ ସଂଖ୍ୟା ଦଶ ଜଣ ଅଧିକ ଥିଲା।

ଏହି ହାଇଦ୍ରାବାଦର ପ୍ରତିଷ୍ଠାତା ଥିଲେ ମିର କମରୁଦ୍ଦିନ ଚିନକିଲଚଖାଁ। ସେ ଆଉରୋଙ୍ଗଜେବଙ୍କର ସେନାପତି ଗାଜିଉଦ୍ଦିନ ଖାଁ ଫିରୋଜ ଜଙ୍ଗଙ୍କ ପୁତ୍ର । ଗାଜିଉଦ୍ଦିନ ପ୍ରଥମ ଖଲିଫାଙ୍କର ବଂଶଧର ବୋଲି ଦାବୀ କରୁଥିଲେ। ମୋଗଲ ସାମ୍ରାଜ୍ୟ ପତନମୁଖୀ ଥିବାବେଳେ ଫରୁକସେୟାର ଗାଜିଉଦ୍ଦିନକୁ ଦକ୍ଷିଣରେ ମୋଗଲ ପ୍ରତିନିଧି କରି ତାକୁ ନିଜାମ ଉଲ ମୁଲକ ଫିରୋଜ ଜଙ୍ଗ, ପରବର୍ତ୍ତୀ ସମ୍ରାଟ ମହମ୍ମଦ ସାହା ତାଙ୍କୁ ଆସଫଜାହ ଉପାଧି ଦେଲେ। ସେହି ବଂଶ ସେଇଦିନୁ ଏହି ନାମରେ ପରିଚିତ ହୋଇ ଆସୁଛି। ୧୭୨୪ ଖ୍ରୀଷ୍ଟାବ୍ଦ ବେଳକୁ କମରୁଦ୍ଦିନ ନିଜକୁ ନାମକୁ ମାତ୍ର ମୋଗଲ ସମ୍ରାଟଙ୍କର ବଶତା ସ୍ୱୀକାର କରୁଥିଲେ ମଧ କାର୍ଯ୍ୟତଃ ନିଜକୁ ସ୍ୱାଧିନ ରଖିଲେ। ୧୭୪୮ ଖ୍ରୀଷ୍ଟାବ୍ଦ ବେଳକୁ ଦେଶରେ ଇଂରେଜ ଓ ଫରାସୀ ବଣିକମାନଙ୍କର ମଧରେ ତୀବ୍ର ପ୍ରତିଯୋଗିତା ଚାଲିଥିଲା । କମରୁଦ୍ଦିନ ସେବର୍ଷ ମରିଯିବା ପରେ ଉତ୍ତରାଧିକାରୀ ବିବାଦ ସମୟରେ ସେମାନେ ବିଭିନ୍ନ ପକ୍ଷର ସମର୍ଥନ କଲେ। ଫରାସୀ ସମର୍ଥନ ପାଇଁ ତାଙ୍କ ତୃତୀୟ ପୁତ୍ର ସଲାବତଜଙ୍ଗ ସିଂହାସନ ଅଧିକାର କଲେ। ଫରାସୀମାନଙ୍କୁ ସେ ମଧ ସାହାଯ୍ୟ କଲେ। ମରହଟ୍ଟାମାନଙ୍କର ଉତ୍ତର ସରକାରର ୪ଟି ଜିଲ୍ଲା ସେମାନଙ୍କୁ ଦେଇଦେଲେ। ମାତ୍ର ପରେ ଏହି ରାଜ୍ୟଟି ଇଂରେଜମାନେ ଫରାସୀଙ୍କଠାରୁ ଛଡ଼ାଇ ନେଲେ। କିଛିକାଳ ପରେ ତାଙ୍କ ସାନ ଭାଇ ନିଜାମ ଅଲିଖାଁ ସଲାବତ ଜଙ୍ଗଙ୍କୁ ପଦଚ୍ୟୁତ କଲେ। ସେ ଇଂରେଜ ଅଞ୍ଚଳ ଦଖଲ କରିବାରୁ ଯୁଦ୍ଧ ହେଲା । ସେଥିରେ ହାଇଦ୍ରାବାଦ ହାରିଗଲା ଓ ସନ୍ଧି ଫଳରେ ନିଜାମ ଇଂରେଜମାନଙ୍କ ସହାୟତା ପାଇ ରହିଲେ। ପୁଣି ଯେତେବେଳେ ମହୀଶୂରର ହାଇଦର ଅଲ୍ଲୀ ଇଂରେଜ ବିରୁଦ୍ଧରେ ଯୁଦ୍ଧ କରୁଥିଲେ ନିଜାମ ଅଲ୍ଲୀଖାଁ ସନ୍ଧି ସର୍ତ୍ତ ଭାଙ୍ଗି ତାଙ୍କୁ ସାହାଯ୍ୟ କଲେ। ନିଜାମ ପୁଣି ଯୁଦ୍ଧରେ ହାରିଲେ ଓ ପୁଣି ଇଂରେଜ ସୈନ୍ୟ ବାହିନୀର ନଜରରେ ରହିଲେ । ହାଇଦରାବାଦରେ ବ୍ରିଟିଶ ସୈନ୍ୟ ଓ ଜଣେ ରେସିଡ଼େଣ୍ଟ ରହିଲେ। ନିଜାମ ଆଉ ଥରେ ଦୁଃସାହସ କରି ମରହଟ୍ଟାମାନଙ୍କ ସହିତ ଯୁଦ୍ଧ କଲେ, ହାରିଲେ ଓ ନିଜ ରାଜ୍ୟର ବହୁତ ଅଂଶ ସେମାନଙ୍କୁ ଛାଡ଼ି ଦେବାକୁ ବାଧ ହେଲେ।

୧୭୯୯ ବେଳକୁ ଟିପୁ ସୁଲତାନ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିବା ବେଳେ ନିଜାମ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ସାହାଯ୍ୟ କଲେ । ଟିପୁ ସୁଲତାନ ହାରିଗଲେ। ପୁରସ୍କାର ସ୍ୱରୂପ ତାଙ୍କ ରାଜ୍ୟର କିଛି ଅଂଶ ଇଂରେଜମାନେ ନିଜାମଙ୍କୁ ଦେଲେ । ସେଇଦିନୁ ନିଜାମମାନେ ଇଂରେଜ ମାନଙ୍କର ବିଶ୍ୱସ୍ତ ହୋଇ ଆସୁଛନ୍ତି । ଶେଷ ସ୍ୱାଧିନ ନିଜାମ ଉତ୍ତରାଧିକାରୀ ଭାବରେ ସପ୍ତମ ନିଜାମ ଥିଲେ। ମିର ଉସମାନ ଅଲ୍ଲୀଖାଁ ବାହାଦୁର ତାଙ୍କ ପିତା ମେହବୁକ ଅଲିଖାଁଙ୍କ ମୃତ୍ୟୁ ପରେ ୨୯ ଅଗଷ୍ଟ ୧୯୧୧ ମସିହାରେ ରାଜଗାଦି ପାଇଥିଲେ। ଭାରତର ଅନ୍ୟ ସବୁ ରାଜାମାନେ ମାନ୍ୟାସ୍ପଦ (His Highness) ଥିବାବେଳେ ହାଇଦାରବାଦର ନିଜାମଙ୍କୁ ପରମ ମାନ୍ୟାସ୍ପଦ (His Exalter Higness)ଭାବେ ସମ୍ବୋଧନ କରାଯାଉଥିଲା। ୧୯୧୮ ମସିହାରେ ତାଙ୍କୁ ଏହି ଉପାଧି ଦିଆଯାଇଥିଲା ଓ ତାର କିଛି ଦିନ ପରେ ଇଂଲଣ୍ଡର ରାଜା ଏକ ବିଶେଷ ସ୍ୱ ସ୍ୱାକ୍ଷରିତ ପତ୍ର ଲେଖି ତାଙ୍କୁ ପରମ ଅନୁଗତ ବନ୍ଧୁ (Faithful Ally) ଉପାଧି ମଧ ପ୍ରଦାନ କଲେ । ନିଜାମଙ୍କର ସମ୍ପୂର୍ଣ୍ଣ ଉପାଧି ସହିତ ନାମଥିଲା 'ହିଜ ଏକଜାଲଟେଡ଼ ହାଇନେସ' ପରମ ସମ୍ମାନସ୍ପଦରୁ ସ୍ତମ-ଇ-ଜମାନ ଓ୍ୱାଲ ମାଲିକ, ଆସଫଜାହ ନବାବ ମିରଉସମାନ ଅଲ୍ଲିଖାଁ ବାହାଦୁର। ନିଜାମ ଉସମାନ ଅଲ୍ଲୀଖାଁଙ୍କ ପିତା ମେହବୁଦଅଲ୍ଲି ଖାଁ ନିଜ ହାରେମରେ ଅସଂଖ୍ୟ ବେଗମ ଓ ଦାସଦାସୀ ରଖିଥିଲେ ମଧ ରାଜ୍ୟର ଅନ୍ୟ ଜଣେ ବ୍ୟବସାୟୀଙ୍କ ପତ୍ନୀ ସହିତ ଅବୈଧ ସମ୍ପର୍କ ରଖିଥିଲେ। ଓସମାନ ଅଲ୍ଲି ଏହି ସମ୍ପର୍କରୁ ଜାତ ବୋଲି କୁହାଯାଉଥିଲା। ଜନ୍ମରୁ ନିଜାମ ତାଙ୍କୁ ନିଜ ପ୍ରାସାଦରେ ରଖି ପ୍ରତିପାଳିତ କଲେ, ମାତ୍ର ତାଙ୍କର ଜନ୍ମଗତ କୁଟିଳ ସ୍ୱଭାବ ଓ ବ୍ୟବସାୟୀକ ବୁଦ୍ଧି ଦେଖି ନିଜାମ ମେହବୁବ ଅଲ୍ଲି ସେ ଅବୈଧ ସନ୍ତାନ ଓ ତାଙ୍କର ବୈଧ ସନ୍ତାନ ସଲାବତଜାହା ଓ ବାସବତଜାହା ଉତ୍ତରାଧିକାରୀ ହେବା ଯୋଗ୍ୟ ବୋଲି ପ୍ରକାଶ କରୁଥିଲେ। କୌଣସି ବ୍ୟବସ୍ଥା କରିବା ପୂର୍ବରୁ ତାଙ୍କର ମୃତ୍ୟୁ ହେଲା । ନିଜାମ ଗାଦି ପାଇବା ପରେ ଓସମାନ ଅଲ୍ଲି ଖାଁ ସମସ୍ତଙ୍କୁ ନଅରରୁ ତଡ଼ିଦେଲେ । ସଲାବତ ଜାହ ଓ ବାସବତ ଜାହ ସେମାନେ ବୈଧ ସନ୍ତାନ ଭାବେ ସେମାନେ ଅଲ୍ଲି ନିଜାମ ଗାଦି ପାଇବା ପରେ ଓସମାନ ଅଲ୍ଲି ଖାଁଙ୍କ ବଦଳରେ ସିଂହାସନର ଅଧିକାରୀ ଭାବେ ଦାବୀ କଲେ। ମାତ୍ର ସେମାନଙ୍କର ଦାବୀ କୌଣସି ଠାରେ ଗୃହୀତ ହୋଇ ନଥିଲା। ନିଜାମ ବଞ୍ଚିଥିବା ବେଳେ ବମ୍ବେରେ ଥିବା ତାଙ୍କର ହାଇଦରାବାଦ ପାଲେସକୁ ପୁତ୍ର ସଲାବତ ଜାହାଙ୍କୁ ଦେଇଥିଲେ। ମାତ୍ର କ୍ଷମତାକୁ ଆସି ଓସମାନ ଅଲ୍ଲି ଖାଁ ତାଙ୍କୁ ଉଚ୍ଛେଦ କରିବାକୁ ବସିଲେ। ବିବାଦ ବଡ଼ଲାଟ (ବ୍ରିଟିଶ ରାଜପ୍ରତିନିଧି)ଙ୍କ ନିକଟକୁ

ଗଲା। ସେ ନିଷ୍ପତ୍ତି କଲେ ଓସମାନ ଖାଁ ଉଚିତ କ୍ଷତିପୂରଣ ଦେଲେ ଏହି ନଅରଟି ପାଇବେ ଓ କ୍ଷତିପୂରଣ ୧୭ଲକ୍ଷ ଟଙ୍କାରେ ଧାର୍ଯ୍ୟ କରାଗଲା। ନିଜାମ ଓସମାନ ଅଲ୍ଲି ଏହି ଅର୍ଥ ବଦଳରେ ବାସବତଜାହାଙ୍କ ଠାରୁ ନଅରଟି ପାଇଲେ। ମାତ୍ର ଅଳ୍ପଦିନ ପରେ ଅତି ରହସ୍ୟଜନକ ଭାବରେ ବାସବତାଜାହାଙ୍କର ମୃତ୍ୟୁ ଘଟିଲା ଓ ନିଜାମ ଓସମାନ ଅଲ୍ଲିଙ୍କୁ ଏହା ପୁଣି ମିଳିଲା। ଅନ୍ୟ ପୁତ୍ର ବାସବତାଜାହ ବଞ୍ଚିଥିବା ପର୍ଯ୍ୟନ୍ତ ସରକାରୀ ରାଜକୋଷରୁ ମାସିକ ପାଞ୍ଚ ହଜାର ଟଙ୍କା ଭତ୍ତା କେବଳ ପାଉଥିଲେ।

ହାଇଦରାବାଦ ନିଜାମ ବାହାଦୁର ପରମ ସମ୍ମାନାସ୍ପଦ ଓ ଅନୁଗତ ବନ୍ଧୁ ଉପାଧି ଉପଭୋଗ କରୁଥିଲେ ମଧ୍ୟ ତାଙ୍କ ସହିତ ଇଂରେଜ ସରକାର ଅନ୍ୟ ରାଜାମହାରାଜଙ୍କ ପରି ସମାନ ବ୍ୟବହାର କରୁଥିଲେ ଓ ତାଙ୍କ ପ୍ରତି କୌଣସି ପକ୍ଷପାତିତା ନଥିଲା। ରାଜ୍ୟର ଆଭ୍ୟନ୍ତରିକ ବ୍ୟପାରରେ ଇଂରେଜ ସରକାର ଆବଶ୍ୟକ ସ୍ଥଳେ ହସ୍ତକ୍ଷେପ କରୁଥିଲେ। ମିର-ଓସମାନ ଅଲ୍ଲୀ ଖାଁ ରାଜ୍ୟ ପାଇବାର ଅଳ୍ପଦିନ ପରେ ୧୯୧୯ ଅକ୍ଟୋବର ମାସରେ ବଡ଼ଲାଟ ଲର୍ଡ଼ ହାର୍ଡ଼ିଙ୍ଗ ଏକ ପତ୍ରରେ ତାଙ୍କୁ ତାଗିଦ୍ କରିଥିଲେ। ଦୁଇବର୍ଷ ପର୍ଯ୍ୟନ୍ତ ତାଙ୍କର କାର୍ଯ୍ୟ ପରୀକ୍ଷାମୂଳକ ଭାବରେ ରଖାଯିବ। ଏହାପରେ ଭାରତ ସରକାର ସହଜରେ ବର୍ତ୍ତମାନ ପରି ଏକ ରିଜେଣ୍ଟ ପରିଷଦ (Council of Regency) ଗଠନ କରିପାରିବେ। ୧୯୧୯ ମସିହାରେ ବଡ଼ଲାଟ ଚେମସ ଫୋର୍ଡ଼ ପ୍ରଥମେ ଏକ ପତ୍ରରେ ଓ ପରେ ଏକ ବ୍ୟକ୍ତିଗତ ସାକ୍ଷାତରେ ତାଙ୍କୁ ହୁସିଆର କରିଦେଇଥିଲେ। ଯଦି ତାଙ୍କ ରାଜ୍ୟରେ କୁଶାସନ ଲାଗି ରହେ ତେବେ ଭାରତ ସରକାର ବାଧ୍ୟ ହୋଇ ସେଥିରେ ହସ୍ତକ୍ଷେପ କରିବେ।

ବେରାର ପ୍ରଦେଶ ହାଇଦରାବାଦର ପ୍ରଥମେ ଏକ ଅଂଶ ଥିଲା। ଚୁକ୍ତି ମୁତାବକ ନିଜାମଙ୍କ ସୁରକ୍ଷା ପାଇ ହାଇଦରାବାଦରେ ରେସିଡ଼େଣ୍ଟ ଓ ଇଂରେଜ ଫୌଜ ରହୁଥିଲେ। ସେମାନଙ୍କ ବାବଦ ଖର୍ଚ୍ଚ ନିଜାମ ଦେବାକୁ ବାଧ୍ୟ ଥିଲେ। ଅନେକ ଦିନ ଧରି ଏହି ଅର୍ଥ ନିଜାମ ଦାଖଲ ନକଲାରୁ ଇଂରେଜ ସରକାର ବେରାର ଦଖଲ କରିନେଲେ। ପରବର୍ତ୍ତୀ କାଳରେ ୧୯୦୨ରେ ଲର୍ଡ଼ କର୍ଜନ ନିଜାମଙ୍କୁ କହି ବେରାର ଅଞ୍ଚଳ ଚିରସ୍ଥାୟୀ ନଜରାନା ପଟ୍ଟା ଭାବରେ ବାର୍ଷିକ ୨୫ଲକ୍ଷ ଟଙ୍କା ନଜରାନାରେ ଭାରତ ସରକାରଙ୍କୁ ଦିଆଇଲେ। ଏହି ଅଞ୍ଚଳ ତା'ପରେ ମଧ୍ୟ ପ୍ରଦେଶର ଏକ ଅଂଶ ଭାବେ ଗଣାଗଲା। ବେରାରରୁ ମିଳିଥିବା ଆୟରେ ନିଜାମଙ୍କର ବକେୟା ଦେୟ ଅସୁଲ ହୋଇ ସାରିଥିଲା। ମାତ୍ର ନିଜାମଙ୍କର ଏହି ଅଞ୍ଚଳ ଉପରେ ମାଲିକାନା ସ୍ୱୀକୃତ ହେଉଥିଲେ। ସେଥିଯୋଗୁଁ ନିଜାମଙ୍କର ପତାକା ଏହି ଅଞ୍ଚଳରେ ଉଡୁଥିଲା । ଏଥିରେ ଗର୍ବିତ ହୋଇ ନିଜାମ ଏହି ଅଞ୍ଚଳ ଫେରି ପାଇବାକୁ

ସାର୍ବଭୌମ ସରକାରଙ୍କ ଠାରୁ ଦାବୀ କଲେ। ୧୯୨୬ ମସିହାରେ ନିଜାମ ନିଜକୁ ସ୍ୱାଧିନ ଦେଶର ରାଜା ଓ ବ୍ରିଟିଶ ସରକାରଙ୍କ ଅଧିନସ୍ଥ ନୁହଁନ୍ତି ବୋଲି ଦାବୀ କଲେ। ବଡ଼ଲାଟ ଲର୍ଡ଼ ରିଡ଼ିଂ ଏହାର ଉତ୍ତରରେ ତାଙ୍କୁ ଜଣାଇଲେ ଯେ ଭାରତରେ ବ୍ରିଟିଶ ସମ୍ରାଟ ସର୍ବୋଚ୍ଚ କ୍ଷମତା ଅଧିକାରୀ ଓ କୌଣସି ରାଜା ନିଜକୁ ତାଙ୍କ ସମକକ୍ଷ ବୋଲି ଦାବି କରିନପାରେ। ତାଙ୍କୁ କୁହାଗଲା ଚୁକ୍ତି ଓ ସନନ୍ଦ ଯାହା ସବୁ ଆଭ୍ୟନ୍ତରୀଣ ଶାନ୍ତି ଶୃଙ୍ଖଳା ରକ୍ଷା ନିମିତ୍ତ କରାଯାଇଛି ତାହା ଅମାନ୍ୟ କରିହେବ। ସାର୍ବଭୌମ ଶକ୍ତିର ଏହି ଦାୟିତ୍ୱ ଓ କ୍ଷମତା ଆଭ୍ୟନ୍ତରୀଣ ଶାସନ ଶୃଙ୍ଖଳା ରକ୍ଷା ନିମିତ୍ତ ରହିଅଛି। ନିଜାମଙ୍କ ଶାସନ ପରିଷଦରେ ବ୍ରିଟିଶ ସଭ୍ୟ ସେମାନଙ୍କ ଉପଦେଶ ଅନୁସାରେ ରହିଲେ ମାତ୍ର ସେମାନଙ୍କ ନିଷ୍ପତ୍ତିକୁ ନିଜାମ ବାତିଲ କରିପାରୁଥିଲେ। ନିଜାମ ଓସମାନ ଅଲ୍ଲିଖାଁଙ୍କର ଦୁଇପୁତ୍ର ଥିଲେ। ଦୁହେଁ ତୁରସ୍କର ପୂର୍ବତନ ସୁଲତାନ ଓ ଇସଲାମଧର୍ମର ଖଲିଫାଙ୍କ ଘରେ ବିବାହ କରିଥିଲେ। ଏହି ବୈବାହିକ ସମ୍ବନ୍ଧ ନିଜାମଙ୍କର ସାମାଜିକ ପ୍ରତିଷ୍ଠା ଚାରିଆଡ଼େ ବଢ଼ାଇ ଦେଇଥିଲା। ବଡ଼ପୁଅ ତାଙ୍କ ଝିଅ ଦୁରାଶୂରଙ୍କୁ ଓ ସାନପୁଅ ତାଙ୍କ ଝିଆରୀ ନିଲୋଫରଙ୍କୁ ବିବାହ କରିଥିଲେ। ସେମାନେ ଦକ୍ଷିଣ ଫ୍ରାନ୍ସରେ ପାଠ ପଢ଼ି ବଢ଼ିଥିଲେ। ସେମାନେ ପରଦା ମାନୁ ନଥାନ୍ତି । ସେମାନଙ୍କର ଜାଗତିକ ଶିକ୍ଷା ଓ ପୃଷ୍ଠଭୂମି ଦେଖି ନିଜାମ ନିଜ ରକ୍ଷଣଶୀଳ ମନୋଭାବକୁ କିଛି ଉଦାର କରିଥିଲେ। ହାଇଦରାବାଦର ରେସିଡ଼େଣ୍ଟ ନିଜାମଙ୍କୁ ନିଜ ପୁଅବୋହୂଙ୍କୁ ରେସିଡ଼େଣ୍ଟ ପ୍ରାସାଦରେ ରାତ୍ରଭୋଜନ ନିମିତ୍ତ ଅନୁରୋଧ କଲେ। ରେସିଡ଼େଣ୍ଟଙ୍କ ସଚିବ ପରେ ଭାରତର ରାଜନୈତିକ ପରାମର୍ଶଦାତା କନରାଡ଼ କୋର୍ଫିଲ୍ଡ ଲେଖିଛନ୍ତି ବଡ଼ବୋହୂ ବିଶେଷ ସୁନ୍ଦର ନଥିଲେ ମାତ୍ର ସାନବୋହୂ ନିଲୋଫରଙ୍କ ପରି ସୁନ୍ଦରୀ ସ୍ତ୍ରୀ ସେ ଜୀବନରେ ଆଉ ଦେଖିନାହାନ୍ତି। ସେତେବେଳେ ସେ ଇଂରେଜ ଶିଖିବା ମାତ୍ର ତିନି ମାସ ହେଲା ଆରମ୍ଭ କରିଥାଆନ୍ତି। କୋରଫିଲ୍ଡ ଖାଇବା ଟେବୁଲରେ ତାଙ୍କ ପାଖରେ ବସିଥିଲେ। ତାଙ୍କୁ ଚକୋଲେଟ୍ କ୍ଷିରୀ ଖାଇବାକୁ ଅନୁରୋଧ କଲେ। ଖଣ୍ଡିଆ ଇଂରାଜୀରେ ସେ ଶୁଣାଇଲେ ତାଙ୍କ ସ୍ୱାମୀ କହିବାରେ ସେ ମୋଟା ହୋଇଯାଉଥିବାରୁ ସେ କିଛି ଖାଇବେ ନାହିଁ। ଯୁବରାଣୀ ଦୁରାଶେୱାର ରାଜକୀୟ ମର୍ଯ୍ୟାଦାରେ ପ୍ରବୀଣ ଥିଲେ। ପୂର୍ବରୁ ତାଙ୍କର ବାପଘରେ ଉପାଧି ଥିଲା (Her Serene Highness) ସେହି ଉପାଧି ସେ ରକ୍ଷା କରିବାକୁ ଚାହିଁଲେ ମାତ୍ର ତାଙ୍କ ସ୍ୱାମୀ ନିଜାମଙ୍କର ପ୍ରଥମ ପୁତ୍ରଙ୍କର କୌଣସି ଉପାଧି ନଥିଲା । ସେ ନିଜ ଧର୍ମପତ୍ନୀ ନିଜଠାରୁ ବଡ଼ ରାଜମର୍ଯ୍ୟାଦା ଉପଭୋଗ କରନ୍ତୁ ଏହା ମଧ୍ୟ ଚାହୁଁ ନଥିଲେ। ଏସବୁ ବିଚାରକୁ ନେଇ ବେରାର ଇଂରେଜ ଶାସନାଧିନ

ଥାଇ ନିଜାମଙ୍କର ନାମମାତ୍ର ଅଧିକାରଭୁକ୍ତ ଗଣା ଯାଉଥିବା ବେଳେ ତାଙ୍କୁ ପ୍ରିନ୍ସ ଅଫ ବେରାର ଉପାଧିରେ ମଣ୍ଡନ କରାଗଲା। ଇଂଲଣ୍ଡର ଯୁବରାଜଙ୍କୁ ପ୍ରିନ୍ସ ଅଫ ୱେଲସ କୁହାଯିବା ଭଙ୍ଗିରେ ଏହି ସମାଧାନ ହେଲା। ଜାଗତିକ ପୃଷ୍ଠଭୂମୀ ସମ୍ପନ୍ନ ପରଦାମୁକ୍ତ ବୋହୂମାନଙ୍କୁ ନିଜେ ଦିଲ୍ଲୀ ନେଲେ। ପ୍ରଥମେ ସେମାନଙ୍କ ପାଇଁ ସେଠାରେ ଗୋଟିଏ ବିରାଟ ପ୍ରାସାଦ ତିଆରି କରାଇଲେ। ଯେଉଁ ଶିଳ୍ପୀମାନେ ଦିଲ୍ଲୀର ଅନ୍ୟାନ୍ୟ ପ୍ରଖ୍ୟାତ ନିର୍ମାଣ କାର୍ଯ୍ୟ କରିଥିଲେ ସେହିମାନଙ୍କ ପରାମର୍ଶରେ ଏହା ତିଆରି ହୋଇଥିଲା ଓ ଅତୀବ ବିଳାସପୂର୍ଣ୍ଣ ଥିଲା। ଭାରତର ରାଜନ୍ୟମଣ୍ଡଳ ନିଜାମଙ୍କର ନବବିବାହିତ ପୁତ୍ର ଓ ବଧୂଙ୍କୁ ଅଭ୍ୟର୍ଥନା ଦେଇଥିଲେ। କେତେବର୍ଷ ପରେ ସେହିମାନଙ୍କ ଇଚ୍ଛା ଏଡ଼ାଇ ନପାରି ନିଜାମ ସେଠାରେ ଗୋଟିଏ ବଡ଼ ଧରଣର ଭୋଜି ଦେଇଥିଲେ। ଏଥିରେ ବଡ଼ଲାଟ ଲର୍ଡ଼ ୱେଲିଂଡ଼ନ ମୁଖ୍ୟ ଅତିଥି ଥିଲେ। ରାଜକୀୟ କାଇଦା ଅନୁସାରେ ଭୋଜି ଶେଷରେ ବଡ଼ଲାଟ ଦମ୍ପତ୍ତିଙ୍କୁ ଭିନ୍ନ ଭିନ୍ନ ସ୍ଥାନରେ ବସାଯାଇ ଅତିଥିମାନଙ୍କୁ ପରିଚିତ ହୋଇ ଅଳ୍ପ ସମୟ କଥା ହେବାକୁ ବ୍ୟବସ୍ଥା ହୋଇଥିଲା। ଲର୍ଡ଼ ୱେଲିଂଡ଼ନ ତାଲିକା ଶୀଘ୍ର ସାରିଦେଇ ନିଲୋଫରଙ୍କ ସୌନ୍ଦର୍ଯ୍ୟରେ ଏପରି ମୁଗ୍ଧ ହୋଇ ଯାଇଥିଲେ ଯେ ଦୀର୍ଘ ସମୟ ଧରି ତାଙ୍କ ସହିତ ବାର୍ତ୍ତାଳାପରେ ଲାଗିଲେ। ଲେଡ଼ି ୱେଲିଂଡ଼ନଙ୍କର ଅତିଥି ତାଲିକା ଶେଷ ହେବା ପରେ ସେ ଏହା ଦେଖି ଅଥୟ ହୋଇ ପଡ଼ିଲେ ଓ ସମସ୍ତ କାଇଦା ଅମାନ୍ୟ କରି ନିଜାମଙ୍କୁ ଧରି ତାଙ୍କ ସ୍ୱାମୀଙ୍କ ପାଖରେ ପହଞ୍ଚି କହିଲେ ଆମର ଯିବାର ସମୟ ହେଲାଣି ଚାଲ ଯିବା। ୱେଲିଂଡ଼ନ ନମ୍ରତାର ସହିତ ରାଜି ହୋଇ ନିଜାମଙ୍କୁ ଅନେଇ କହିଲେ ବହୁବର୍ଷ ହେଲା ଆଜି ପରି କେବେ ଖୁସି ମନ ହୋଇ ନଥିଲା। ସାର କନରାଡ଼ କୋରଫିଲ୍ଡ ତାଙ୍କ ଅଭିଜ୍ଞତାରେ ଏହା ବର୍ଣ୍ଣନା କରିଅଛନ୍ତି ।

ନିଜାମ ଓସମାନ ଅଲ୍ଲିଖାଁଙ୍କର ଜୀବନରେ ଦୁଇଗୋଟି ନିଶା ଥିଲା ପ୍ରଥମେ ନିଜେ କେତେ କ୍ଷମତା ନିଜଠାରେ ଠୁଳ କରିପାରିବେ ଓ ଦ୍ୱିତୀୟରେ କେତେ ଅକଳନ ଧନ ସମ୍ପତ୍ତି ସେ ନିଜ ପାଖରେ ରଖିଦେଇ ପାରିବେ। ନିଜ ପୋଷାକ ପରିଚ୍ଛଦରେ ସେ ଅତି ସାମାନ୍ୟ ବ୍ୟୟ କରୁଥିଲେ । ଥରେ ରାଜନୀତିକ ବିଭାଗର ଜଣେ ଉଚ୍ଚ କର୍ମଚାରୀ ତାଙ୍କୁ ସାକ୍ଷାତ କରିବାକୁ ହାଇଦରାବାଦ ଆସିଥିଲେ। ସାକ୍ଷାତ ପ୍ରକୋଷ୍ଠକୁ ତାଙ୍କୁ ନିଆଗଲା। ସେଠାରେ ସେ ଖାନସମା ପରି ଦେଖାଯାଉଥିବା ଏକ ଭୃତ୍ୟ ଦେଖି ନିଜ ଆସନ ଗ୍ରହଣ କରିବାକୁ ଯାଉଥିବା ସମୟରେ ତଥାକଥିତ ଭୃତ୍ୟ ତାଙ୍କୁ ସମ୍ମାନ ଜ୍ଞାପନ କଲା। ସେ ତାଙ୍କୁ ସ୍ୱୟଂ ନିଜାମ ବୋଲି ଜାଣିପାରିଲେ। ତାଙ୍କ ପାଇଜାମା ଅତି ପୁରୁଣା। ଗୋଡ଼କୁ ଛୋଟ

ହୋଇ ଆସୁଥାଏ ଓ ପାଦରେ ଥିବା ମଇଳା ମୋଜା ଏହା ଫଳରେ ଦେଖାଯାଉଥାଏ, ଗୋଟିଏ ମଇଳା ଫେଜ ଟୋପି ସେ ଦୀର୍ଘ ୩୦ବର୍ଷ ଧରି ବ୍ୟବହାର କରୁଥିଲେ । ପୋଷାକ ନିକୃଷ୍ଟ ଥିଲେ ମଧ୍ୟ ସେ ଆଚରଣରେ ଅତୀବ ଧୂର୍ତ୍ତ ଓ ଚାଲାକ୍ ଥିଲେ। ରାଜ୍ୟ ରାଜସ୍ୱରୁ ସେ ବାର୍ଷିକ ୫୦ଲକ୍ଷ ଟଙ୍କା ନିଜ ହାତପାଣ୍ଠି ଭାବରେ ପାଉଥିଲେ। ଏହା ବ୍ୟତୀତ ୮୦୦୦ ବର୍ଗମାଇଲ ପରିମିତ ଉର୍ବର ଜମି ତାଙ୍କ ନିଜର ଚାଷ ନିମିତ୍ତ ପୃଥକ ରଖାଯାଇଥିଲା। ସେଥିରୁ ବର୍ଷକୁ ନିଜାମ ପ୍ରାୟ ୨୪କୋଟି ଟଙ୍କା ଆୟ କରୁଥିଲେ। ତାଙ୍କର ଅଗାଧ ସୁନାରୂପା, ଅସଂଖ୍ୟ ମଣିମୁକ୍ତା ସେ ଏକାଠି ରଖି ସେସବୁ ଦେଖି ଅଶେଷ ଆନନ୍ଦ ପାଉଥିଲେ। ବିଶ୍ୱର ଦ୍ୱିତୀୟ ବୃହତ୍ତମ ୨୮୨ କ୍ୟାରେଟ ହୀରାର ଜାକବର ମୂଲ୍ୟ ଶହେକୋଟି ଥିଲା । କେହି କେହି ଏହାର ମୂଲ୍ୟ ଦୁଇଶହ କୋଟି ବୋଲି ଗଣନା କରୁଥିଲେ । ଏସବୁ ଭିନ୍ନ ଭିନ୍ନ ବାକ୍ସରେ ସାଇତା ହୋଇ ରଖାଯାଇଥାଏ ଓ ପ୍ରତି ବାକ୍ସରେ ଥିବା ଜହରତରେ ତାଲିକା ଖୋଦ ନିଜାମ ରଖିଥିଲେ ଓ ଜାଣିଥିଲେ। ଜାକବକୁ ସେ ନିଜ ଟେବୁଲରେ କାଗଜ ଉପରେ କାଚମୁଣ୍ଡା ଭାବରେ ବ୍ୟବହାର କରୁଥିଲେ। ଏହି ହୀରାଟିକୁ କାଳେ କିଏ ଲୋଭ କରିବ ଏଥିପାଇଁ ସେ ଗୋଟିଏ ସାବୁନ ଖୋଳରେ ରଖିଥିଲେ ଓ ଅନ୍ୟ କାହାକୁ ତାକୁ ଛୁଆଁଇ ଦେଉନଥିଲେ। ଧନ ଅର୍ଜନ କରିବାରେ ସେ ଅସଂଖ୍ୟ ଫନ୍ଦା ବାହାର କରିଥିଲେ। ବଡ଼ ବଡ଼ ବିବାହ ଉତ୍ସବ ମାନଙ୍କରେ ଯୋଗଦାନ କରି ଉପହାର ଦେବା ପରିବର୍ତ୍ତେ ମିଳିଥିବା ଶ୍ରେଷ୍ଠ ଉପହାରଟିକୁ ନିଜେ ଗ୍ରହଣ କରି ଚାଲି ଆସୁଥିଲେ। ରାଜଧାନୀର କୌଣସି ବଡ଼ ନୂତନ ଗାଡ଼ି ଦେଖିଲେ ସେ ମାଲିକଙ୍କୁ ଗାଡ଼ି ସହିତ ତଲବ କରୁଥିଲେ ମାତ୍ର ତାଙ୍କୁ ଗାଡ଼ି ଛାଡ଼ି ଦେଇ ଫେରିବାକୁ ଦେଉଥିଲା । ରାଜ୍ୟ ମିଶ୍ରଣ ପରେ ସରକାରୀ ଗ୍ୟାରେଜରେ ପ୍ରାୟ ଅଢ଼େଇ ହଜାର ଗାଡ଼ି ରହି ଖତ ହେଉଥିବା ତାଙ୍କୁ ରାଜ୍ୟ ପ୍ରଧାନମନ୍ତ୍ରୀ ଜଣାଇଲେ । କୌଣସି ଉପାୟରେ ଏସବୁ ଖଲାସ କରିଦେବାକୁ ସେ ପରାମର୍ଶ ଦେଲେ ମାତ୍ର ନିଜାମ ଏହି ଅନୁରୋଧ ସିଧା ପ୍ରତ୍ୟାଖାନ କଲେ। ସେ ବହୁତ ଧୂମପାନ କରୁଥିଲେ। ମାତ୍ର ଅତି ଶସ୍ତା ସିଗାରେଟ୍ ବ୍ୟବହାର କରୁଥିଲେ । ତାଙ୍କୁ ସାକ୍ଷାତ ନିମିତ୍ତ ଆସୁଥିବା ଅତିଥିମାନେ ତାଙ୍କୁ ଦାମିକା ସିଗାରେଟ୍ ଦେଲେ ତାହା ସେ ବ୍ୟବହାର ନକରି ସାଇତି ରଖୁଥିଲେ। କେହି ତାଙ୍କୁ ଶିଷ୍ଟାଚାର ରୂପେ ସିଗାରେଟ୍ ଯାଚିଲେ ସେ ଗୋଟିଏ ନନେଇ ୪/୫ଟା ନେଇ ଯାଇ ନିଜ ବାକ୍ସରେ ଭରି ରଖୁଥିଲେ। ଘନ ଘନ ଧୂମପାନସେବୀ, ସଚିବ ଭି.ପି ମେନନ ଥରେ ତାଙ୍କୁ ସାକ୍ଷାତ କଲେ। ନିଜାମ ତାଙ୍କୁ ସାକ୍ଷାତ ଦେଲେ। ତାଙ୍କୁ ୧୨ ପଇସା ପ୍ୟାକେଟ୍ ମୂଲ୍ୟର ଅତିଶସ୍ତା ଚାରମିନାର ସିଗାରେଟ୍

ଯାଚିଲେ। ନେବାକୁ ମନା କରି ସେ ନିଜ ପ୍ରିୟ ସିଗାରେଟ୍ ବାହର କରି ଧୂମପାନ କଲେ ଓ ଉଦ୍ରତା ରକ୍ଷା କରି ନିଜାମଙ୍କୁ ଯାଚିଲେ। ନିଜାମ ନିଜେ ୪/୫ଟି ନେଇ ନିଜ ବାକ୍ସରେ ରଖିଲେ ଓ ପରେ ପୁଣି ସାକ୍ଷାତ ସମୟରେ ମେନନଙ୍କୁ ସେହି ସିଗାରେଟ୍ ଯାଚିଲେ।

୯୧୨ ବର୍ଗ ମାଇଲ ଆୟତନ ଓ ୧୫ ତୋପ ସଲାମି ଦାତିଆ ରାଜ୍ୟର ମହାରାଜା, ନିଜାମଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ। ତାଙ୍କ ରାଜ୍ୟ ଲହୁଣୀ ପାଇଁ ସୁଖ୍ୟାତି ଅର୍ଜନ କରିଥିଲା।ଏହା ଜାଣି ନିଜାମ ତାଙ୍କୁ କିଛି ଲହୁଣୀ ଦେବାକୁ ଅନୁରୋଧ କଲେ। ସେ ୧୨୦ଟିଣ ପଠାଇଦେଲେ। ବ୍ୟବହାର ନକରି ଏହାକୁ ନିଜାମ ନିଜ ଗୋଦାମ ଘରେ ରଖିବାକୁ ଆଦେଶ ଦେଲେ। ଏମିତି ଦୁଇ ବର୍ଷ ବିତିଗଲା । କେହି ଏହା ବାହାର କରିବାକୁ ନିଜାମଙ୍କୁ କହିବାକୁ ସାହସ କରୁନଥିଲେ। ଶେଷରେ ନିଜେ ନିଜାମ ହାଇଦରାବାଦ ଥାନା ଅଫିସରଙ୍କୁ ଡାକି ଏହା ବିକ୍ରି କରିବାକୁ ନିର୍ଦ୍ଦେଶ ଦେଲେ ମାତ୍ର ସେତେବେଳେ ଏହା ଖାଦ୍ୟ ଉପଯୋଗୀ ନୁହେଁ ବୋଲି ଜନସ୍ୱାସ୍ଥ୍ୟ ବିଭାଗ ରିପୋର୍ଟ କଲା। ମଣିଷ ଖାଦ୍ୟ ନହେଲେ ହିନ୍ଦୁ ମନ୍ଦିର ମାନଙ୍କରେ କଣ ଦୀପ ଜଳାରେ ଏହା ବ୍ୟବହାର ହୋଇପାରିବନାହିଁ କହି ସେ ଥାନା ଅଫିସରଙ୍କୁ ଗାଳି କଲେ। ବିଚରା ପୋଲିସ ଅଫିସର ନିଜାମଙ୍କର ଏ ପ୍ରକାର ମନୋଭାବ ଲକ୍ଷ୍ୟ କରି ସବୁ ଟିଣ ଗୁଡ଼ିକ ନର୍ଦ୍ଦମାରେ ଫିଙ୍ଗିଦେଲେ ଓ ବିକ୍ରି କରିଦେଲେ ବୋଲି କହି ୨୨୦ଟଙ୍କା ନିଜାମଙ୍କ ଆଗରେ ଥୋଇଦେଲେ। ଏମିତି ଧନ ସମ୍ପତ୍ତି ଠୁଳ କରିବାର ଲୋଭ ନିଜାମଙ୍କର ଚିରକାଳ ରହିଗଲା। ନିଜାମଙ୍କର ଏହି ଆଚରଣ ଫଳରେ ଭାରତ ବାହାରେ ସେ ପୃଥିବୀର ସର୍ବୋଚ୍ଚ ଧନକୁବେର ଓ ସର୍ବନିମ୍ନ କୃପଣ ଭାବରେ ପରିଚିତ ଲାଭ କରିଥିଲେ।

ଦ୍ୱିତୀୟ ନିଶା ଥିଲା କ୍ଷମତା ଠୁଳ କରିବା । ତାଙ୍କର ବିଶ୍ୱାସ ଥିଲା ସ୍ୱୟଂ ଆଲ୍ଲା ତାଙ୍କୁ ଏହି ପଦରେ କ୍ଷମତା ପ୍ରୟୋଗ ନିମିତ୍ତ ଭୂପୃଷ୍ଠରେ ଜନ୍ମ ଦେଇଛନ୍ତି। ସେଥିଯୋଗୁ ତାଙ୍କର ୧୯୧୧ ରାଜଭିଷେକ ଉତ୍ସବରେ ବ୍ରିଟିଶ ରେସିଡ଼େଣ୍ଟଙ୍କ ଉପସ୍ଥିତି ତାଙ୍କୁ ଅସ୍ୱସ୍ତିକର ଥିଲା। ଶତକଡ଼ା ୧୫ ଭାଗ ମୁସଲମାନଙ୍କୁ ରାଜ୍ୟଶାସନରେ କ୍ଷମତାରୁଢ଼ କରାଇବା ଓ ଦେଶରେ ଏକ ଇସଲାମୀୟ ରାଷ୍ଟ୍ର ପ୍ରତିଷ୍ଠା କରିବା ତାଙ୍କର ଲକ୍ଷ୍ୟ ଥିଲା। ନିଜର ଅତି ସୁଦକ୍ଷ ଗୁପ୍ତଚର ବାହିନୀ ଜରିଆରେ ସେ ରାଜ୍ୟ ବାହରର ସମସ୍ତ ତଥ୍ୟ ସଂଗ୍ରହ କରି ରଖିଥିଲେ। ଭାରତର ସ୍ୱାଧିନତା ଆଇନ ଯେତେବେଳେ ବିଲାତର ପାର୍ଲାମେଣ୍ଟରେ ଆଲୋଚନା ହେଉଥିଲା ସେତେବେଳେ ନିଜ ରାଜ୍ୟ ଭାରତ ବା ପାକିସ୍ତାନ ପରି ଏକ ରାଜ୍ୟ ରୂପେ ଗଣାଯିବା ବ୍ୟବସ୍ଥା ରହିବାର ଆଶା କରୁଥିଲେ। ଉଇନଷ୍ଟନ ଚର୍ଚ୍ଚିଲ ଓ

ମହମ୍ମଦ ଅଲ୍ଲି ଜିନ୍ନାଙ୍କ ଉପରେ ଭରସା ରଖି ସେ ସ୍ୱାଧିନ ଦେଶରେ ହିନ୍ଦୁ ପ୍ରଜାମାନଙ୍କ ଇଛା ବିରୁଦ୍ଧରେ ନିଜକୁ ସ୍ୱାଧିନ ଘୋଷଣା କରିବାକୁ ଇଚ୍ଛୁକ ଥିଲେ। ଗଣତନ୍ତ୍ର ପ୍ରତି ନାନା କାରଣରୁ ତାଙ୍କର ବିଶେଷ ଘୃଣା ରହିଥିଲା। ଲର୍ଡ଼ ମାଉଣ୍ଟବେଟନ ତାଙ୍କୁ ସଫା ସଫା ଜଣାଇ ଦେଇଥିଲେ ଯେ ଇଂରେଜ ସରକାର ତାଙ୍କର ଚିନ୍ତାଧାରା କେବେ ଗ୍ରହଣ କରିବେ ନାହିଁ। ୧୯୪୭ ଅଗଷ୍ଟ ୧୫ ପର୍ଯ୍ୟନ୍ତ ସେ ଭାରତ ସହିତ ସମୀକୃତ ଚୁକ୍ତିରେ Instrument of Accession ସ୍ୱାକ୍ଷର ନକରି ରହିଲେ। ପାକିସ୍ତାନ ସୃଷ୍ଟି ପରେ ସେ ଉକ୍ତ ରାଜ୍ୟ ସହିତ ଘନିଷ୍ଠତର ସମ୍ପର୍କ ପ୍ରତିଷ୍ଠାରେ ବିଶେଷ ଆଗ୍ରହୀ ହେଲେ।

**ଭୂତଗ୍ରସ୍ତ ନିଜାମଙ୍କର କରୁଣ ଶରଣ :**

ଦୁର୍ଦ୍ଦିନ ନିଜାମଙ୍କ ପାଇଁ ଅପେକ୍ଷା କରିଥିଲା । ସେ ମିଶ୍ରଣ ଚୁକ୍ତି ଦସ୍ତଖତ କଲେ ନାହିଁ। ଲର୍ଡ଼ ମାଉଣ୍ଟବେଟେନ ବିଶ୍ୱାସ କରୁଥାଆନ୍ତି ସମାଧାନର ସୂତ୍ର ସେ ବାହାର କରିବେ। ନିଜାମଙ୍କର ଉଚ୍ଚ ଅଭିଳାଷ ଥାଏ ସ୍ୱାଧିନ ସମକକ୍ଷ ଉପନିବେଶ ଭାବରେ ସେ ଭାରତ ସହିତ ବୈଦେଶିକ ଦେଶରକ୍ଷା ଓ ଗମନାଗମନ ବିଷୟରେ ସନ୍ଧି ସ୍ଥାପନ କରିବେ। ନିଜାମଙ୍କର ଆଇନ ପରାମର୍ଶଦାତା ଦୀର୍ଘଦିନ ଧରି ଇଂଲଣ୍ଡର ନାମଜାଦା ନ୍ୟାୟ ବିଶାରଦ ସାର ୱାଲଟର ମଙ୍କଟନ ଥିଲେ। ତାଙ୍କର ଲର୍ଡ଼ ମାଉଣ୍ଟବେଟେନଙ୍କ ସହିତ ଘନିଷ୍ଠ ବନ୍ଧୁତା ଥିବାରୁ ସେ କିଛି ସୁବିଧା ହାସଲ କରିପାରିବେ ବୋଲି ସମସ୍ତେ ଆଶା କରୁଥାଆନ୍ତି।



ଭାରତର ଏଜେଣ୍ଟ ଜେନେରାଲ କେ.ଏମ୍.ମୁନସୀ ଏବଂ ବଡଲାଟ ଶ୍ରୀ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ

ନିଜାମଙ୍କ ପ୍ରତିନିଧି ଦଳ ଦିଲ୍ଲୀ ଯାଇ ଆଲୋଚନା କରିବାର ଥିଲା ମାତ୍ର ଏ ମଧ୍ୟରେ ରାଜ୍ୟରେ ଇତିହାଦୁଲ ମୁସଲମାନ ନାମକ ଗୋଟିଏ ସାମ୍ପ୍ରଦାୟିକ ଦଳ ଶାନ୍ତି ଶୃଙ୍ଖଳା ସମସ୍ୟା ସୃଷ୍ଟି କରିଥାଏ। ଏହାର ନେତା ଥିଲେ କାସିମ ରାଜଭି ନାମକ ଜଣେ ଧର୍ମାନ୍ଧ ଓ ବାହାପିଆ ନେତା। ସେ ନିଜ ଦଳର ସ୍ୱେଚ୍ଛାସେବକ ସଂଗ୍ରହ କଲେ। ସେମାନଙ୍କୁ ରାଜାକର ନାମ ଦେଲେ । ସେମାନେ ପ୍ରତ୍ୟେକ ଆଲ୍ଲାଙ୍କ ନାମରେ ଦକ୍ଷିଣ ଭାରତରେ ମୁସଲମାନ ଶକ୍ତିର ପ୍ରାଧାନ୍ୟ ପ୍ରତିଷ୍ଠା ନିମିତ୍ତ ଶପଥ ନେଉଥିଲେ ଓ ଏଥି ନିମିତ୍ତ ଜୀବନରେ ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ଲଢ଼ାଇ କରିବା ଏହି ଶପଥର ଅଂଶ ଥିଲା। ୧୯୪୮ ଜୁନ ମାସରେ ଏମାନଙ୍କର ସଂଖ୍ୟା ୩୦ ହଜାର ଥିଲା। ହିନ୍ଦୁମାନଙ୍କ ପ୍ରତି ଘୃଣାଭାବ ଜାଗ୍ରତ କରି ସେମାନଙ୍କର ଭୟ ଜାତ କରାଇବା ଏହି ସଙ୍ଗଠନର ଉଦ୍ଦେଶ୍ୟ ଥିଲା। ସେମାନେ ଏହି ଲକ୍ଷ୍ୟ ରଖି ହାଇଦାରାବାଦ ଓ ରାଜ୍ୟ ବାହାରେ ଭାରତବର୍ଷ ତମାମ ମୁସଲମାନଙ୍କ ମଧ୍ୟରେ ହିଂସା ଓ ଘୃଣାଭାବ ପ୍ରଚାର ଆରମ୍ଭ କରିଦେଲେ। କ୍ରମେ ସେମାନେ ନିଜାମଙ୍କ ଉପରେ ପ୍ରଭାବ ପକାଇ ତାଙ୍କ ଠାରୁ ବନ୍ଧୁକ, ଗୋଳା ବାରୁଦ ଓ ଗମନାଗମନ ନିମିତ୍ତ ଯାନବାହନ ସୁବିଧା ପାଇବାକୁ ସକ୍ଷମ ହେଲେ। ଜୁଲାଇ ବେଳକୁ ସେମାନଙ୍କର ସଂଖ୍ୟା ପ୍ରାୟ ୨ଲକ୍ଷ ହୋଇଯାଇଥିଲା।

୨୭ ନଭେମ୍ବର ୧୯୪୭ରେ ଯେଉଁ ପ୍ରତିନିଧିମଣ୍ଡଳୀ ଦିଲ୍ଲୀ କଥାବାର୍ତ୍ତା କରିବାକୁ ଯିବାର ଥିଲା ତାଙ୍କୁ ରାଜାକରମାନେ ସେମାନଙ୍କ ଘର ଘେରାଉ କରି ଛାଡ଼ିଲେ ନାହିଁ। କାସିମ ରାଜଭି ନିଜାମଙ୍କୁ ବୁଝାଇଦେଲେ ଯେ ସେ ନିଜର ପରାମର୍ଶଦାତା ବଦଳାଇଲେ ଭାରତ ସରକାରଙ୍କ ଠାରୁ ବିଶେଷ ସୁବିଧା ହାସଲ କରିପାରିବେ। ନଭେମ୍ବର ୨୪ ତାରିଖରେ ରାଜାକରମାନଙ୍କ ଚାପରେ ନିଜାମ ନିଜ ପ୍ରଧାନମନ୍ତ୍ରୀ ଛତ୍ରୀର ନବାବଙ୍କୁ ଅବ୍ୟାହିତ ଦେଲେ । ମିର୍ ଲାଏକ ଅଲ୍ଲି ନାମକ ଜଣେ ପ୍ରତିଷ୍ଠିତ ବ୍ୟବସାୟୀଙ୍କୁ ନିଜ ପ୍ରଧାନମନ୍ତ୍ରୀ କଲେ। ଲାଏକ ଅଲ୍ଲିଙ୍କର ପାକିସ୍ତାନ ସହିତ ସମ୍ପର୍କ ଘନିଷ୍ଠ ଥିଲା। ମିଳିତ ଜାତିସଂଘକୁ ଯାଇଥିବା ପାକିସ୍ତାନ ଦଳରେ ସେ ଜଣେ ସଭ୍ୟ ଥିଲେ। କାସିମରାଜଭିଙ୍କ ସେ ମନୋନୀତ ଥିଲେ। କାସିମରାଜଭି ଏହି ସୁଯୋଗ ନେଇ ସର୍ଦ୍ଦାର ପଟେଲଙ୍କୁ ଦିଲ୍ଲୀରେ ସାକ୍ଷାତ କଲେ। ତାଙ୍କୁ କହିଲେ ସେମାନେ ଲଢ଼ାଇ କରି ଶେଷ ପର୍ଯ୍ୟନ୍ତ ନିଜ ସ୍ୱାଧୀନତା ପାଇ ଜୀବନ ଦେବେ। ଦୃଢ଼ ସର୍ଦ୍ଦାର ତାଙ୍କୁ ଶୁଣାଇଲେ ତମକୁ ଆତ୍ମହତ୍ୟା କରିବାକୁ କେହି ବନ୍ଦ କରିପାରିବନାହିଁ। ମାତ୍ର ତମେ ସୂର୍ଯ୍ୟ ଅସ୍ତ ପୂର୍ବରୁ ଆଲୋକ ଦେଖ ଓ ଦିନ ଥାଉ ଥାଉ ଅନ୍ଧାର ଭିତରେ ପଶି ରହନାହିଁ। ଏସବୁ ସତ୍ତ୍ୱେ ୨୯ ନଭେମ୍ବର ୧୯୪୭ରେ

ନିଜାମ ଭାରତ ସହିତ କାମଚଳା ଚୁକ୍ତି (Stand Still Agreement) ସ୍ୱାକ୍ଷର କଲେ ଓ ଏକ ଗୁପ୍ତ ପତ୍ରରେ ଜଣାଇ ଦେଲେ ଯେ ସେ ପାକିସ୍ତାନ ସହିତ ମିଶ୍ରଣ ପ୍ରସ୍ତାବ ଗ୍ରହଣ କରିବେ ନାହିଁ।

ଏହି ଚୁକ୍ତିକୁ ସବୁଆଡ଼େ ସ୍ୱାଗତ କରାଗଲା । ଲର୍ଡ଼ ମାଉଣ୍ଟବେଟେନ ଭାରତର ଲକ୍ଷ୍ୟ ହାସଲ ହୋଇପାରିବ ବୋଲି ଆଶାବାଦୀ ରହିଲେ। ସିକନ୍ଦରାବାଦରେ ରହୁଥିବା ଭାରତୀୟ ଫୌଜ କାଢ଼ି ନିଆଗଲା ଓ ପ୍ରତିଷ୍ଠିତ ରାଜନୀତିଜ୍ଞ ବମ୍ବେର କହ୍ନେୟାଲାଲ ମୁନସି ହାଇଦରାବାଦରେ ଭାରତର ଏଜେଣ୍ଟ ଜେନେରାଲ ଭାବରେ ଅବସ୍ଥାପିତ ହେଲେ। ନିଜେ ବହୁତ ତ୍ୟାଗ ସ୍ୱୀକାର କରି, ବିନା ପାରିଶ୍ରମିକରେ ମୁନସି ଏହି ପଦବୀ ଦେଶସେବୀ ନିମିତ୍ତ ଗ୍ରହଣ କଲେ। ମାତ୍ର ନିଜାମଙ୍କ ଉପରେ କୁପ୍ରଭାବ ବଢ଼ି ଚାଲୁଥିଲା । ଚୁକ୍ତି ସ୍ୱାକ୍ଷର ପରେ ପରେ ସେ ନିଜ ରାଜ୍ୟରୁ ମୂଲ୍ୟବାନ ପଥର ଓ ରତ୍ନ ଚୁକ୍ତି ସର୍ତ୍ତ ଖିଲାପ କରି ରପ୍ତାନୀ ବନ୍ଦ କରିଦେଲେ। ଭାରତୀୟ ମୁଦ୍ରା ନିଜ ରାଜ୍ୟରେ ଅଚଳ କରି ୨ ୨ କୋଟି ଟଙ୍କାର ଋଣ ପାକିସ୍ତାନକୁ ଦେଲେ ଓ ପାକିସ୍ତାନ ରାଜଧାନୀ କରାଚୀରେ ନିଜର ଜଣେ ଲୋକ ସମ୍ପର୍କ ଅଧିକାରୀ ପ୍ରଚାର ଉଦ୍ଦେଶ୍ୟରେ ରଖିଲେ। ଭାରତ ସରକାର ଏହାର ବିରୋଧ କଲେ। ହାଇଦରାବାଦରେ ରାଜାକରମାନଙ୍କୁ ଅର୍ଥ ଅସ୍ତ୍ରଶସ୍ତ୍ର ଦିଆଯାଇ ସେମାନଙ୍କ ସଂଖ୍ୟା ବୃଦ୍ଧି କରାଗଲା। ସେମାନଙ୍କୁ ରାଜ୍ୟ ସୀମାନ୍ତରେ ଥିବା ଭାରତର ବିଭିନ୍ନ ଅଞ୍ଚଳରେ ଲୁଟ ତରାଜ କରିବାକୁ ସୁଯୋଗ ଦିଆଗଲା । ମାନ୍ଦ୍ରାଜ ବମ୍ବେ ଓ ମଧ୍ୟପ୍ରଦେଶର ସରକାରମାନେ ସେମାନଙ୍କ ଆକ୍ରମଣ ପ୍ରତିହିତ ନିମିତ୍ତ ସୈନ୍ୟ ବିଭାଗରୁ ସାହାଯ୍ୟ ମାଗିଲେ। ଜଣାଗଲା କମ୍ୟୁନିଷ୍ଟ ଓ ରାଜାକରମାନେ ଆଇନ ଶୃଙ୍ଖଳା ନିଜ ହାତକୁ ନେଇ ଗଲେଣି। ହାଇଦରାବାଦରେ କମ୍ୟୁନିଷ୍ଟ ଦଳ ୧ ୯ ୪ ୩ ମସିହାରେ ବେଆଇନ ଘୋଷିତ ହୋଇଥିଲା। ପ୍ରଥମେ ସେମାନେ ରାଜାକରଙ୍କର ବିରୋଧୀଥିଲେ ମାତ୍ର ପରେ ମିଶିଗଲେ। ମିରାଲାଏକ ଅଲ୍ଲି ପ୍ରଧାନମନ୍ତ୍ରୀ ହେବାରୁ କମ୍ୟୁନିଷ୍ଟ ଦଳ ଆଉ ବେଆଇନ ସଙ୍ଗଠନ ରହିଲାନାହିଁ। ନିଜାମ ପ୍ରଥମେ ସେମାନଙ୍କୁ ସହାୟତା ଦେଉଥିଲେ ମଧ୍ୟ ବର୍ତ୍ତମାନ ସେମାନେ ନିଜାମଙ୍କ ଉପରେ ଆଧିପତ୍ୟ ଦେଖାଇବାକୁ ଲାଗିଲେ। ନିଜାମ ରାଜ୍ୟରେ ନୂତନ ବିମାନ ବନ୍ଦର ତିଆରି କରିବାରେ ଲାଗିଲେ। କରାଚୀରୁ ସିଡ଼ିନୀ କର୍ଜନ ନାମକ ଜଣେ ଅଷ୍ଟ୍ରେଲିଆର ଲୋକ ରାତିରେ ଉଡ଼ାଜାହାଜରେ ଚୋରା ଗୋଳା ବାରୁଦ ଅସ୍ତ୍ରଶସ୍ତ୍ର ଆଣି ପହଞ୍ଚାଉଥିଲେ। ଏସବୁ ସେନାବାହିନୀ ପରିବର୍ତ୍ତେ ରାଜାକରମାନଙ୍କ ହାତକୁ ଯାଉଥିଲା ଓ ତାଙ୍କ ଠାରୁ କମ୍ୟୁନିଷ୍ଟମାନେ ଏହା ପାଉଥିଲେ। ମଙ୍କଟନ ମାର୍ଚ୍ଚ ମାସରେ କଥାବାର୍ତ୍ତା ପାଇ ଆସିଲେ।

ମାଉଣ୍ଟବେଟେନ ରାଜ୍ୟରେ ଲୋକପ୍ରତିନିଧିମୂଳକ ଗଣତନ୍ତ୍ର ଶାସନ ପ୍ରତିଷ୍ଠା କଲେ ସବୁ ସହଜ ହୋଇଯିବ ବୋଲି ତାଙ୍କୁ କହିଲେ । ସର୍ଦ୍ଦାର ପଟେଲ ମଧ୍ୟ ଗଣଭୋଟ ଜରିଆରେ ରାଜ୍ୟ ମିଶ୍ରଣ ନିଷ୍ପତ୍ତି ନିଆଯାଉ ପ୍ରସ୍ତାବ ଦେଲେ ମାତ୍ର ନିଜାମ କୌଣସି ଯୁକ୍ତିଯୁକ୍ତ ସମାଧାନ ଚାହୁଁ ନଥିଲେ। ଇସଲାମ ରାଷ୍ଟ୍ର ପ୍ରତିଷ୍ଠା ତାଙ୍କର ଲକ୍ଷ୍ୟ ଥାଏ। ରାଜ୍ୟରେ ଧର୍ମାନ୍ଧ କାସିମ ରାଜଭି ଉତ୍ତେଜନାପୂର୍ଣ୍ଣ ଭାଷଣ ଦେଇ ହିନ୍ଦୁମାନଙ୍କ ମନୋବଳ ଭାଙ୍ଗି ଦେବାକୁ ଉଦ୍ୟମ କଲେ । ୧୯୪୮ ମାର୍ଚ୍ଚ ୩୧ ତାରିଖରେ ଗୋଟିଏ ସଭାରେ ସେ ଶୁଣାଇଲେ।

"ହାଇଦରାବାଦ ଗୋଟିଏ ଇସଲାମ ରାଷ୍ଟ୍ର। ଏହାକୁ ଯଦି ଭାରତ ଆକ୍ରମଣ କରେ ତେବେ ସମଗ୍ର ଭାରତବର୍ଷର ସାଢ଼େ ଚାରିକୋଟି ମୁସଲମାନ ଜୀବନ ଉତ୍ସର୍ଗ କରିବେ। ପ୍ରତ୍ୟେକ ମୁସଲମାନ ଜଣେ ପ୍ରଥମ ଶ୍ରେଣୀର ଯୋଦ୍ଧା । ମୁସଲମାନଙ୍କ ଖଡ୍ଗ ଓ ଅସ୍ତ୍ରଶସ୍ତ୍ର ଫଳରେ ଭାରତ ସ୍ୱାଧିନତା ପାଇଛି। ତମର ଖଡ୍ଗ ମୁକ୍ତ ରଖି ନିଜ ଲକ୍ଷ୍ୟ ହାସଲ କର।

ଆମର ଈଶ୍ୱରଙ୍କ ଠାରେ ବିଶ୍ୱାସ ଅଛି। ଆଲ୍ଲାଙ୍କ ବ୍ୟତୀତ ଆମର ଅନ୍ୟ ବନ୍ଧୁ ନାହିଁ। ସେ ସବୁବେଳେ ଆମକୁ ରକ୍ଷା କରିବେ। ତମେମାନେ ଗୋଟାଏ ହାତରେ କୋରାନ ଓ ଅନ୍ୟଟିରେ ଖଡ୍ଗ ଧରି ଶତ୍ରୁର ମୁକାବିଲା କର । ଇସଲାମର ଶ୍ରେଷ୍ଠତ୍ୱ ପ୍ରତିଷ୍ଠା ନିମିତ୍ତ ଲାଗିରୁହ।

ହିନ୍ଦୁ ଗୋଟାଏ କାଫିର। ସେ ପଥର ଓ ମାଙ୍କଡ଼କୁ ପୂଜା କରେ। ସେମାନେ ଗାଈର ମୂତ୍ର ପିଅନ୍ତି ଓ ଧର୍ମ ନାମରେ ଗାଈର ଗୋବର ଖାଆନ୍ତି। ହିନ୍ଦୁ ଅତି ଆଦିମ ଯୁଗର ମଣିଷ । ସେମାନେ ଆମଙ୍କୁ ଶାସନ କରିବାକୁ ଉଚ୍ଚଆଶା କରିଛନ୍ତି। ଏହା ତାଙ୍କର ଦିବାସ୍ୱପ୍ନ। ଏହାର ଉତ୍ତର ମୁକ୍ତ ତରବାରୀ।"

ରାଜାକରମାନେ ନିଜକୁ ଧର୍ମଯୋଦ୍ଧା ଘୋଷଣା କଲେ। ସଭାରେ ଲୋକମାନଙ୍କୁ ବୁଝାଇଦେଲେ ୧୯୪୮ ଅପ୍ରେଲ ୮ ତାରିଖରେ ହାଇଦରାବାଦ ତାର ପରିତ୍ୟକ୍ତ ଅଞ୍ଚଳ ଦଖଲକୁ ନେବ ଓ ଏହାର ସୀମା ବଙ୍ଗୋପସାଗର ପର୍ଯ୍ୟନ୍ତ ବିସ୍ତୃତ ହେବ। ସାଗରର ଜଳରାଶି ହାଇଦରାବାଦ ନିଜାମଙ୍କର ପଦଧୌତ କରିବ। ଏସବୁ ସଭାରେ ଏ ପ୍ରକାର ଭାଷଣ ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା ଆଣୁଥିଲା।

ମାଉଂଟନ ଜୁନ ମାସରେ ଆସି କଥାବାର୍ତ୍ତା କଲେ। ବହୁତ ସୁବିଧା ଦିଆଯାଇ ଏକ ଚୁକ୍ତିନାମା ଓ ନିଜାମଙ୍କ ଫରମାନ (ହୁକୁମନାମା) ପ୍ରତିନିଧିଦଳ ଦିଲ୍ଲୀରେ ତିଆରି କଲେ ସର୍ଦ୍ଦାର ପଟେଲ ଏଥିରେ ରାଜି ହେଲେ। ମାତ୍ର ନିଜାମ ଏହା ଗ୍ରହଣ କଲେନାହିଁ।

୧୯୪୮ ଜୁନ ମାସ ୨୪ ତାରିଖରେ ଲର୍ଡ଼ ମାଉଣ୍ଟବେଟେନ ଭାରତ ଛାଡ଼ିଲେ। ଚକ୍ରବର୍ତ୍ତୀ ରାଜଗୋପଳଚାରୀ ଭାରତର ନୂଆ ବଡ଼ଲାଟ ହେଲେ। ଚାଲିଯିବା ବେଳେ ସେ କହିଗଲେ ମୋର ଦୁଃଖ ରହିଲା। ନିଜାମଙ୍କୁ ମଣେଇ ପାରିଲିନାହିଁ। ଅବସ୍ଥା ଦିନକୁ ଦିନ ଅଣ ଆୟତ୍ତ ହୋଇଯାଉଥିଲା । ରାଜାକରମାନେ ୨ଲକ୍ଷରୁ ଅଧିକ ସଂଖ୍ୟାରେ ଥାଇ ନାନା ଉତ୍ପାତ କରିବାକୁ ଲାଗିଲେ। ହିନ୍ଦୁ ଗ୍ରାମମାନଙ୍କୁ ବାଛି ସେଠାରେ ଲୁଣ୍ଠନ ପୋଡ଼ାଜଳା ଓ ନାନା ପ୍ରକାରର ନିର୍ଯ୍ୟାତନା ଆରମ୍ଭ କଲେ। ବିଦେଶର ମିସନାରୀ ଓ ନନମାନେ ମଧ୍ୟ ତାଙ୍କ ଅତ୍ୟାଚାରରୁ ତ୍ରାହି ପାଇଲେନାହିଁ। ନିଜାମଙ୍କ ସେନାପତି ଏଲ.ଏଡ଼.ରଷ (Eledross) ସେମାନଙ୍କୁ ନିଜ ସୈନ୍ୟ ବିଭାଗର ଆୟତ୍ତରେ ରଖିବାକୁ ପ୍ରସ୍ତାବ କଲେ। ମାତ୍ର ସେମାନେ ରାଜି ହେଲେନାହିଁ। ଦୁଇ ସଂସ୍ଥା ମଧ୍ୟରେ ଅସଦଭାବ ବଢ଼ି ଚାଲିଲା। ଦେଶରେ ଅରାଜକତା ବ୍ୟାପୁଥିବା ସମୟରେ ମାତ୍ର ବିଲାତର ଜାଠଦଳ ଭେଦଭାବ ନୀତିରେ ନିଜାମଙ୍କୁ ସମର୍ଥନ କରୁଥିଲେ। ଇଂଲଣ୍ଡର ବଡ଼ ବଡ଼ ଖବରକାଗଜମାନେ ମଧ୍ୟ ପ୍ରକୃତ ପରିସ୍ଥିତିର ଚିତ୍ର ପ୍ରଦର୍ଶନ କରୁନଥାନ୍ତି। ଜିନ୍ନା ଭାରତର ନୀତିକୁ ବିରୋଧ କରୁଥାଆନ୍ତି।

ସମସ୍ତଙ୍କ ଆଖି ସର୍ଦ୍ଦାର ପଟେଲଙ୍କ ଉପରେ। କଣ କାର୍ଯ୍ୟାନୁଷ୍ଠାନ ନିଆଯିବ ଏକଥା ସମସ୍ତେ ତାଙ୍କଠାରୁ ଜାଣିବାକୁ ଉଦଗ୍ରୀବ ଥାଆନ୍ତି। ଜୁଲାଇ ୧୫ତାରିଖରେ ସେ କହିଲେ ହାଇଦରାବାଦ ନିଜ ବ୍ୟବହାରରେ ପରିବର୍ତ୍ତନ ଆଣି ନିଜ ମତିଗତି ନ ବଦଳାଇଲେ ଜୁନାଗଡ଼ ପରି ଅବସ୍ଥା ଭୋଗିବ ଯାହା ମୁଁ ଜୁନାଗଡ଼ ଦଖଲ ସମୟରେ କହିଥିଲି। ହାଇଦରାବାଦ ସରକାରରୁ ଜଣାଯାଉଥିଲା କମ୍ୟୁନିଷ୍ଟମାନେ ଅଗଷ୍ଟ ୧୯୪୬ରୁ ସେପ୍ଟେମ୍ବର ୧୯୪୮ ମଧ୍ୟରେ ୨୦୦୦ ଲୋକଙ୍କୁ ହତ୍ୟା କରିଛନ୍ତି। ଲୁଣ୍ଠନ ଓ ଅଗ୍ନିକାଣ୍ଡରେ ଅନେକ ଗ୍ରାମ ସମ୍ପୂର୍ଣ୍ଣ ଧ୍ୱଂସ କରିଅଛନ୍ତି। ପୁଲିସ ହାତରୁ ୨୩୦ ବନ୍ଧୁକ ଲୁଟି କରି ନେଇଛନ୍ତି। ସ୍ୱର୍ଣ୍ଣ ରୌପ୍ୟ ଓ ଶସ୍ୟ ଦଶଲକ୍ଷ ଟଙ୍କାର ନଷ୍ଟ କରି ଦେଇଛନ୍ତି। ସୀମାନ୍ତ ଅଞ୍ଚଳରେ ସେମାନେ ରାସ୍ତା ଓ ପୋଲ ଧ୍ୱଂସ କରି ଦେଇଛନ୍ତି ଓ ରାଜ୍ୟର ୯୫ଭାଗ ଥିବା ହିନ୍ଦୁ ଅଧିବାସୀମାନଙ୍କୁ ଅତ୍ୟାଚାରିତ କରି ରଖିଛନ୍ତି। ସେମାନଙ୍କର ଅତ୍ୟାଚାରର ଦମନ ପାଇଁ ପାର୍ଶ୍ୱ ରାଜ୍ୟମାନଙ୍କରୁ ବାରମ୍ବାର ସୈନ୍ୟ ବାହିନୀର ସାହାଯ୍ୟ ଲୋଡ଼ା ଥିଲା। ନିଜାମ ସେମାନଙ୍କୁ ନିଜର ବନ୍ଧୁ ବୋଲି ମନେ କରୁଥିଲେ। କମ୍ୟୁନିଷ୍ଟ ଓ ରାଜାକରଙ୍କ ଭୟରେ ସମଗ୍ର ରାଜ୍ୟ କମ୍ପି ଉଠୁଥିଲା। ଖାଲି ହିନ୍ଦୁ ନୁହଁନ୍ତି, ଜାତୀୟତାବାଦୀ ମୁସଲମାନ ନେତା ସେମାନଙ୍କ ଭୟରେ ଡରି ରହିଥିଲେ। ନିଜାମ ୧୯୪୮ ଅଗଷ୍ଟ ୧୮ ତାରିଖରେ ଜାତିସଂଘରେ ଭାରତ କାମଚଳା ଚୁକ୍ତି ଭଙ୍ଗ କରି ହାଇଦରାବାଦର ସାର୍ବଭୌମ କ୍ଷମତାକୁ କ୍ଷୁର୍ଣ୍ଣ କରୁଅଛି, ବୋଲି

ଆପତ୍ତି କଲେ। ଏହି ପରିସ୍ଥିତିରେ ଜଣାଗଲା ଯେ ହାଇଦରାବାଦ ରାଜ୍ୟର ଆଇନ ଅନୁଗତ ପ୍ରଜାମାନଙ୍କୁ ସୁରକ୍ଷା ଦେବା ଭାରତ ସରକାରଙ୍କର ଦାୟିତ୍ୱ। ହାଇଦରାବାଦ ଗୁପ୍ତରେ ପ୍ରଚାର କରିଦେଇଥାଏ ଯେ ସେମାନେ ବୋମା ବିଧ୍ୱଂସୀ ଉଡ଼ାଜାହାଜ ରଖିଅଛନ୍ତି ଓ ଯଦି ସେମାନଙ୍କ ପ୍ରତି ବିପଦ ଆସେ ସେମାନେ ଦିଲ୍ଲୀ, ବମ୍ବେ, ଅହମ୍ମଦାବାଦ ପରି ବଡ଼ ବଡ଼ ସହର ଏହାଦ୍ୱାରା ଧ୍ୱଂସ କରିପାରିବେ। ଭାରତର ପ୍ରଧାନ ସେନାପତି ଜେନେରାଲ ବୁଚର ମଧ୍ୟ ଏହି ମତ ସମର୍ଥନ କରୁଥିଲେ। ସଂଘର୍ଷ ଅବଶ୍ୟମ୍ଭାବୀ ହୋଇ ଉଠିଲା।

ହାଇଦରାବାଦର ସୈନ୍ୟ ସଂଖ୍ୟା ବୃଦ୍ଧି କରାଯାଇ ୪୨୦୦୦ କରାଯାଇଥାଏ। ରାଜାକରଙ୍କର ସଂଖ୍ୟା ୨ ଲକ୍ଷ ଥିଲା। ସିଡ଼ିନୀ କଟନ ଯେଉଁସବୁ ଚୋରା ଗୋଳାବାରୁଦ ଅସ୍ତ୍ରଶସ୍ତ୍ର ଆଣି ପହଞ୍ଚାଉ ଥିଲେ ତାହା ମଧ୍ୟ ମହଜୁତ ଥିଲା। ପାକିସ୍ତାନକୁ ଦିଆଯାଇଥିବା ୨୦ କୋଟି ଟଙ୍କାର ଭାରତୀୟ ପ୍ରତିଭୂତି (Indian Securities) ଚୁକ୍ତି ଲଂଘନ କରି ଭଙ୍ଗାଇବାକୁ ବସିଲା। ମାତ୍ର ଭାରତ ଏକ ଅର୍ଡ଼ିନାନ୍ସ ଜାରି କରି ଏହାର ପ୍ରତିରୋଧ କଲା। ନିଜାମଙ୍କର ମନ୍ତ୍ରୀମଣ୍ଡଳ ସଭ୍ୟ ଜେ.ଭି.ଯୋଶୀ ଆଉରଙ୍ଗବାଦ ପରଭାନି ଜଲିନା ନୋନ୍ଦେନ ଜିଲ୍ଲାମାନଙ୍କରେ ଶାସନ ସମ୍ପୂର୍ଣ୍ଣ ଭୁଷୁଡ଼ି ପଡ଼ିଛି, ପୁଲିସ ରାଜାକର ସହିତ ହାତ ମିଳାଇଛି ଅଭିଯୋଗ କରି ନିଜାମଙ୍କ ମନ୍ତ୍ରୀସଭାରୁ ଇସ୍ତଫା ଦେଇଦେଲେ।

ଅଗଷ୍ଟ ଶେଷବେଳକୁ ଆଇନ ଶୃଙ୍ଖଳା ପରିସ୍ଥିତି ଉଦ୍‌ବେଗଜନକ ହୋଇ ଉଠିଲା। ୧୯୪୮ ମସିହା ଅଗଷ୍ଟ ୩୧ ତାରିଖରେ ରାଜଗୋପଲାଚାରୀ ନିଜାମଙ୍କୁ ଜଣାଇଦେଲେ ଯେ, ଭାରତର ଲୋକମାନଙ୍କର ଏ ଦିଗରେ ନୈତିକ ଦାୟିତ୍ୱ ଅଛି ଓ ସେ କୌଣସି ବିଜ୍ଞ ଓ ସାହସିକ ପଦକ୍ଷେପ ଗ୍ରହଣ କରନ୍ତୁ। ରାଜାକର ସଙ୍ଗଠନକୁ ବେଆଇନ ଘୋଷଣା କରି ଭାରତୀୟ ସୈନ୍ୟମାନଙ୍କୁ ସିକନ୍ଦରାବାଦରେ ପୁର୍ନସ୍ଥାପନ ନିମିତ୍ତ ସେ ପରାମର୍ଶ ଦେଲେ। ନିଜାମ ଏହା କୌଣସି ପ୍ରକାର ମାନି ନେବାକୁ ପ୍ରସ୍ତୁତ ନଥିଲେ। ଅବସ୍ଥାର ଅବନତି ଘଟିଲା। ରାଜାକର ଓ କମ୍ୟୁନିଷ୍ଟମାନେ ଭାରତୀୟ ଅଞ୍ଚଳରେ ଲୁଟତରାଜ କଲେ। ରେଲ ଅବରୋଧ କରି ଯାତ୍ରୀମାନଙ୍କୁ ଲୁଟତରାଜ ଓ ମାଲଗାଡ଼ି ଲୁଟ କରିବାରେ ଲାଗିଲେ। ୧୯୪୮ ସେପ୍ଟେମ୍ବର ୯ ତାରିଖରେ ହାଇଦରାବାଦକୁ ଭାରତୀୟ ସୈନ୍ୟ ବାହିନୀ ପଠାଇବା ନିଷ୍ପତ୍ତି ନିଆଗଲା।

ପାକିସ୍ତାନ ରାଷ୍ଟ୍ରପତି ଜିନ୍ନାଙ୍କ ମୃତ୍ୟୁ ହେତୁ ପୁଲିସ କାର୍ଯ୍ୟାରମ୍ଭ ୧୩ ସେପ୍ଟେମ୍ବର ୧୯୪୮ ଆରମ୍ଭ ହେଲା। କାସିମ ରାଜଭି ବଡ଼େଇ କରୁଥିଲେ ଯଦି ହାଇଦରାବାଦକୁ ଭାରତୀୟ ସୈନ୍ୟ ଆସନ୍ତି ସମଗ୍ର ଭାରତବର୍ଷରେ ଥିବା ମୁସଲମାନମାନେ ଶାସନର

ବିରୋଧ କରିବେ ଓ ରାଜ୍ୟରେ ଥିବା କୋଟିଏ ପଞ୍ଚଷଠି ଲକ୍ଷ ହିନ୍ଦୁଙ୍କର ଚିହ୍ନବର୍ଣ୍ଣ ରହିବନାହିଁ। ଭାରତର ଶାସନକର୍ତ୍ତାମାନଙ୍କ ମଧ୍ୟରେ ମଧ୍ୟ ଏକମତ ନଥିଲା। ସଂଘର୍ଷ ନିଜାମ ଓ ସର୍ଦ୍ଦାର ପଟେଲଙ୍କ ମଧ୍ୟରେ ଥିଲା। ଜଣେ ଗଣତନ୍ତ୍ରକୁ ପଦାଘାତ କରି ସଂଖ୍ୟା ଗରିଷ୍ଠ ଅଧିବାସୀଙ୍କର ସ୍ୱାର୍ଥ ବିରୁଦ୍ଧରେ ଏକଛତ୍ରବାଦୀ ଇସଲାମୀୟ ରାଜ୍ୟ ପ୍ରତିଷ୍ଠାରେ ବ୍ରତୀ। ଅନ୍ୟ ଜଣେ ହାଇଦରାବାଦକୁ ଭାରତର ଏକ ଅଖଣ୍ଡ ଅଙ୍ଗ ରୂପେ ଗ୍ରହଣ କରି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେଠାରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ଓ ସାଧାରଣ ମନୁଷ୍ୟର ଅର୍ଥନୈତିକ ସାମାଜିକ ଅବସ୍ଥାରେ ଉନ୍ନତିରେ ଦ୍ରୁତ ପଦକ୍ଷେପ ନେବାରେ ଉଦ୍ୟତ। ୧୩ ତାରିଖ ସକାଳେ ଦକ୍ଷିଣ ସେନା ନିୟନ୍ତ୍ରଣ (command) ଅଧ୍ୟକ୍ଷ ଲେଫ୍ଟନାଣ୍ଟ ଜେନେରାଲ ମହାରାଜା ରାଜେନ୍ଦ୍ର ସିଂହାର ନିର୍ଦ୍ଦେଶାନୁସାରେ ମେଜର ଜେନେରାଲ ଜେ.ଏନ. ଚୌଧୁରୀ ଯାତ୍ରା ଆରମ୍ଭ କଲେ। ଏହାର ନାମ ଅପରେସନ ପୋଲୋ ଦିଆଗଲା। ଦୁଇଆଡୁ ସୈନ୍ୟ ବାହିନୀ ହାଇଦ୍ରାବାଦ ମଧ୍ୟରେ ପ୍ରବେଶ କଲେ। ପଶ୍ଚିମରୁ ସୋଲାପୁର ହାଇଦରାବାଦ ୧୮୬ ମାଇଲ ରାସ୍ତାରେ ଗୋଟିଏ ଦଳ ଓ ପୂର୍ବପଟୁ ବେଜୱାଡ଼ାରୁ ହାଇଦରାବାଦ ୧୬୦ ମାଇଲ ରାସ୍ତାରେ ଆଉ ଏକ କ୍ଷୁଦ୍ର ଦଳ ଅଗ୍ରଗତି କଲେ। ପ୍ରଥମେ ପ୍ରଥମ ଓ ଦ୍ୱିତୀୟ ଦିନରେ ସେମାନଙ୍କୁ ବିରୋଧ କରାଯାଉଥିଲା । ନିଜାମଙ୍କର ଅଶୃଙ୍ଖଳିତ ସୈନ୍ୟ ଓ ରାଜାକରମାନେ ଏହି ବାହିନୀକୁ ସାମନା ନ କରିପାରି ଛତ୍ରଭଙ୍ଗ ଦେଲେ। ସେପ୍ଟେମ୍ବର ୧୭ ତାରିଖରେ ହାଇଦରାବାଦ ସୈନ୍ୟ ବାହିନୀ ଆତ୍ମସମର୍ପଣ କଲେ। ସେମାନଙ୍କର କ୍ଷୟକ୍ଷତି ବହୁତ ଥିଲା। ଦୁଇ ପକ୍ଷରୁ ମୋଟ ୮୦୦ ଜଣଙ୍କର ପ୍ରାଣହାନି ହେଲା। ନିଜାମଙ୍କର ଦୂରଦୃଷ୍ଟି ଥିଲେ ଏହି କ୍ଷତି ହୋଇପାରି ନଥାନ୍ତା । ୧୮ ତାରିଖରେ ମେଜର ଜେନେରାଲ ଚୌଧୁରୀଙ୍କ ନେତୃତ୍ୱରେ ଭାରତୀୟ ସେନାବାହିନୀ ହାଇଦରାବାଦ ସହରରେ ପହଞ୍ଚିଗଲେ। ସର୍ବମୋଟ ମାତ୍ର ୧୦୮ ଘଣ୍ଟାରେ ଏହି ଅଭିଯାନ ସମ୍ପୂର୍ଣ୍ଣ ହେଲା । ଏହାକୁ ସରକାରୀ ନିର୍ଦ୍ଦେଶ ଅନୁସାରେ ଯେତେ ଅଳ୍ପ ସମୟରେ ସମାପ୍ତ କରାଯାଇପାରେ ସେଥିପାଇଁ ସମସ୍ତେ ଉଦ୍ୟତ ଥିଲେ। ଏହା ହୁଏତ ଦୀର୍ଘଦିନ ଲାଗିରହି ଥାଆନ୍ତା ମାତ୍ର ପ୍ରଥମ ଦିନ ଲେଫ୍ଟନାଣ୍ଟ ଟି.ଟି. ମୁର ନାମକ ଜଣେ ପୁରାତନ ଇଂରେଜ ସୈନିକ ଧରା ପଡ଼ିଲେ। ଅଗଷ୍ଟ ମାସରୁ ତାଙ୍କୁ ହାଇଦରବାଦରେ ନିଯୁକ୍ତି ମିଳିଥିଲା। ତାଙ୍କୁ ତାଙ୍କର ଜିପ୍ ସହିତ ଧରା ଯିବାରୁ ଦେଖାଗଲା, ଜିପ୍‌ରେ ବହୁତ ବିସ୍ଫୋରକ ଦ୍ରବ୍ୟ ଭରି ରହିଛି ଓ ସୋଲାପୁର ହାଇଦରାବାଦ ରାସ୍ତାରେ ସବୁ ପୋଲ ଧ୍ୱଂସ କରି ଦେବାକୁ ତାଙ୍କୁ ହାଇଦରାବାଦ ସୈନ୍ୟ ବିଭାଗରୁ ନିର୍ଦ୍ଦେଶ ଦିଆଯାଇଥିଲା। ଏହା ପ୍ରତିହତ ହେବା ଫଳରେ ସଂଘର୍ଷର ଶୀଘ୍ର

ସମାପ୍ତି ଘଟିଲା। ରାଜାକରମାନେ ଭୟରେ ଛତ୍ରଭଙ୍ଗ ଦେଲେ। ଦାଢ଼ି କାଟି ଅନେକ ନିଜର ପୂର୍ବ ପରିଚୟ ଗୋପନ ରଖିବାକୁ ଉଦ୍ୟମ କଲେ। କମ୍ୟୁନିଷ୍ଟ ଦଳ ଭୟରେ ଉଭାନ ହୋଇଗଲେ । ଦଳ ବେଆଇନ ଘୋଷିତ ହେଲା। ଜନସାଧାରଣଙ୍କୁ ନିବେଦନ ଫଳରେ, ବେଆଇନ ଭାବେ ଗଚ୍ଛିତ ଅସ୍ତ୍ରଶସ୍ତ୍ର ଗୋଳାବାରୁଦ ସରକାରରେ ଜମା ଦିଆଗଲା। ସବୁ ଧର୍ମ ଓ ଶ୍ରେଣୀର ନାଗରିକ ମାନଙ୍କ ସୁରକ୍ଷା ସୁନିଶ୍ଚିତ କରାଗଲା। ନିଜାମଙ୍କର ଏକମାତ୍ର ସ୍ୱାର୍ଥ ଥିଲା ତାଙ୍କ ଧନ ସମ୍ପତ୍ତି କିପରି ନିରାପଦ ରହିବ। ଏହାର ସୁରକ୍ଷା ଦିଆଯିବାରୁ ସେ ନିଜେ ଭାରତୀୟ ସୈନ୍ୟ ବାହିନୀକୁ ସମସ୍ତ ଶାସନ କ୍ଷମତା ହସ୍ତାନ୍ତର କରି ଏକ ଫରମାନା ଜାରି କଲେ। କାର୍ଯ୍ୟାରମ୍ଭ ସମୟରୁ ଏଜେଣ୍ଟ ଜେନେରାଲ ମୁନସି ନିଜ ବାସସ୍ଥାନରେ ଗୃହବନ୍ଦୀ ଥିଲେ। ତାଙ୍କୁ ଉଦ୍ଧାର କରାଯାଇ ଚିକିତ୍ସା ନିମିତ୍ତ ବମ୍ବେ ପଠାଗଲା । ୨୩ ତାରିଖ ଦିନ ନିଜାମ ଭାରତୀୟ ସମ୍ବିଧାନ ନିଜରାଜ୍ୟ ହାଇଦରାବାଦରେ ପ୍ରଚଳିତ ହେବାକୁ ସମ୍ମତି ଦେଇ ସମ୍ବିଧାନ ଗ୍ରହଣ କଲେ। ଏହି ଉଦ୍‌ବେଗପୂର୍ଣ୍ଣ ଦୁଃଖଦ ଅଧ୍ୟାୟର ଏହିଠାରେ ସମାପ୍ତି ଘଟିଲା । ମେଜର ଜେନେରାଲ ଚୌଧୁରୀ ହାଇଦରାବାଦର ସେନା ବିଭାଗର ଶାସକ (Military Governor) ରୂପେ ଦାୟିତ୍ୱ ଗ୍ରହଣ କଲେ। ଉଜୁଡ଼ା ଶାସନକୁ ସେ ସଜାଡ଼ିବାରେ ଲାଗିଲେ । ଜଣେ ପୋଖତ ଆଇସିଏସ ବାଖଲେ (DS Bakhle) ତାଙ୍କର ପରାମର୍ଶଦାତା ହୋଇ ରହିଲେ। ପରବର୍ତ୍ତୀ କାଳରେ ହାଇଦରାବାଦରେ ଲୋକପ୍ରତିନିଧି ଶାସନ ଓ ୧୯୫୨ ମସିହାରେ ସାବାଳକ ଭୋଟ ଅଧିକାର ଫଳରେ କଂଗ୍ରେସ ନେତା ବି ରାମକୃଷ୍ଣ ରାଓଙ୍କ ଅଧକ୍ଷତାରେ ଏକ ମନ୍ତ୍ରୀମଣ୍ଡଳ ଦେଶ ଶାସନ କଲା। ୧୯୪୭ ସେପ୍ଟେମ୍ବର ୧୯ ତାରିଖରେ କାଶିମ ରାଜଭି ହାଇଦରାବାଦ ଉପକଣ୍ଠରେ ନିଜର ଜଣେ ସମ୍ପର୍କୀୟ ଘରେ ଥିବାବେଳେ ଧରାଗଲେ । ତାଙ୍କୁ ସସମ୍ମାନେ ଗୃହବନ୍ଦୀ ରଖାଗଲା। ତାଙ୍କ ବିରୁଦ୍ଧରେ ଅନ୍ୟ ରାଜାକରମାନଙ୍କ ମକଦ୍ଦମା ସହିତ ମକଦ୍ଦମା ରୁଜୁ କରାଯାଇ ବିଚାର ହେଲା ଓ ସେ ଦଣ୍ଡିତ ହେଲେ। ଯେଉଁ ରାଜାକରମାନେ ଗୁରୁତର ଅପରାଧ ଘଟାଇବା ପ୍ରମାଣ ମିଳିଲା ସେମାନଙ୍କୁ କେବଳ ଅଦାଲତରେ ଆଇନ୍ ଅନୁସାରେ ବିଚାର ହେଲା। ଅନ୍ୟ ଛୋଟବଡ଼ ଅପରାଧୀମାନଙ୍କୁ ଉଦାରତା ଦେଖାଇ ମାଫ୍ କରଗଲା। ଲାଏକ ଅଲ୍ଲି ଏ ଅବସ୍ଥା ଦେଖି କୌଶଳରେ ପାକିସ୍ତାନ ପଳାଇଗଲେ। ସେପ୍ଟେମ୍ବର ୨୩ ତାରିଖରେ ନିଜାମ ଜାତିସଂଘ ନିରାପତ୍ତା ପରିଷଦରେ ନିଜର ଆପତ୍ତି ଉଠାଇ ଆଣିବାକୁ ଅନୁରୋଧ କଲେ। ସେଠାରେ ମଧ୍ୟ କ୍ରମେ ଏହାର ସତ୍ତା ରହିଲାନାହିଁ। ଚାରିଆଡ଼େ ଆନନ୍ଦ ଉଚ୍ଛ୍ୱାସ ଦେଖାଗଲା । ଭାରତବର୍ଷର କୌଣସି ସ୍ଥାନରେ ନିଜାମଙ୍କ ସପକ୍ଷରେ

କୌଣସି ସାମ୍ପ୍ରଦାୟିକ ଉତ୍ତେଜନା ଦେଖାଯାଇନଥିଲା। ଭାରତ ବିରୁଦ୍ଧରେ ପ୍ରଚାର ଓ ଅସ୍ତ୍ରଶସ୍ତ୍ର ଗୋଳାବାରୁଦ କିଣିବାରେ ନିଜାମ ବୃଥାରେ ୨୨ କୋଟି ଟଙ୍କା ରାଜସ୍ୱ ଅପବ୍ୟୟ କରିଥିଲେ । ଅନ୍ୟଦେଶ ହୋଇଥିଲେ ନିଜାମଙ୍କ ପରି ରାଜ୍ୟବାସୀ ମାନଙ୍କର ଦୁଃଖ ଦୁର୍ଦ୍ଦଶା ପ୍ରତି ବଧିର ଥାଇ ସେମାନଙ୍କ ଘୋର ଦୁର୍ଦ୍ଦିନରେ ନିଜର ଇସଲାମୀୟ ରାଷ୍ଟ୍ର ଗଠନ ଚିନ୍ତାରେ ମଗ୍ନ ଥିବା ଶାସକ ଜଣେ, ହୁଏତ ନିଜ କର୍ମଫଳ ଦୁଃଖର ସହିତ ଭୋଗିଥାଆନ୍ତେ। ମାତ୍ର ସର୍ଦ୍ଦାର ପଟେଲ ଅତିଶୟ ଉଦାର ଥିଲେ। ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ରାଜ୍ୟରେ ସୁଶାସନ ପ୍ରତିଷ୍ଠା ଦ୍ୱାରା ରାଜ୍ୟବାସୀଙ୍କର ଦୁର୍ଦ୍ଦଶା ଦୂର କରିବା। ଯଥେଷ୍ଟ ସମ୍ମାନର ସହିତ ମିର ଓସମାନ ଅଲ୍ଲୀଖାଁ ଭାରତୀୟ ସମ୍ବିଧାନ ଅଧିନରେ ରାଜ୍ୟର ମୁଖ୍ୟ ଭାବରେ ରହିଲେ। ତାଙ୍କୁ ଶେଷରେ ବାର୍ଷିକ ୫୦ଲକ୍ଷ ଟଙ୍କା ହାଇଦ୍ରାବାଦ ମୁଦ୍ରାରେ ହାତପାଣ୍ଠି ଭାବରେ ମିଳିଲା। ଯେଉଁ ସ୍ଥାବର ସମ୍ପତ୍ତି ତାଙ୍କର ଖୋଦ ଦଖଲରେ ଥିଲା ତାକୁ ସେ ରଖିବାକୁ ଅନୁମତି ପାଇଲେ। ସରକାର ରାଜ୍ୟ ଶାସନ ଦଖଲ କରି ଖଜଣା ଖାନାରେ ୭୭କୋଟି ଟଙ୍କା ଜମାସ୍ୱରୂପ ପାଇଲେ। ନିଜାମ ନିଜର ୫୦୦ଗୋଟି ଗ୍ରାମ, ପ୍ରାସାଦ, ମିଉଜିୟମ ଓ ଅନ୍ୟାନ୍ୟ କୋଠାବାଡ଼ି ସରକାରଙ୍କୁ ଛାଡ଼ିଦେଲେ। ବର୍ଷକୁ କୋଟିଏ ଚବିଶ ଲକ୍ଷ ଆୟ ପାଉଥିବା ନିଜର ବ୍ୟକ୍ତିଗତ ଜମିଦାରିକୁ ନିଜାମ ନିଜ ଜୀବଦ୍ଦଶାରେ ବର୍ଷକୁ ୨୫ଲକ୍ଷ ଟଙ୍କା କ୍ଷତିପୂରଣ ପାଇବା ସର୍ତ୍ତରେ ସରକାରଙ୍କୁ ଛାଡ଼ିଦେଲେ। ସେ ୪୦କୋଟି ଟଙ୍କା ନିଜ ପାଣ୍ଠିରୁ ଭାରତ ସରକାରଙ୍କ ପ୍ରତିଭୂତିରେ ଖଟାଇଲେ। ତୁଙ୍ଗଭଦ୍ରା ଯୋଜନାରେ ସେ ନିଜେ ୫୦ଲକ୍ଷ ଟଙ୍କା ଋଣରେ ଖଟାଇଲେ ସର୍ବୋପରି ବିନା କ୍ଷତିପୂରଣରେ ତାଙ୍କ ରାଜ୍ୟର ୧୨ହଜାର ମାଇଲ ରେଲୱେ ସରକାରଙ୍କୁ ମିଳିଥିଲା। ଭାରତର ଲୌହମାନବଙ୍କର ପ୍ରକୃତରେ ଯୁଗ ଯୁଗ ଧରି ଉଜ୍ଜ୍ୱଳ ରହିବା ଭଳି ଏହାଏକ ଐତିହାସିକ କୃତି।





ନବାବ ମହବତ୍ ଖାନ୍ ରସୁଲଖାନ୍‌ଜୀ
(୧୯୦୦-୧୯୫୯)

# ଜୁନାଗଡ଼ ନବାବ
## ମହବତ ଖାଁ ରସୁଲଖାଁଜି

କାଥିଆବାଡ଼ ଉପଦ୍ୱୀପ ଭାରତର ଉତ୍ତର ମୁଣ୍ଡରେ ପଶ୍ଚିମ ଉପକୂଳରେ ଅବସ୍ଥିତ। ଭାରତର ଇତିହାସରେ ଏହାର ଏକ ସ୍ୱତନ୍ତ୍ର ନାମ ଅଛି। ପୁରାଣ ଓ ଇତିହାସର ଅନେକ ନାୟକଙ୍କ ସ୍ଥିତି ଏହି ଅଞ୍ଚଳ ସହିତ ଜଡ଼ିତ। ଶ୍ରୀକୃଷ୍ଣଙ୍କ କର୍ମକ୍ଷେତ୍ର ଦ୍ୱାରକା ଏହି କାଥିଆୱାଡ଼ରେ । ଭଗବାନ ଶ୍ରୀକୃଷ୍ଣଙ୍କ ଦେହୋତ୍ସର୍ଗ କ୍ଷେତ୍ର ମଧ୍ୟ ଏହିଠାରେ ଅଛି। ଶ୍ରୀକୃଷ୍ଣଙ୍କ ପରମ ଭକ୍ତ ଦରିଦ୍ର ସୁଦାମା, ସୁଦାମା ପୁରୀ ଆଧୁନିକ ପୋରବନ୍ଦରରେ ଜନ୍ମଲାଭ କରିଥିଲେ। ତାହା ଛଡା ସୁଖ୍ୟାତ ଜାତୀୟ କବି ନରସି ମେହେଟ୍ଟା ଜୁନାଗଡ଼ରେ ଜନ୍ମଲାଭ କରିଥିଲେ। ତାଙ୍କ ରଚିତ ଭଜନ "ବୈଷ୍ଣବ ଜନତୋ..." ମହାତ୍ମା ଗାନ୍ଧିଙ୍କର ଅତି ପ୍ରିୟ ଭଜନ ଥିଲା ଓ ପ୍ରତ୍ୟେକ ଦିନ ତାଙ୍କ ପ୍ରାର୍ଥନା ସଭାରେ ଏହା ବୋଲା ଯାଉଥିଲା। ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଏହିଠାରେ ଜନ୍ମଲାଭ

କରିଥିଲେ । ପ୍ରଥମ ଜ୍ୟୋର୍ତିଲିଙ୍ଗ ଶ୍ରୀ ସୋମନାଥ ମଧ୍ୟ ଏହିଠାରେ । ସମ୍ରାଟ ଅଶୋକଙ୍କର ଶିଳାଲିପି ଜୁନାଗଡ଼ ଓ ଗିରିନାର ପାହାଡ଼ ମଧ୍ୟରେ ଏକ ଘାଟୀ Gorge ରେ ଦେଖିବାକୁ ମିଳେ। ହିନ୍ଦୁମାନଙ୍କର କାଶୀ-ବାରଣାସୀ ପରି ଜୈନମାନଙ୍କର ତୀର୍ଥ ଶତ୍ରୁଞ୍ଜୟ ପର୍ବତ ପାଲିଟାନ ନିକଟରେ ଅବସ୍ଥିତ। ଆଫ୍ରିକା ବାହାରେ ପୃଥିବୀ ମଧ୍ୟରେ ପଶୁରାଜ ସିଂହ କେବଳ ଏଠାକାର ଗିର ଜଙ୍ଗଲରେ ଦେଖାଯାଏ।

କ୍ରିକେଟରେ କାଥିଆବାଡ଼ ଅତୀତରେ ରଣଜୀଟ୍ରଫିରେ ଅନେକ ନାମଜାଦା ଖେଳାଳୀ ଦେଇଥିଲା। ବର୍ତ୍ତମାନ ଯୁଗରେ ମଧ୍ୟ ଦିଲିପସିଂହ, ଅମରସିଂହ ଓ ବିନୁ ମାଙ୍କଡ଼ ଆନ୍ତର୍ଜାତୀୟ ଖ୍ୟାତି ଅର୍ଜନ କରିଛନ୍ତି। ମହାତ୍ମାଗାନ୍ଧି ପୋରବନ୍ଦରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ବାପା ଏହି ରାଜ୍ୟର ଦେଓ୍ୱାନ ଥିଲେ। ମୌର୍ଯ୍ୟ ଓ ଗୁପ୍ତ ରାଜାମାନେ ଏହି ଅଞ୍ଚଳ ଶାସନ କରୁଥିଲେ। ଖ୍ରୀ୧୦୨୪ରେ ମହମ୍ମଦ ଗଜନିଙ୍କର ସୋମନାଥ ମନ୍ଦିର ଲୁଣ୍ଠନ ସହିତ ଏହି ଅଞ୍ଚଳ ମୁସଲମାନଙ୍କ ଦଖଲକୁ ଆସିଲା। ଖ୍ରୀ ୧୧୯୪ରେ ମୁସଲମାନମାନେ ଅନହିଲବାଦ ଜୟ କରିବା ସହିତ ଖିଲଜି ଓ ପରେ ତୋଗଲକ ମାନଙ୍କ ଆୟତ୍ତକୁ ଏହାର ଶାସନ ଆସିଥିଲା। ଖ୍ରୀ୧୫୭୩ରେ ଆକବର ଏହା ଜୟ କଲେ ଓ ତାଙ୍କ ପ୍ରତିନିଧିମାନେ ସୈନ୍ୟ ପଠାଇ ସ୍ଥାନୀୟ ଲୋକଙ୍କ ଠାରୁ ରାଜକୀୟ ଦେୟ ଅସୁଲ କରୁଥିଲେ। ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ମରହଟ୍ଟାମାନେ ମୋଗଲମାନଙ୍କ ସ୍ଥାନ ଅଧିକାର କରିନେଲେ। ତାଙ୍କର ସେନାପତିମାନେ କର ଅସୁଲ କରୁଥିଲେ। ଖ୍ରୀ୧୮୦୩ରେ କାଥିଆବାଡ଼ର ତାଲୁକଦାରମାନେ ବରୋଦାରେ ଥିବା ବ୍ରିଟିଶ ରେସିଡ଼େଣ୍ଟଙ୍କୁ ସୁରକ୍ଷା ପ୍ରାର୍ଥନା କଲେ। ରେସିଡ଼େଣ୍ଟ କର୍ଣ୍ଣେଲ ୱାକର ବଡ଼ଲାଟକୁ ଲେଖିଲେ ଯେ ଏହି ତାଲୁକଦାରମାନେ ବସ୍ତୁତଃ ସ୍ୱାଧିନ ଥିଲେ। ପେଶବା ବା ଗାଇକୋବାଡ଼ କେହି ସେମାନଙ୍କ ଉପରେ କର୍ତ୍ତୃତ୍ୱ ଜାରି କରୁନଥିଲେ। ଖ୍ରୀ୧୮୦୭ରେ କର୍ଣ୍ଣେଲ ୱାକର ଇଷ୍ଟ ଇଣ୍ଡିଆ କମ୍ପାନୀ ଓ ଗାଇକୋବାଡ଼ଙ୍କର ସୈନ୍ୟ ନେଇ ଏହି ସବୁ କ୍ଷୁଦ୍ର ରାଜ୍ୟମାନଙ୍କୁ ସୁରକ୍ଷା ଦେଲେ। ଯେଉଁ ତାଲୁକଦାର ମାନେ ତାଙ୍କୁ ସାହାଯ୍ୟ କଲେ ସେମାନଙ୍କୁ ଆୟତନ ବିଚାର ନକରି ସ୍ୱାଧିନ ରାଜ୍ୟ ମର୍ଯ୍ୟାଦା ଦେଲେ। ସେମାନଙ୍କୁ ମରହଟ୍ଟା ବର୍ଗୀମାନଙ୍କୁ ଅତ୍ୟାଚାରରୁ ରକ୍ଷା କରିବା ପ୍ରତିଶ୍ରୁତି ମିଳିଲା। ପ୍ରତିଦାନରେ ସେମାନେ ଏକ ନିର୍ଦ୍ଦିଷ୍ଟ ପରିମାଣରେ ଅର୍ଥ ସ୍ୱେଚ୍ଛାରେ ଦେବାର ନିଷ୍ପତ୍ତି ହେଲା। ଏହି ଅର୍ଥ ଇଷ୍ଟଇଣ୍ଡିଆ କମ୍ପାନୀ, ପେଶୱା ଓ ଗାଇକୋବାଡ଼ ବାଣ୍ଟି ନେଲେ। ଖ୍ରୀ.୧୮୧୭ରେ ପେଶୱା ଓ ଖ୍ରୀ.୧୮୨୦ରେ ଗାଇକୋବାଡ଼ ସେମାନଙ୍କ ପ୍ରାପ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଛାଡ଼ିଦେଲେ।

କାଥିଆବାଡ଼ ଅଞ୍ଚଳରେ ୧୪ତୋପ ସଲାମି ରାଜ୍ୟ ଜୁନାଗଡ଼, ଓନୱନଗର, ଭାବନଗର, ଧରଙ୍ଗଧ୍ରା, ପୋରବନ୍ଦର, ମୋରିଭ, ଗୋଣ୍ଡଲ, ଜାଫରାବାଦ, ୱାନକାନର, ପାଲିଟାନା, ଧ୍ରୋଲ, ଲିମ୍ବଡ଼ି, ରାଜକୋଟ ଓ ୱାଧୱାନ । ୧୭ଗୋଟି ତୋପ ସଲାମି ଶୂନ୍ୟ ରାଜ୍ୟ ବ୍ୟତୀତ ୧୯୧ ଗୋଟି କ୍ଷୁଦ୍ର ରାଜ୍ୟ ଥିଲା। ଏହାର ମୋଟ କ୍ଷେତ୍ରଫଳ ୨୦ହଜାର ବର୍ଗମାଇଲ ଓ ଲୋକସଂଖ୍ୟା ୪୦ଲକ୍ଷ ଥିଲା। ଏହା ଭିତରୁ ୪୬ଗୋଟି ରାଜ୍ୟର ଆୟତନ ଦୁଇ ବର୍ଗମାଇଲ ବା ତା'ଠାରୁ କମ ଥିଲା। ଆଠଗୋଟି ରାଜ୍ୟ ପ୍ରତ୍ୟେକ ଅଧ ବର୍ଗମାଇଲ ଆୟତନର । ଏମାନଙ୍କ ବାଦ କାଥିଆବାଡ଼ର କ୍ଷୁଦ୍ରତମ ରାଜ୍ୟ ଥିଲା ଭେଜାନେନେସ। ଏହାର ଆୟତନ ୦.୨୯ ବର୍ଗମାଇଲ ଲୋକସଂଖ୍ୟା ୨୦୬ ଓ ବାର୍ଷିକ ଆୟ ମାତ୍ର ୫୦୦ଟଙ୍କା ଥିଲା। ପୁରୁଷାନୁକ୍ରମେ ଏହି ରାଜ୍ୟମାନ ଭାଗ ଭାଗ ହୋଇ ଅନେକ ଅଂଶୀଦାରରେ ବିଭକ୍ତ ଥିଲା। ସେମାନଙ୍କର ସଂଖ୍ୟା ସ୍ଥାନେ ସ୍ଥାନେ ୩୦ରୁ ୪୦ ଥିଲା। ରାଜ୍ୟ ଗୁଡ଼ିକ ମଧ୍ୟ ଛନ୍ଦାଛନ୍ଦି ହୋଇଥିଲେ। ନବନଗର ଗୋଣ୍ଡଲ ଓ ଜୁନାଗଡ଼ର ଯଥାକ୍ରମେ ନଅ ଅଠର ଓ ୨୪ଗୋଟି ପରସ୍ପରରୁ ବିଚ୍ଛିନ୍ନ ଅଞ୍ଚଳ ଥିଲା। ଫଳରେ ଆମଦାନୀ ଓ ରପ୍ତାନୀ ବାଣିଜ୍ୟ, ମାଲଚୋରା ଚାଲାଣ ଓ ଅପରାଧୀମାନଙ୍କୁ ଠାବ କରି ଦଣ୍ଡଦେବା ଅତୀବ କଷ୍ଟକର ଥିଲା। ଏହି ରାଜ୍ୟମାନଙ୍କ ଶାସନ ସମସ୍ୟା ବହୁଳ ଥିଲା।

ଇଂରେଜମାନେ ଶାସନଗତ ସୁବିଧା ପାଇ ରାଜକୋଟରେ ଜଣେ ରେସିଡ଼େଣ୍ଟ ଓ ସାବରକଣ୍ଠରେ ଜଣେ ପୋଲିଟିକାଲ ଏଜେଣ୍ଟ ରଖିଥିଲେ। ସେ ଅହମ୍ମଦାବାଦ ଠାରୁ ଜାଭେଡ଼ା ରେଲଷ୍ଟେସନ ଯାଇ ସେଠାରୁ ରାସ୍ତାରେ ୧୫ ମାଇଲ ଦୂର ସାଦରାରେ ୧୫ ଶତାବ୍ଦୀରେ ନିର୍ମିତ ଏକ ଦୁର୍ଗରେ ନିଜ ସଦର ମହକୁମା ରଖିଥିଲେ। ରାଜାମାନଙ୍କର ଉପାଧି ଠାକୁର ଥିଲା। ସେମାନେ ସମସ୍ତେ ସାର୍ବଭୌମ ଶକ୍ତିର ସୁରକ୍ଷା ପାଇବାକୁ ସନନ୍ଦ ପାଇଥିଲେ ଓ ସେମାନଙ୍କର ସମସ୍ତଙ୍କର ରାଜ୍ୟ ଶାସନ କ୍ଷମତା ଥିଲା। ପରେ ଆବଶ୍ୟକତା ଦୃଷ୍ଟିରୁ ସମସ୍ତେ ପଲିଟିକାଲ ଏଜେଣ୍ଟଙ୍କୁ ସେମାନଙ୍କର କ୍ଷମତା ଦେଇଥିଲେ ଓ ସେ ଏହି ସମଷ୍ଟିଗତ କ୍ଷମତା ପାଇ ଶାସନକୁ ଶୃଙ୍ଖଳିତ କରିଥିଲେ।

ବଡ଼ଲାଟ ଲର୍ଡ଼ କର୍ଜନ ରାଜାମାନଙ୍କର ସନ୍ତାନମାନଙ୍କୁ ସୁଶିକ୍ଷା ଦେଇ ଉତ୍ତମ ଶାସକ ପ୍ରସ୍ତୁତି ନିମିତ୍ତ ସମଗ୍ର ଭାରତବର୍ଷରେ ପାଞ୍ଚ ଗୋଟି ରାଜକୁମାର କଲେଜ ପ୍ରତିଷ୍ଠା କରିଥିଲେ। ତାହା ମଧ୍ୟରୁ ଗୋଟିଏ ରାଜକୋଟରେ ଥିଲା। ସେଠାରୁ କିଛି ସୁଯୋଗ୍ୟ ଛାତ୍ର ବାହାରିଥିଲେ। ସେମାନଙ୍କ ମଧ୍ୟରେ ଭାବନଗରର ମହାରାଜା ଜଣେ। ସେ ଦେଶ ସ୍ୱାଧିନ

ହେବା ପରେ ମାନ୍ଦ୍ରାଜ ପ୍ରଦେଶର ରାଜ୍ୟପାଳ ଦାୟିତ୍ୱ ଦକ୍ଷତାର ସହିତ ନିର୍ବାହ କରିଥିଲେ । ଗୋଣ୍ଡାଲର ମହାରାଜା ଆଉ ଜଣେ ସେ ବିଲାତର ଏଡ଼ିନବରାରୁ ଚିକିତ୍ସା ବିଜ୍ଞାନରେ ସର୍ବୋଚ୍ଚ ଉପାଧି ଲାଭ କରିଥିଲେ । ନିଜ ରାଜ୍ୟରେ ସେ ଉଚ୍ଚଧରଣର ଶିକ୍ଷା, ଚିକିତ୍ସା, ଗମନାଗମନ, ରେଲୱେ ବ୍ୟବସ୍ଥା କରିଥିଲେ । ତାଙ୍କର ତିନିପୁଅ ମଧ୍ୟରୁ ବଡ଼ ଡାକ୍ତର ଥିଲେ । ସେ ରାଜ୍ୟର ଚିକିତ୍ସାଳୟ ପରିଚାଳନା ଦାୟିତ୍ୱରେ ଥିଲେ । ଅନ୍ୟ ପୁଅ ଇଞ୍ଜିନିୟର ଥାଇ ରାସ୍ତା ଓ ରେଲବାଇ ଦାୟିତ୍ୱରେ ଥିଲେ । ସେମାନେ ମାସିକ ପାଞ୍ଚଶହ, ପାଉଣ୍ଡ ଦରମା ପାଉଥିଲେ ଓ ସ୍ୱୟଂ ମହାରାଜା ସେମାନଙ୍କର କାର୍ଯ୍ୟ ପୁଙ୍ଖାନୁପୁଙ୍ଖ ଭାବରେ ନିରୀକ୍ଷଣ କରୁଥିଲେ । ରାଜ୍ୟର ଏସବୁ ଉନ୍ନତ ସେବା ସତ୍ତ୍ୱେ ଭୂ-ରାଜସ୍ୱ ବ୍ୟତୀତ ଅନ୍ୟ କୌଣସି କର ପ୍ରଜାମାନଙ୍କ ଠାରୁ ଅସୁଲ ହେଉ ନଥିଲା । ଏହି ଠାକୁରମାନେ ନିଜ ନିଜ ମଧ୍ୟରେ କଳହରେ ଲାଗୁଥିବାରୁ ସେମାନଙ୍କ ମଧ୍ୟରେ ଶୃଙ୍ଖଳାରକ୍ଷା ରେସିଡ଼େଣ୍ଟଙ୍କର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥିଲା ।

ପଶ୍ଚିମ ଭାରତର ଏହି ଦୁଇଶହରୁ ଅଧିକ ରାଜ୍ୟମଧ୍ୟରୁ ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା ଜୁନାଗଡ଼ । ଏହାର ଆୟତନ ୩୩୩୭ ବର୍ଗମାଇଲ ଓ ଲୋକସଂଖ୍ୟା ୫.୭୦ଲକ୍ଷ । ରାଜ୍ୟର ଶତକଡ଼ା ୮୦ଭାଗ ପ୍ରଜା ହିନ୍ଦୁ ଥିଲେ ମଧ୍ୟ ନରପତି ଜଣେ ମୁସଲମାନ ଥିଲେ । ନବାବ ମହବତଖାଁ ଦେଶ ସ୍ୱାଧିନ ହେବା ପରେ ନିଜର ସ୍ୱାଧିନତା ହାଇଦରାବାଦ ନିଜାମଙ୍କ ପରି ଜାହିର କରିବାକୁ ଚାହୁଁ ନଥିଲେ ମଧ୍ୟ ପାକିସ୍ତାନର ପ୍ରତିଷ୍ଠାତା ମହମ୍ମଦ ଅଲ୍ଲି ଜିନ୍ନାଙ୍କ ପ୍ରଭାବରେ ୧୪ ଅଗଷ୍ଟ ୧୯୪୭ ପର୍ଯ୍ୟନ୍ତ ଭାରତ ସହିତ ମିଶ୍ରଣ ଚୁକ୍ତି ସ୍ୱାକ୍ଷର କରି ନଥିଲେ ।

ଜୁନାଗଡ଼ ନବାବ ରାଜ୍ୟ ଶାସନରେ ଆଗ୍ରହୀ ନଥିଲେ । ତାଙ୍କର ପ୍ରଧାନ ସଉକ ଥିଲା କୁକୁର ପାଳିବା । ଏକ ବିକୃତ ରୁଚିର ବଶବର୍ତ୍ତୀ ହୋଇ ସେ କୁକୁରମାନଙ୍କ ପାଇ ରାଜ୍ୟ ବଜେଟରେ ବ୍ୟବସ୍ଥା ରଖୁଥିଲେ । ଏହିମାନଙ୍କ ପାଇଁ ରାଜ୍ୟ ବଜେଟରେ ମାସିକ ୧୬୦୦୦ଟଙ୍କା ବ୍ୟୟ ବ୍ୟବସ୍ଥା ଥିଲା । ପ୍ରାୟ ୮୦୦ କୁକୁର ସେ ପାଳିଥିଲେ । ପ୍ରତ୍ୟେକଙ୍କ ପାଇଁ ଅଲଗା ଚାକର ବ୍ୟବସ୍ଥା ଥିଲା । ନିଜର ରାଜ୍ୟର ପ୍ରଜାମାନଙ୍କ ତୁଳନାରେ ସେମାନେ ବେଶି ସ୍ୱାଚ୍ଛ୍ୟନ୍ଦରେ ଥିଲେ । ଥରେ ତାଙ୍କର ମନରେ ଏକ ଖିଆଲ ଆସିଲା, ଏକ ପାଳିତା କୁକୁରୀ 'ରୋସନାରା'ର ବିଭାଘର କରିବେ । ଦେୱାନଙ୍କୁ କୁହାଗଲା ଏଥିପାଇଁ ସବୁ ପ୍ରକାର ବ୍ୟବସ୍ଥା କରିବାକୁ । ବିବାହ ଦିନଟି ଓ ପରଦିନ ରାଜ୍ୟରେ ଛୁଟି ଘୋଷଣା କରାଗଲା । ଅନ୍ୟାନ୍ୟ ରାଜା ଓ ନବାବମାନଙ୍କୁ ଏହି ବିବାହ ଉତ୍ସବକୁ ମଧ୍ୟ ନିମନ୍ତ୍ରଣ

କରାଗଲା । ଅନେକ ଆସିଲେ । ମହାମାନ୍ୟ ବଡ଼ଲାଟ ଦମ୍ପତିଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସେମାନେ ଏହାକୁ ଏକ ବିକୃତ ମସ୍ତିଷ୍କର ଖିଆଲ ରୂପେ ଗ୍ରହଣ କରି ନିମନ୍ତ୍ରଣ ପ୍ରତ୍ୟାଖାନ କଲେ । ପାଖ ରାଜ୍ୟ ମଙ୍ଗୋଲର ନବାବଙ୍କର ଗୋଟିଏ ଅଣ୍ଡିରା କୁକୁର 'ବବି' ଥିଲା । ଏହାକୁ ବର ଭାବରେ ବଛାଗଲା । ନିର୍ଦ୍ଦିଷ୍ଟ ବିଭାଘର ଦିନ ବର ସାଙ୍ଗରେ ୨୫୦ଟି ଅଣ୍ଡିରା କୁକୁର ବରାଯାତ୍ରୀ ହୋଇ ଟ୍ରେନରେ ଆସିଲେ । ରୋସନାରା ଓ ବବି ଦୁହିଁଙ୍କୁ ସୁବର୍ଣ୍ଣ ଅଳଙ୍କାର ଓ ବସ୍ତ୍ରରେ ସଜାଇ ଦିଆଗଲା । ଷ୍ଟେସନରୁ ବରଯାତ୍ରୀ ମାନଙ୍କୁ ନବାବଙ୍କର କର୍ମଚାରୀମାନେ ଅଭ୍ୟର୍ଥନା କରି ଆଣିଲେ । ପୁରୋହିତଙ୍କ ଦ୍ୱାରା ବିବାହ ସମ୍ପନ୍ନ ହେଲା । ଏହି ଉପଲକ୍ଷେ ୩ଦିନ ମଧ୍ୟରେ ପ୍ରାୟ ୫୦ ହଜାର ଦର୍ଶକ ଓ ନାଗରିକଙ୍କୁ ଭୂରି ଭୋଜନରେ ଆପ୍ୟାୟିତ କରାଗଲା । ଖବରକାଗଜ ମାନଙ୍କରେ ଏସବୁର ଫଟୋ ବିବରଣୀ ପ୍ରକାଶ ପାଇଲା । ଭାରତ ବାହାରର କେତେ ଖବର କାଗଜ ପ୍ରତିନିଧିଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ବିଭାଘର ପରେ କ୍ୱାଇଁ ବବି ଅନ୍ୟ କୁକୁରମାନଙ୍କ ସହିତ ଜୁନାଗଡ଼ ରାଜନଗରରେ ରହିବାକୁ ଲାଗିଲା ।

ସର୍ଦ୍ଦାର ପଟେଲ ଦେଶୀୟ ରାଜାମାନଙ୍କୁ ଭୌଗଳିକ, ଅର୍ଥନୈତିକ ସମ୍ପର୍କ ସହିତ ପ୍ରଜାମାନଙ୍କର ମତାମତ ପ୍ରତି ଯଥେଷ୍ଟ ସମ୍ମାନ ଦେବାକୁ ଆଗରୁ ତାଗିଦ କରିଦେଇଥିଲେ । ଜୁନାଗଡ଼ର ଦେୱାନ ଥିଲେ ଅବଦୁଲ କାଦିର ମହମ୍ମଦ ହୁସେନ । ସେ ପାକିସ୍ତାନ ସପକ୍ଷରେ ନ ଥିଲେ । ତାଙ୍କ ଅମଳରେ ଗୁଜୁରାଟର ଖବର କାଗଜରେ ଯେତେବେଳେ ଖବର ବାହାରିଲା ଯେ ନବାବ ପାକିସ୍ତାନରେ ଯୋଗଦେବାକୁ ବିଚାର କରୁଛନ୍ତି, ବେଲୁଚି ଓ ହୁରମାନଙ୍କୁ ରାଜ୍ୟ ସୈନ୍ୟ ବାହିନୀରେ ନିଯୁକ୍ତ ଦିଆଯାଇଛି ଓ ନବାବ ରାଜ୍ୟର ବାହଉଦ୍ଦିନ କଲେଜକୁ ପାକିସ୍ତାନର ସିନ୍ଧୁ ବିଶ୍ୱବିଦ୍ୟାଳୟ ସହିତ ସହବନ୍ଧନ ନିମିତ୍ତ ଉଦ୍ୟମ କରୁଛନ୍ତି ସେତେବେଳେ ଜୁନାଗଡ଼ ସରକାର ଏକ ଇସ୍ତାହାରରେ ଏସବୁ ଖଣ୍ଡନ କରିଥିଲେ । ଦିଲ୍ଲୀରେ ଏହି କାଥିଆବାଦ ରାଜାମାନଙ୍କର ସରଦାର ଗୋଟିଏ ସଭା ଡାକିଥିଲେ । ଜୁନାଗଡ଼ ଦେୱାନଙ୍କର ଭାଇ ନବି ବକ୍ସ ଏଥିରେ ନବାବଙ୍କ ତରଫରୁ ଭାଗ ନେଇ ସର୍ଦ୍ଦାର ପଟେଲ ଓ ନଓନଗର ଜାମସାହେବଙ୍କୁ ଜଣାଇଲେ ଯେ ଜୁନାଗଡ଼ ଭାରତ ମିଶ୍ରଣ ସପକ୍ଷରେ ସ୍ୱୀକୃତି ଦେବ । ଦେୱାନ ଅବଦୁଲ କାଦିରଙ୍କ ପରେ ସିନ୍ଧୁ ପ୍ରଦେଶର ଜଣେ ମୁସଲିମ ଲିଗ ନେତା ସାର ସାହାନୱାଜ ଭୁଟୋକୁ ଜୁନାଗଡ଼ ମନ୍ତ୍ରୀମଣ୍ଡଳରେ ଯୋଗଦେବାକୁ ଅନୁରୋଧ କରାଗଲା ଓ ୧୯୪୭ ମେ ମାସରେ ନିଜର ଚିକିତ୍ସା ନିମିତ୍ତ ଦେୱାନ ବିଦେଶ ଯିବାରୁ ଭୁଟୋ ନୂତନ ଦେୱାନ ଭାବରେ ଯୋଗଦେଲେ । ତାଙ୍କ ପ୍ରରୋଚନାରେ ୧୯୪୭

ଅଗଷ୍ଟ ୧୫ ଦିନ ଜୁନାଗଡ଼ ନବାବ ତାଙ୍କ ରାଜ୍ୟ ପାକିସ୍ଥାନ ସହିତ ମିଶ୍ରଣ ଚୁକ୍ତି କରିଥିବା ଘୋଷଣା କଲେ। ପାକିସ୍ଥାନ ସହିତ ଜୁନାଗଡ଼ର କୌଣସି ସୀମାଗତ ସମ୍ପର୍କ ନଥିଲା। ସମୁଦ୍ର ଯୋଗେ ମଧ୍ୟ ଏହା କରାଚୀଠାରୁ ୩୦୦ ମାଇଲ ଦୂରରେ ଥିଲା। କୁପରାମର୍ଶରେ ପରିଚାଳିତ ନବାବଙ୍କର ଉଚ୍ଚ ଆକାଂକ୍ଷା ରାଜ୍ୟବାସୀମାନଙ୍କର ଇଚ୍ଛା ବିରୋଧରେ ଥିଲା ତାଙ୍କ ରାଜ୍ୟକୁ ଲାଗି ତିନିଗୋଟି ଛୋଟିଆ ରାଜ୍ୟ ଥିଲା। ମଙ୍ଗ୍ରୋଲ, ମନଓ୍ୱାଡ଼ର ଓ ସର୍ବ କ୍ଷୁଦ୍ର ବାର୍ଗରଆଓ୍ୱାଡ଼। ନବାବ ଏହି ରାଜ୍ୟମାନଙ୍କ ଉପରେ ନିଜର କ୍ଷମତା ବିସ୍ତାର କରି ସେମାନଙ୍କୁ କରାଗ୍ରତ କଲେ। ଭାରତ, ପାକିସ୍ଥାନ ସହିତ ରାଜ୍ୟର କୌଣସି ଭୌଗଳିକ ସମ୍ପର୍କ ନଥିବାରୁ ଓ ଭାରତ ପାକିସ୍ଥାନ ମଧ୍ୟରେ ନୀତିଗତ ଭାବେ ଏହା ଗ୍ରହଣ କରାଯାଇଥିବାରୁ ଭାରତ ଏହାର ବିରୋଧ ପାକିସ୍ଥାନକୁ ଜଣାଇଲା । ମାତ୍ର ପାକିସ୍ଥାନ ପ୍ରସ୍ତାବିତ ମିଶ୍ରଣଚୁକ୍ତି ଗ୍ରହଣ କରିଥିବା ଭାରତକୁ ଜଣାଇଦେଲା। କେବଳ କାଶ୍ମୀର ଓ ହାଇଦରାବାଦ ବ୍ୟତୀତ ଅନ୍ୟ ସମସ୍ତ ରାଜ୍ୟ ଭାରତ ସହିତ ମିଶ୍ରଣ ଚୁକ୍ତି କରି ସାରିଥିବାବେଳେ ଜୁନାଗଡ଼ ନବାବଙ୍କର ଆଚରଣ ଭାରତ ପ୍ରତି ଏକ ବିରାଟ ଆହ୍ୱାନ ବୋଲି ଜଣାପଡ଼ିଲା। ଜୁନାଗଡ଼ ରାଜ୍ୟ କାଥିଆବାଡ଼ର ଅନ୍ୟରାଜ୍ୟ ମାନଙ୍କ ସହିତ ଛନ୍ଦାଛନ୍ଦି ହୋଇଥାଏ। ହିନ୍ଦୁ ତୀର୍ଥ ଜ୍ୟୋତିଲିଙ୍ଗ ମଧ୍ୟରୁ ସୋମନାଥ ଓ ଜୈନମାନଙ୍କର ଅନେକ ତୀର୍ଥ ଏହି ସୀମା ମଧ୍ୟରେ ରହିଥାନ୍ତି । ଏହା ମଧ୍ୟ ଏକ ଉଦ୍‌ବେଗର କାରଣ ହେଲା। ସୀମାନ୍ତ ଜୁନାଗଡ଼ ଜଳପଥରେ ପାକିସ୍ଥାନ ସହିତ ସମ୍ପର୍କ ପ୍ରତିଷ୍ଠା କଲେ ଭାରତର ନିରାପଦତା ବିପନ୍ନ ହେବାର ସମ୍ଭାବନା ଦେଖାଗଲା। ୧୯୪୭ ସେପ୍ଟେମ୍ବର ୧୭ ତାରିଖରେ ଭାରତ ଜୁନାଗଡ଼ ସୀମାରେ ନିଜ ସେନା ସମାବେଶ କଲା। ପରଦିନ ଭାରତର ରାଜ୍ୟ ମନ୍ତ୍ରଣାଳୟ ସଚିବ ଭି.ପି.ମେନନ ଜୁନାଗଡ଼ ନବାବଙ୍କୁ ଦେଖା କରିବାକୁ ଗଲେ। ଛଳନା କରି ନବାବ ସାକ୍ଷାତ କଲେନାହିଁ। ଦେଓ୍ୱାନ ଭୁଟୋ ତାଙ୍କୁ ଦେଖାକଲେ। କଥାବାର୍ତ୍ତା ପାକିସ୍ଥାନ ଜରିଆରେ କରିବାକୁ ସେ ଜଣାଇଲେ । ବାର୍ଗରିଆଓ୍ୱାଡ଼ ଓ ମାନାଉଦାରର ଖାଁ ନିଜ ରାଜ୍ୟ ହିନ୍ଦୁ ପ୍ରଜାମାନଙ୍କ ମତ ବିରୁଦ୍ଧରେ ପାକିସ୍ଥାନ ସହିତ ମିଶ୍ରଣ ଚୁକ୍ତି କରିଥିଲେ। ସେ ଧରାଛୁଆଁ ଦେଲେନାହିଁ। ମାତ୍ର ଆଉ ଜଣେ ଶାସକ ମଙ୍ଗ୍ରୋଲର ସେକ ଜୁନାଗଡ଼ର ପ୍ରଭୁତ୍ୱର ବିରୋଧ କରୁଥିଲେ ଓ ସେ ଭାରତ ସହିତ ମିଶ୍ରଣ ନିମିତ୍ତ ସମ୍ମତି ଦେଲେ। ମେନନ ନିରାଶ ହୋଇ ଫେରିଲା ପରେ କାଥିଆବାଡ଼ର ଲୋକ ପ୍ରତିନିଧିମାନେ ବମ୍ବେରେ ଏକାଠି ହେଲେ। ସେମାନେ ନବାବଙ୍କର ଜନ ବିରୋଧି କାର୍ଯ୍ୟ ବିରୁଦ୍ଧରେ କ୍ରିୟାନୁଷ୍ଠାନ ନିମିତ୍ତ ନିଷ୍ପତ୍ତି ନେଲେ। କାଥିଆବାଡ଼ ଜନ ସାମ୍ମୁଖ୍ୟ ଗଢ଼ାଗଲା ଓ ଏହା ପକ୍ଷରୁ ପ୍ରବୀଣ ସ୍ୱାଧିନତା

ସଂଗ୍ରାମୀ ଓ ଜନ ନାୟକ ସାମଲଦାସ ଗାନ୍ଧି ଜୁନାଗଡ଼କୁ ପଦଯାତ୍ରା କରି ନବାବଙ୍କର ଅତ୍ୟାଚାରରୁ ଜନସାଧାରଣଙ୍କୁ ମୁକ୍ତ କରିବାକୁ ଉଦ୍ୟମ କରିବା ପାଇଁ ନିଷ୍ପତ୍ତି ନିଆଗଲା।

ଜୁନାଗଡ଼ ମଙ୍ଗ୍ରୋଲ ଓ ବାବରିଆୱାଡ଼ ରାଜ୍ୟ ଦୁଇଟି ଭାରତ ମିଶ୍ରଣ ସହିତ ସମ୍ମତି ଦେଇଥିବାରୁ ସେମାନଙ୍କ ସୀମାନ୍ତ ଦଖଲ କରି ନେବାକୁ ସୈନ୍ୟ ପଠାଇଲା ମାନାଭାଡ଼ୋରର ଖାଁ ମଧ୍ୟ ନିଜ ହିନ୍ଦୁ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ। ଫଳରେ ଅକ୍ଟୋବର ମାସ ୨୨ ତାରିଖରେ ଜଣେ ପୁଲିସ ଡ଼ିଆଇଜି ଅଳ୍ପ ସୈନିକ ଧରି ଏଠାରେ ପହଞ୍ଚିଲେ ଓ ଶାସନ ସମ୍ଭାଳିଲେ। ଏହାପରେ ଭାରତୀୟ ସୈନ୍ୟମାନେ ବାବରିଆୱାଡ଼ ଓ ମଙ୍ଗ୍ରୋଲର ଶାସକ ଭାର ବିନା ବାଧାରେ ଗ୍ରହଣ କଲେ।

ଶାମଳ ଦାସ ଗାନ୍ଧିଙ୍କ ଅସ୍ଥାୟୀ ସରକାର ଗଠନ ଦ୍ୱାରା ପ୍ରଭାବିତ ହୋଇ ଜୁନାଗଡ଼ର ଅଧିବାସୀମାନେ ପ୍ରଚଳିତ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ। ଜିନିଷ ପତ୍ରର ଅଭାବ, ଆବଶ୍ୟକୀୟ ପଦାର୍ଥର ଦରବୃଦ୍ଧି ଓ ଆଇନ ଶୃଙ୍ଖଳାର ବିପର୍ଯ୍ୟୟ ସେମାନଙ୍କୁ ଆଗରୁ ଶାସନ ବିରୁଦ୍ଧରେ ଉତ୍ତେଜିତ କରି ରଖିଥିଲା। ନବାବଙ୍କର ରାଜ୍ୟରକ୍ଷା ନିମିତ୍ତ ସମସ୍ତ ଯୋଜନା ଅକୃତକାର୍ଯ୍ୟ ହେଲା। ସେ ପାକିସ୍ଥାନଠାରୁ ଆଶା କରୁଥିବା ସାହାଯ୍ୟ ତାଙ୍କୁ କୌଣସି ପ୍ରକାର ମିଳିଲା ନାହିଁ। ନିଜର ରାଜ୍ୟରକ୍ଷା ନିମିତ୍ତ ଅସମର୍ଥ ହୋଇ ସେ ପାକିସ୍ଥାନ ପଳାଇବାକୁ ବସିଲେ । ଅକ୍ଟୋବର ୨୫ ତାରିଖରେ ସେ ନିଜର ଚାରିଜଣ ବେଗମଙ୍କ ସହିତ ସମସ୍ତ ପରିବାର, ନିଜର ପାଳିତ କୁକୁର ରାଜ୍ୟ ଖଜଣା ଖାନାରେ ଥିବା ବିତ୍ତ ଓ ପ୍ରାୟ କୋଟିଏ ଟଙ୍କାର (Government Securities)ସରକାରୀ ଋଣ ପ୍ରମାଣ ପତ୍ର ଆଦି ନେଇ ପାକିସ୍ଥାନକୁ ଘରୋଇ ବିମାନରେ ପଳାଇଗଲେ। ବିମାନ ଯାତ୍ରା ଆରମ୍ଭରେ ଜଣାଗଲା ତାଙ୍କରର ଜଣେ ବେଗମ ନିଜର କେତୋଟି ସନ୍ତାନଙ୍କୁ ନେବାକୁ ଭୁଲି ଯାଇଛନ୍ତି । ନବାବ ସେମାନଙ୍କୁ ଆଣିବାକୁ ତାଙ୍କୁ ଓହ୍ଲାଇ ଦିଆଗଲା ଓ ଏହି ଅବସରରେ ସେ ନିଜ ପାଳିତ ଆଉ କେତେକ କୁକୁର ଧରି ବିନା ଉକ୍ତ ବେଗମରେ ଉଡ଼ାଜାହାଜରେ ପାକିସ୍ଥାନ ଯାତ୍ରା କଲେ। ଏହାର ଦୁଇଦିନ ପରେ ଦେୱାନ ଭୁଟୋ ପାକିସ୍ଥାନରେ ଜିନ୍ନାକୁ ଲେଖିଲେ ଯେ ରାଜ୍ୟର ମୁସଲମାନ ପ୍ରଜାମାନେ ମଧ୍ୟ ପାକିସ୍ଥାନ ସହ ମିଶ୍ରଣର ବିରୋଧ କରୁଛନ୍ତି ଓ ସେ ଯେଉଁ ୭ଟି କମ୍ପାନୀ ରାଜକୀୟ ପୁଲିସ ଜୁନାଗଡ଼ ପଠାଇବାକୁ ଚାହୁଁଛନ୍ତି ତାହା ବରୋଧୀ ମାନଙ୍କୁ ମୁକାବିଲା କରିବାକୁ ସକ୍ଷମ ହେବନାହିଁ। ଅଯଥା ରକ୍ତପାତ ବନ୍ଦ କରିବାକୁ ମୁସଲମାନ ପ୍ରଜାମାନେ ଦେୱାନଙ୍କୁ ଅନୁରୋଧ କଲେ। ଦେୱାନ ଭୁଟୋ ଦେଖିଲେ ଯେ ତାଙ୍କ ପକ୍ଷରେ ଆଉ ରାଜ୍ୟ ଶାସନ ସମ୍ଭବପର ନୁହେଁ।

ସେ ନଭେମ୍ବର ୭ ତାରିଖରେ ଭାରତ ସରକାରଙ୍କୁ ଜୁନାଗଡ଼ ଶାସନ ହସ୍ତାନ୍ତର ନିମିତ୍ତ ପ୍ରସ୍ତାବ ଦେଲେ ମାତ୍ର ଏହା ପରଦିନ ସେ ନିଜେ ପାକିସ୍ଥାନ ପଳାୟନ କଲେ। ଏହାପରଦିନ ନଭେମ୍ବର ୯ ତାରିଖରେ ରାଜକୋଟର ଆଞ୍ଚଳିକ କମିଶନର ରାଜ୍ୟର ଶାସନ ଭାର ଗ୍ରହଣ କଲେ। ପୂର୍ବରୁ ନିଷ୍ପତ୍ତି କରାଯାଇଥିବା ସର୍ତ୍ତ ଅନୁସାରେ ଜନମତ ଦ୍ୱାରା ମିଶ୍ରଣ କରାଯିବା କଥା। ସେହି ଅନୁସାରେ ଜୁନାଗଡ଼ରେ ଭୋଟ ନିଆଯାଇ ୨ଲକ୍ଷ ୧ହଜାର ୪୪୭ ଜଣଙ୍କ ମଧ୍ୟରୁ ମାତ୍ର ୯୧ ଜଣ ପାକିସ୍ଥାନ ସପକ୍ଷରେ ଭୋଟ ଦେଲେ ଓ ୧ଲକ୍ଷ ୯୦ ହଜାର ୮୭୦ ଜଣ ଭାରତ ସପକ୍ଷରେ ଭୋଟ ଦେଲେ। ଅନ୍ୟ ତିନିଗୋଟି କ୍ଷୁଦ୍ର ରାଜ୍ୟରେ ମଧ୍ୟ ଭୋଟ ନିଆଯାଇ ଏକାପ୍ରକାର ଫଳ ମିଳିଲା। ଶାମଳ ଦାସ ଗାନ୍ଧି ବିପୁଳ ଉତ୍ସାହ ସହିତ ଜୁନାଗଡ଼ରେ ଅଭ୍ୟର୍ଥିତ ହେଲେ। ରାଜ୍ୟରେ ଜଣେ ପ୍ରଶାସକ ନିଯୁକ୍ତ ହେଲେ। ତିନି ଜଣିଆ ଏକ ପରାମର୍ଶଦାତା କମିଟି ରହିଲେ, ଶାମଳଦାସ ଗାନ୍ଧି ତାହା ମଧ୍ୟରୁ ଜଣେ। ଏକ ସମ୍ବିଧାନ ସଭା ଏହା ପରେ ଭୋଟ ନିଆଯାଇ ଗଠନ କରାଗଲା। ସେମାନେ ଏକମତ ହୋଇ ସୌରାଷ୍ଟ୍ର ୟୁନିୟନ ସହିତ ଜୁନାଗଡ଼ ମିଶ୍ରଣର ନିଷ୍ପତ୍ତି ନେଲେ ଓ ଏହା ୧୯୪୯ ମସିହା ଫେବୃୟାରୀ ୨୦ ତାରିଖରେ କାର୍ଯ୍ୟକାରୀ ହେଲା।

ଏହା ପୂର୍ବରୁ ସର୍ଦ୍ଦାର ପଟେଲ ୧୯୪୮ ନଭେମ୍ବର ୧୩ ତାରିଖରେ ଜୁନାଗଡ଼ରେ ପହଞ୍ଚିଲେ। ରାଜ୍ୟବାସୀ ବିପୁଳ ଉତ୍ସାହ ସହିତ ତାଙ୍କୁ ସମ୍ବର୍ଦ୍ଧନା ଦେଲେ । ବହଉଦ୍ଦିନ କଲେଜ ହତାରେ ଏକ ବିରାଟ ସଭାରେ ସେ ଜନମତ ଲୋଡ଼ିବାରୁ ସେମାନେ ଏକ ସ୍ୱରରେ ଭାରତ ସହିତ ମିଶ୍ରଣ ଦାବି କଲେ। ଏହାପରେ ସର୍ଦ୍ଦାର ପଟେଲ ପ୍ରଭାସ ପତ୍ତନ ଓ ସୋମନାଥ ମନ୍ଦିର ପରିଦର୍ଶନ କଲେ। ଭଗ୍ନ ମନ୍ଦିରର ହତଶ୍ରୀ ତାଙ୍କୁ ବିଚଳିତ କଲା। ଏହାର ପୁର୍ନନିର୍ମାଣ କରି ହୃତ ଗୌରବ ଫେରାଇ ଆଣିବାକୁ ସେ ସୂଚନା ଦେଲେ। ସେହି ସ୍ଥାନରେ ଜାମ ସାହେବ ୧ଲକ୍ଷ ଟଙ୍କା ଓ ଶାମଳଦାସ ଗାନ୍ଧିଙ୍କ ସରକାର ୫୧ ହଜାର ଟଙ୍କା ଏହି ଉଦ୍ଦେଶ୍ୟରେ ଦାନର ଘୋଷଣା କଲେ । ପରବର୍ତ୍ତୀ ସମୟରେ ମନ୍ଦିର ପୁର୍ନନିମାଣ କରାଗଲା ଓ ଭାରତର ମହାମହିମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦ ଏହି ନୂତନ ନିର୍ମାଣ ଉନ୍ମୋଚନ କଲେ। ଅନୁତାପଗ୍ରସ୍ତ ନବାବ କରାଚୀରେ ଭାରତର ଉଚ୍ଚ ଆୟୁକ୍ତ ଶ୍ରୀ ପ୍ରକାଶଙ୍କୁ ଭାରତ ଫେରିଯିବାକୁ ପ୍ରସ୍ତାବ ଦେଲେ, ମାତ୍ର ଭାରତ ସରକାର ତାଙ୍କ ସହିତ କଥାବାର୍ତ୍ତା ନ କରିବାକୁ ଶ୍ରୀ ପ୍ରକାଶଙ୍କୁ ନିର୍ଦ୍ଦେଶ ଦେଲେ।





*ମହାରାଜା ସାର୍ ଭୂପିନ୍ଦର ସିଂହ*
*(୧୮୯୧-୧୯୩୮)*

# ପାତିଆଲାର ମହାରାଜା
## ଭୁପିନ୍ଦର ସିଂହ

୧୭ଗୋଟି ତୋପ ସଲାମି ପାଉଥିବା ରାଜ୍ୟ ମଧ୍ୟରୁ ପାତିଆଲା ଗୋଟିଏ । ଏହାର ଆୟତନ ୫୯୪୨ ବର୍ଗମାଇଲ, ଲୋକସଂଖ୍ୟା ୧ କୋଟି ୬୨ ଲକ୍ଷ ୫ ହଜାର ଓ ଏହାର ଆୟ ୧ କୋଟି ୫୦ ଲକ୍ଷ ଥିଲା । ନରେନ୍ଦ୍ର ମଣ୍ଡଳ ମଧ୍ୟରେ ମହାରାଜା ଭୂପେନ୍ଦ୍ର ସିଂହଙ୍କର ସମ୍ମାନ ଅତି ଉଚ୍ଚ ଥିଲା । ସେ ଦଶଥର ଏହାର ଅଧ୍ୟକ୍ଷ (ଚାନସେଲର) ହୋଇଥିଲେ । ପାତିଆଲାର ଏହି ମହାରାଜା ଯଥାର୍ଥରେ ଥିଲେ ମାନରେ ଦୁର୍ଯ୍ୟୋଧନ, ଦାନରେ କର୍ଣ୍ଣ, ଭୋଜନରେ ଭୀମ ଓ କର୍ମକୁଶଳତାରେ ଦଶ ଶିର ରାବଣ ।

ମହାରାଜା ଉଚ୍ଚତାରେ ୬ଫୁଟ ୨ଇଞ୍ଚ ଥିଲେ । ତାଙ୍କ ଚେହେରା କମନୀୟ ଥିଲା । ତାଙ୍କ ଆକର୍ଷଣୀୟ ବ୍ୟକ୍ତିତ୍ୱ ଅନ୍ୟମାନଙ୍କ ଠାରୁ ତୁଙ୍ଗ ଜଣାଯାଉଥିଲା । ଶରୀରର ଗଠନ କସରତ କରି ସୁଗଠିତ ଥିଲା । ପଞ୍ଜାବୀ ପୁରୁଷତ୍ୱର ସେ ଏକ ବିରାଟ ନମୁନା । ମୁଖରେ

ଶ୍ମଶ୍ରୁ। ତାଙ୍କୁ ସୁନ୍ଦର ଭାବରେ ସଜଡ଼ା ଯାଇଥାଏ। ଏହା ତାଙ୍କ ଗାମ୍ଭୀର୍ଯ୍ୟକୁ ବଢ଼ାଉଥାଏ। ଚକ୍ଷୁ ତେଜରେ ଝଟକୁ ଥାଏ ଓ ଏଥିରୁ ତାଙ୍କ ଚରିତ୍ରର ଦୃଢ଼ତା ପ୍ରତିପାଦିତ ହେଉଥାଏ। ପ୍ରତ୍ୟହ ସେ ବିଭିନ୍ନ ରତ୍ନ ଅଳଙ୍କାରମାନ ପରିଧାନ କରି ରାଜ ସଭାରେ ବସୁଥିଲେ। କାନରେ ଦୁଇଟି ସୁସଜ୍ଜିତ ଇଅରରିଂ କର୍ଣ୍ଣଭୂଷଣ ନ ଥାଇ କେହି ତାଙ୍କୁ କେବେ ଦେଖିନାହିଁ।

ତାଙ୍କ କଟଟିରେ ନାନା ରତ୍ନ ଯୁକ୍ତ ଅନେକ ହୀରାମଣ୍ଡିତ ଏକ କଙ୍କଣ ଶୋଭା ପାଉଥାଏ। ତାଙ୍କ କୋଟର ବୋତାମମାନ ନିଖୁଣ ରତ୍ନରେ ନିର୍ମିତ ହୋଇ ଶୋଭା ପାଉଥିଲେ। ସବୁ ଅଳଙ୍କାରରେ ସୁସଜ୍ଜିତ ହୋଇ ସେ ଦରବାରରେ ଆସନ ଗ୍ରହଣ କରୁଥିଲେ। ଦୁର୍ଯ୍ୟୋଧନଙ୍କର ବର୍ଣ୍ଣନା- ଯଥାର୍ଥରେ ସେ ଇନ୍ଦ୍ର - ମଧ ମହାରାଜା ଭୂପିନ୍ଦରଙ୍କ ପ୍ରତି ପ୍ରଯୁଜ୍ୟ ଥିଲା। ନରେନ୍ଦ୍ର ମଣ୍ଡଳ ବୈଠକରେ ତାଙ୍କୁ ଦେଖି ଜଣେ ଇଉରୋପ କୂଟନୀତିଜ୍ଞ କହିଲେ ତାଙ୍କ ପାଖରେ ଅନ୍ୟ ରାଜାମାନେ ଗାଁଉଲିଆ ପ୍ରତୀତ ହୁଅନ୍ତି।

ଭୋଜନରେ ସେ ଭୀମର ସମକକ୍ଷ ଥିଲେ। ତାଙ୍କ ଦୈନିକ ଭୋଜନ ସାମଗ୍ରୀ ଅନ୍ୟ ସବୁ ରାଜାଙ୍କ ତୁଳନାରେ ସଂଖ୍ୟାରେ ଓ ପରିମାଣରେ ବିପୁଳ ଥିଲା। ସାଧାରଣତଃ ସେ ୧୦ଜଣ ଲୋକଙ୍କର ଖାଦ୍ୟ ଗ୍ରହଣ କରୁଥିଲେ। ଥରେ ଥରେ ସେ ଅନ୍ୟ ଅତିଥିମାନଙ୍କ ସହିତ ସାଧାରଣ ଭୋଜନ ସାରି ଗୋଟିଏ ପୁରା ଖାସି (Lamb) ମାଂସ ସ୍ୱଚ୍ଛନ୍ଦରେ ଖାଇ ପାରୁଥିଲେ। ଥରେ ସେ ତାଙ୍କ ବୈଦେଶିକ ମନ୍ତ୍ରୀ ଓ ଅନ୍ୟମାନଙ୍କ ସହିତ ରେଲଯାତ୍ରା କରୁଥିବା ବେଳେ ଛଣା କଦଳୀ ଭଜା ପରି ୨୫ ଗୋଟି ତିର୍ତିର(Quail) ପକ୍ଷୀ ମାଂସ ଗୋଟିକ ପରେ ଗୋଟିଏ ଖାଇ ଶେଷ କରିଦେଲେ ।

ମୃତ୍ୟୁ ଦିନ ସେ ପଥିରେ ଥାଇ ଦଶଗୋଟି ଅଣ୍ଡାର ଆମଲେଟ ଖାଇଥିଲେ। ଯୌବନରେ ତାଙ୍କର ଶାରୀରିକ ବଳ ଦଶଜଣ ସାଧାରଣ ମଣିଷର ସମକକ୍ଷ ଥିଲା। ତାଙ୍କର ଅନ୍ତପୁରରେ ୩୦୦ରୁ ଊର୍ଦ୍ଧ୍ୱ ରମଣୀ ଥିଲେ। ଦଶଜଣ ପାଟରାଣୀଙ୍କ ବ୍ୟତୀତ ଅନେକ ରାଣୀ ରକ୍ଷିତା ଓ ବିଭିନ୍ନ ଦେଶରୁ ଆଗତ ସ୍ତ୍ରୀଲୋକ ତାଙ୍କ ଉପଭୋଗ ପାଇ ରହୁଥିଲେ। ମୃତ୍ୟୁ ସମୟରେ ତାଙ୍କର ୮୦ରୁ ଅଧିକ ସନ୍ତାନ ସନ୍ତତି ଥିଲେ।

୪୦ବର୍ଷ ହେବାବେଳକୁ ସେ ଅନେକବାର ନରେନ୍ଦ୍ର ମଣ୍ଡଳର ଅଧକ୍ଷ ହୋଇସାରିଥିଲେ। ମାତ୍ର ୨୬ ବର୍ଷ ବୟସରେ ସେ ବିଲାତର (Imperial Cabinet) ସାମ୍ରାଜ୍ୟ ମନ୍ତ୍ରୀମଣ୍ଡଳ ସଭ୍ୟ ଭାବେ ବଛା ଯାଇଥିଲେ। ୧୯୨୬ଠାରୁ ପ୍ରତିବର୍ଷ ସେ ସାମ୍ରାଜ୍ୟ ସମ୍ମିଳନୀ (Impenial Conference)ରେ ଭାରତର ପ୍ରତିନିଧି ଥିଲେ। ଲାଗ ଲାଗ ୫ଥର ସେ ନରେନ୍ଦ୍ର ମଣ୍ଡଳର ଅଧକ୍ଷ ହେବା ତାଙ୍କର ଅନ୍ୟ ରାଜାମାନଙ୍କୁ ମନେଇ

ନେବା ଓ ନେତୃତ୍ୱ ଗ୍ରହଣ କରିବାର ଦକ୍ଷତା ଦେଖାଇ ଦେଉଥିଲା। ତାଙ୍କର ଅନ୍ୟମାନଙ୍କୁ ସ୍ୱପକ୍ଷରେ ପ୍ରଭାବିତ କରିବା ମୂଳରେ ନିଜର ବିରାଟ ବ୍ୟକ୍ତିତ୍ୱ, ପ୍ରଶାସନ ସହିତ ନିବିଡ଼ ପରିଚୟ ଓ ଯେ କୌଣସି ବିଷୟ କଥୋପଥନ ଛଳରେ ବୁଝାଇଦେବାର କ୍ଷମତା ରହିଥିଲା।

ଦାନରେ କର୍ଣ୍ଣ ଥାଇ ତାଙ୍କ ଭଣ୍ଡାରର ଅର୍ଥ ଯାଚକମାନଙ୍କ ପାଇ ସର୍ବଦା ଉନ୍ମୁକ୍ତ ଥିଲା। ପଞ୍ଜାବରେ ଏପରି କୌଣସି ପ୍ରଖ୍ୟାତ ପରିବାର ନଥିଲା, ଯାହାକୁ ସେ କୌଣସି ସମୟରେ କିଛି ସହାୟତା ଦେଇ ନଥିଲେ। ବନାରସର ହିନ୍ଦୁ ବିଶ୍ୱବିଦ୍ୟାଳୟ, ଆଲିଗଡ଼ର ମୁସଲିମ ବିଶ୍ୱବିଦ୍ୟାଳୟ, ବୋଷ ଇନଷ୍ଟିଚିଉଟ ଖାଲସା କଲେଜ ଓ ଭାରତର ଏହିପରି ଅନେକ ପ୍ରତିଷ୍ଠିତ ଅନୁଷ୍ଠାନ ତାଙ୍କ ଉଦାର ଅର୍ଥ ସାହାଯ୍ୟରୁ ବାଦ ପଡ଼ିନଥିଲେ ଜୋଷ ମଲ୍ଲିହା ଓ୍ୱାଲି ଜଣେ ବିଖ୍ୟାତ ହିନ୍ଦୁସ୍ଥାନୀ କବି ଥିଲେ। ସାରତେଜ ବହାଦୁର ସାପ୍ରୁ ମହାରାଜାଙ୍କର ବିଦେଶମନ୍ତ୍ରୀ ପାନ୍ନିକରଙ୍କୁ ଲେଖି ଜଣାଇଲେ ସେ ହିନ୍ଦୁସ୍ଥାନର ଜଣେ ଅତି ଉଚ୍ଚକୋଟୀର କବି ଆର୍ଥିକ ଅଭାବରେ ଅଛନ୍ତି। ମହାରାଜାଙ୍କ ଠାରୁ ମାସିକ କିଛି ପେନ୍‌ସନ ବ୍ୟବସ୍ଥା କଲେ ସେ ବହୁତ ଉପକୃତ ହେବେ। ପାନିକର ତାଙ୍କୁ ମହାରାଜାଙ୍କ ପାଖକୁ ନେଲେ ଓ ମାସିକ ୭୫ ଟଙ୍କା ପେନ୍‌ସନ ଦେବାକୁ ସୁପାରିଶ କଲେ। ମହାରାଜା ଏହା ଦେଖି କହିଲେ ଆପଣ ଦକ୍ଷିଣର ଲୋକ ଥାଇ ସେ କେତେବଡ଼ ପ୍ରତିଭାଶାଳୀ କବି ତାହା ଜାଣିପାରିନାହାନ୍ତି । ଏହି କ୍ଷୁଦ୍ର ପେନ୍‌ସନ ତାଙ୍କୁ ଅସମ୍ମାନ ହେବ। ସେ ତାଙ୍କୁ ମାସକୁ ଅଢ଼େଇଶହ ଟଙ୍କା ପେନ୍‌ସନ ମଞ୍ଜୁର କଲେ। ଅପ୍ରତ୍ୟାଶିତ ଭାବରେ ଏହା ଦେଖି କବି ଜୋଷ ଆନନ୍ଦରେ ଅଶ୍ରୁ ବର୍ଷଣ କରି ନିଜ କୃତଜ୍ଞତା ମହାରାଜାଙ୍କୁ ଜଣାଇଲେ।

ଭୂପିନ୍ଦର ସିଂହ ଶିଖ୍ ଥିଲେ, ମାତ୍ର ହିନ୍ଦୁ ଆଗମ ଶାସ୍ତ୍ର ମାନଙ୍କରେ ତାଙ୍କର ଅଗାଧ ବିଶ୍ୱାସ ଥିଲା। ସେ କାଳୀ ପୂଜା କରୁଥିଲେ। ଏ ପ୍ରକାର ହିନ୍ଦୁ ଆଗମ ଶାସ୍ତ୍ର ପ୍ରତି ତାଙ୍କର ବିଶ୍ୱାସ ତଥା ଆଗ୍ରହ ଯୋଗୁ ପକ୍ଷପାତ ଶିଖ ସମାଜ ତାଙ୍କୁ ବିରୋଧ କରୁଥିଲେ। ଆକାଲିମାନେ ମିଥ୍ୟା ପ୍ରଚାର କରି ତାଙ୍କୁ ବଦନାମ କରିଥିଲେ।

୧୯୩୩ ମସିହାରେ ମହାରାଜା ନରେନ୍ଦ୍ର ମଣ୍ଡଳର ଅଧ୍ୟକ୍ଷ ହେବା ପରେ ଏହାର ସମ୍ପାଦକ ପାନ୍ନିକର ପାତିଆଲା ଗଲେ। ତାଙ୍କୁ ମହାରାଜାଙ୍କ ବ୍ୟକ୍ତିଗତ ଅତିଥି ଭାବରେ ରାଜ୍ୟର ମୋତି ମହଲରେ ରଖାଗଲା। ରହିବାର ଦ୍ୱିତୀୟ ଦିନ ସେ ପ୍ରାସାଦର ବାରଣ୍ଡାରେ ମହାରାଜାଙ୍କ ସହିତ କଥା ହେଉଥିବାବେଳେ ଗୋଟିଏ ଟେଲିଗ୍ରାମ ଆସି ପହଞ୍ଚିଲା। ପଢ଼ି ସାରି ସେ ଏହାକୁ ପାନ୍ନିକରଙ୍କୁ ଦେଲେ। ଜାମସାହେବ ରଣଜିତ୍‌ସିଂହଙ୍କର ମୃତ୍ୟୁ ସମ୍ବାଦ ନୂତନ ଜାମସାହେବ ଦିଗବିଜୟ ସିଂହ ତାଙ୍କୁ ଟେଲିଗ୍ରାମରେ ଜଣାଇଥାଆନ୍ତି। ମୃତ

ଜାମସାହେବ ଏକ ସମୟରେ ରାଜ୍ୟରୁ ବିତାଡ଼ିତ ହୋଇ ପାତିଆଲାରେ ରହୁଥିଲେ ଓ ପୂର୍ବତନ ପାତିଆଲା ମହାରାଜାଙ୍କର ଅଙ୍ଗରକ୍ଷୀ ଥିଲେ । ପାତିଆଲା ମହାରାଜାଙ୍କ ସମର୍ଥନରେ ସେ ନିଜର ଗାଦି ପାଇଥିଲେ । ଭୂପିନ୍ଦର ସିଂହଙ୍କର ପିତା ରାଜେନ୍ଦ୍ର ସିଂହ ମହାରାଜା ଥିଲେ । ତାଙ୍କୁ ଭାଇପରି ଜ୍ଞାନ କରୁଥିଲେ । ଜାମସାହେବଙ୍କର ମୃତ୍ୟୁ ମହାରାଜା ଭୂପିନ୍ଦର ସିଂଙ୍କର ଏକ ବ୍ୟକ୍ତିଗତ ଶୋକ ଥିଲା । କିଛି ସମୟ ନୀରବ ରହି ସେ ନିଜ ବ୍ୟକ୍ତିଗତ ସଚିବ ରାଧାରମଣ ଦାସଙ୍କୁ ତାଙ୍କର ଗୁପ୍ତ ପଞ୍ଜିକା ତାଙ୍କ ଶୟନ କକ୍ଷରୁ ଆଣିବାକୁ କହିଲେ । ଲାହୋରିରାମ ନାମକ ଜଣେ ଜ୍ୟୋତିଷ ପ୍ରତିବର୍ଷ ଅପ୍ରେଲ ରୁ ଅପ୍ରେଲ ବର୍ଷଯାକର ବିଶେଷ ଘଟଣା ଗଣନା କରି ତାଙ୍କୁ ଲେଖି କରି ଦେଇଥାଆନ୍ତି ଓ ମହାରାଜା ନିଜେ କେବଳ ଏହାକୁ ଦେଖୁଥିଲେ । ଗଣନା ବହି ଆସିବାରୁ ଏହାର ଏକ ପୃଷ୍ଠା ସେ ପାନ୍ନିକରଙ୍କୁ ଦେଖାଇଲେ । ସେ ମାସରେ ଭବିଷ୍ୟତବାଣୀ ଥିଲା । ଦକ୍ଷିଣ ଭାରତର ଦୁଇଜଣ ରାଜା ଓ ଜାମନଗରର ମହାରାଜାଙ୍କର ମୃତ୍ୟୁ । କୋଚିନର ମହାରାଜା ସେହି ମାସରେ ପ୍ରାଣତ୍ୟାଗ କଲେ । ବର୍ଷ ଶେଷ ହୋଇ ଆସୁଥିବାରୁ ଗଣନା ଶେଷ ହୋଇଯାଉଛି । ତେଣୁ ଏହା ଦେଖିବାକୁ ପାନ୍ନିକର ମହାରାଜାଙ୍କର ଅନୁମତି ମାଗିଲେ । ଆଗକୁ ଭବିଷ୍ୟତ ବାଣୀ ଥିଲା ଆଫଗାନିସ୍ଥାନର ବାଦଶାହ ନାଦିର ସାହ ଖାଁ ହିଂସାତ୍ମକ ମୃତ୍ୟୁ ବରଣ କରିବେ ଓ ତାଙ୍କ ପୁତ୍ର ନିର୍ବିବାଦରେ ରାଜ ସିଂହାସନ ଆରୋହଣ କରିବେ । ଏହା ମହାରାଜାଙ୍କୁ ପାନ୍ନିକର ଦେଖାଇଲାରୁ ସେ ମୁଁ ଜାଣିଛି ବୋଲି କହିଲେ । ସପ୍ତାହକ ମଧ୍ୟରେ ସେହି ମାସରେ ଆତତାୟୀର ଛୁରା ମାଡ଼ରେ ନାଦିର ଖାଁ ମୃତ ହେଲେ ।

ମହରାଜା ଭୂପିନ୍ଦର ସିଂହଙ୍କର ହିମାଳୟରେ ଚେଇଲ ନାମକ ସ୍ଥାନରେ ନିଜର ଗ୍ରୀଷ୍ମନିବାସ ଥିଲା । ଏହି ସ୍ଥାନର ଉଚ୍ଚତା ୭୦୦୦ଫୁଟ ଓ ଏହା ଶିମଳାଠାରୁ ମଧ୍ୟ ଉଚ୍ଚତର ଥିଲା ବୋଲି ମହାରାଜା ଗର୍ବ କରୁଥିଲେ । ଏହି ସ୍ଥାନରେ ମହାରାଜାଙ୍କର ପ୍ରାସାଦ 'ଇଗଲନେଷ୍ଟ' ପାଇନ ଓ ଦେବଦାରୁ ବୃକ୍ଷ ବେଷ୍ଟିତ ହୋଇଥିଲା । ଏହି କ୍ଷୁଦ୍ର ସହରରେ ମହାରାଜାଙ୍କ ପ୍ରାସାଦ ବ୍ୟତୀତ ତାଙ୍କ ରାଣୀମାନଙ୍କର ଗୁଡ଼ିଏ ପ୍ରାସାଦ, ପରିଚାରିକା ଓ କର୍ମଚାରୀମାନେ ବାସ କରିବାପାଇଁ ଆଉ କେତେଗୋଟି କ୍ଷୁଦ୍ର ପ୍ରାସାଦ, ଟେନିସ ଓ କ୍ରିକେଟ ଖେଳ ପଡ଼ିଆ ମଧ୍ୟ ଥିଲା । ସହରକୁ ଗମନାଗମନ ନିୟନ୍ତିତ ଥିଲା । ମହାରାଜାଙ୍କର ଉଦ୍ୟାନ ଏଠାରେ ଦର୍ଶନୀୟ ଥିଲା । ଗ୍ରୀଷ୍ମକାଳରେ ଏହାର ଜଳବାୟୁ ଆକର୍ଷଣୀୟ ଥିଲା ।

ମହାରାଜା ଭାରତୀୟ ସଂଘୀୟ ବ୍ୟବସ୍ଥାର ବିରୋଧି ଥିଲେ । ଅପରପକ୍ଷରେ ପାନ୍ନିକର ଏହାର ଦୃଢ଼ ସମର୍ଥନ ଥିଲେ ମଧ୍ୟସେ ତାଙ୍କୁ କୌଣସି ପ୍ରକାର ଅସମ୍ମାନ

କରୁନଥିଲେ । ସଂଘୀୟ ବ୍ୟବସ୍ଥାର ବିରୋଧ କରି ସେ ବିଲାତର ଜାଠଦଳ ନେତା ଉଇନଷ୍ଟୋନ ଚର୍ଚ୍ଚିଲଙ୍କ ସହିତ ସମ୍ପର୍କ ରଖିବାରୁ ଲେବର ଦଳର ଭାରତର ମନ୍ତ୍ରୀ ସାର ସାମୁଏଲ ହୋର ତାଙ୍କ ଉପରେ ଅସନ୍ତୁଷ୍ଟ ହେଲେ । ଲର୍ଡ଼ ୱେଲିଂଡ଼ନ (Lord Wellingdon) ଭାଇସରୟଙ୍କ ସହିତ ଭାରତୀୟ କ୍ରିକେଟ ସଂକ୍ରାନ୍ତରେ ତାଙ୍କର ମତଭେଦ ଥିଲା । ପଞ୍ଜାବ ରେସିଡ଼େଣ୍ଟ ସାର ଉଇଲବର ଫୋର୍ସ ବେଲଙ୍କ ସହିତ ତାଙ୍କର ମତାନ୍ତର ଏପରି ତିକ୍ତ ହେଲା ଯେ, ସେ ଭୂପିନ୍ଦରଙ୍କୁ ଗାଦିଚ୍ୟୁତ କରିବାକୁ ସମସ୍ତ ପ୍ରକାର କ୍ଷେତ୍ର ପ୍ରସ୍ତୁତ କରିବାକୁ ଲାଗିଲେ, ମାତ୍ର ଅସଫଳ ହେଲେ । ଭାରତର ଅନେକ ବିଖ୍ୟାତ ନରପତିମାନଙ୍କ ସହିତ ତାଙ୍କର ମତଭେଦ ଥିଲା । ମାତ୍ର ସେମାନେ ନିଜ ମତ ଜାହିର କରିବାକୁ ଅସଫଳ ହେଲେ । ମାତ୍ର ଦଶଶିର ବିଂଶ ଭୁଜ ରାବଣ ପରି ଭୂପିନ୍ଦର ଅକ୍ଳାନ୍ତ ପରିଶ୍ରମ କରି ସବୁ ବିଷୟ ତନ୍ନ ତନ୍ନ ଅନୁଧାନ ସହିତ ବିରୋଧି ଗୋଷ୍ଠୀ ମଧ୍ୟରେ ନିଜକୁ ଜାହିର କରିପାରିଥିଲେ । ନରେନ୍ଦ୍ର ମଣ୍ଡଳ, ଭାରତର କ୍ରିକେଟ ଆସୋସିଏସନ ବେଡ଼ଗଲିଗ, ଫ୍ରି ମାସନେରୀ (Free Masonary) ଭାରତୀୟ କ୍ରୀଡ଼ା ସଂସଦ ଆଦି ବିଭିନ୍ନ ଅନୁଷ୍ଠାନରେ ସେ କର୍ମକର୍ତ୍ତା ଥାଇ ନିଜ ମତ ଅନୁସାରେ କାର୍ଯ୍ୟ କରିବାକୁ ସକ୍ଷମ ହେଉଥିଲେ । ପ୍ରତିବର୍ଷ ନବରାତ୍ରିରେ ସେ ଦରବାର କରି ସମ୍ମାନ ଓ ପଦବୀ ନିଜ ଅନୁଗତ ମାନଙ୍କୁ ପ୍ରଦାନ କରୁଥିଲେ । ୧୯୩୪ ମସିହାରେ ପାନ୍ନିକରଙ୍କୁ ମଧ୍ୟ ପଦବୀ ଓ ସମ୍ମାନ ଦିଆଯାଇଥିଲା ।

ସମ୍ରାଟ ପଞ୍ଚମଜର୍ଜଙ୍କର ରାଜତ୍ୱର ୨୫ ବର୍ଷ ପୂର୍ତ୍ତି ଅବସରରେ ୧୯୩୫ ମସିହାରେ ତାଙ୍କର ରୌପ୍ୟ ଜୁବୁଲି ସମଗ୍ର ସାମ୍ରାଜ୍ୟରେ ପାଳିତ ହେଲା । ଏହି ଉପଲକ୍ଷେ ପାତିଆଲା ମହାରାଜାଙ୍କୁ ଲଣ୍ଡନ ଯିବାକୁ ନିମନ୍ତ୍ରଣ କରାଗଲା । ଏହି ସମୟରେ ପାର୍ଲାମେଣ୍ଟରେ ୧୯୩୫ ଭାରତ ଶାସକ ଆଇନ ଆଲୋଚିତ ହେଉଥିଲା । ନରେନ୍ଦ୍ର ମଣ୍ଡଳ ଅନ୍ୟଜଣଙ୍କ ସହିତ ସଂପାଦକ ପାନ୍ନାକରଙ୍କୁ ଏଥିପାଇଁ ବିଲାତ ପଠାଇଲେ । ମହାରାଜାଙ୍କର ଯାତ୍ରାର ୮ ଦିନ ଆଗରୁ ସେ ବମ୍ବେରୁ ଜାହାଜରେ ଯାତ୍ରା କଲେ । ମହାରାଜାଙ୍କ ସହିତ ସାକ୍ଷାତ କରିବାକୁ ସେ ନେପଲ୍ସରୁ ରୋମ ଗଲେ । ସେଠାରେ ମହାରାଜାଙ୍କର ଇଟାଲୀର ରାଜା ଭିକଟରେ ଏମାନୁଏଲ, ତତ୍କାଳୀନ ଶାସକ ମୁସୋଲିନି, ମହାମାନ୍ୟ ପୋପଙ୍କ ସମ ରାଜକୀୟ ମାନ୍ୟତା ସହକାରେ ଦର୍ଶନ ନିମିତ୍ତ ବ୍ୟବସ୍ଥା ହୋଇଥାଏ । ପାନିକର ନରେନ୍ଦ୍ର ମଣ୍ଡଳ ସମ୍ପାଦକ ଆଉ ମହାରାଜାଙ୍କ ବୈଦେଶିକ ମନ୍ତ୍ରୀ ଥିବାରୁ ସେ ମଧ୍ୟ ଏହି ସୁଯୋଗରେ ଭାଗି ହେଲେ । ସେତେବେଳକୁ ଇଟାଲୀର ରାଜାଙ୍କର କିଛି କର୍ତ୍ତୃତ୍ୱ ନ ଥାଏ । ମୁସୋଲିନି ଗୋଟିଏ କୁମ୍ଭାର ଘରେ ଜନ୍ମଗ୍ରହଣ କରି ଶ୍ରମିକସଂଘମାନଙ୍କୁ ସଙ୍ଗଠିତ କରି ରାଜ୍ୟ

କ୍ଷମତା ଦଖଲ କରିନେଇଥାନ୍ତି। ଇଂରେଜ ମାନଙ୍କ ସହିତ ସେତେବେଳକୁ ତାଙ୍କର ବିରୋଧ ଲାଗି ରହୁଥିଲା । ଫ୍ରାନ୍ସ ସହିତ ମଧ ତାଙ୍କ ସଦଭାବ ନଥିଲା। ମାତ୍ର ୧୯୩୫ରେ କେହି ତାଙ୍କର ଅଖଣ୍ଡ କ୍ଷମତାର ପ୍ରତିରୋଧ କରୁନଥିଲେ। ୬୦ ଲକ୍ଷ ସୈନ୍ୟ ବିଶିଷ୍ଟ ନିଜ ସୈନ୍ୟ ବାହିନୀ ନେଇ ସେ ଗର୍ବିତ ଥିଲେ। ସେତେବେଳକୁ ଜର୍ମାନୀର ହିଟଲରଙ୍କ ସହିତ ମୁସୋଲିନିକୁ ଏକ ଭବିଷ୍ୟତ କ୍ଷମତାଶୀଳ ଶକ୍ତି ଭାବେ ଗ୍ରହଣ କରି ନିଆଯାଇଥାଏ। ମୁସୋଲିନିଙ୍କ ସହିତ ସାକ୍ଷାତ ପରେ ମହାରାଜା ପୋପଙ୍କୁ ସାକ୍ଷାତ କରି ତାଙ୍କର ଆଶୀର୍ବାଦ କାମନା କଲେ। ପୋପଙ୍କ ସହିତ ସାକ୍ଷାତ ପରେ ନରେନ୍ଦ୍ର ମଣ୍ଡଳ କାର୍ଯ୍ୟରେ ପାନିକର ଲଣ୍ଡନ ଗଲେ। ମହାରାଜାଙ୍କର ୟୁରୋପରେ ଅନ୍ୟାନ୍ୟ ରାଜ୍ୟ ଓ ସହର ଭ୍ରମଣ କାର୍ଯ୍ୟସୂଚୀ ଥିଲା। ମାତ୍ର ସ୍ୱାସ୍ଥ୍ୟଗତ କାରଣରୁ ତାଙ୍କୁ ଶୀଘ୍ର ପାତିଆଲା ଫେରିବାକୁ ପଡ଼ିଲା।

୧୯୩୫ ମସିହା ଶେଷ ଆଡ଼କୁ ପାତିଆଲାର ଦେଓ୍ୱାନ ସାର ଲିୟାକତ ହୟାତ ଅସୁସ୍ଥ ହୋଇ ଛୁଟିରେ ଗଲେ। ସେ ମହାରାଜାଙ୍କର ଅତୀବ ବିଶ୍ୱସ୍ତ ସଚିବ ଥିଲେ ତାଙ୍କ ଅନୁପସ୍ଥିତିରେ ବିଦେଶମନ୍ତ୍ରୀ ପାନ୍ନିକର ଅଧିକ ଦାୟିତ୍ୱ ଗ୍ରହଣ କଲେ। ସେହିବର୍ଷ ମହାରାଜା ନିଜ ଅର୍ଥମନ୍ତ୍ରୀ ସାର ଫ୍ରେଡ଼େରିକ ଗଣ୍ଟଲେଟଙ୍କୁ ପଦବୀରୁ ଅବ୍ୟାହତି ଦେଇ କର୍ଣ୍ଣେଲ ଭାନ ଇଲାସ ବୋଲି ଆଉ ଜଣେ ଇଂରେଜଙ୍କୁ ନିଯୁକ୍ତି ଦେଲେ। ଗଣ୍ଟଲେଟ ଇଂଲଣ୍ଡରେ ସରକାରୀ ଚାକିରୀରେ କାମ କରୁଥିଲେ। ତାଙ୍କର ତେଣୁ ବହୁତ ଜଣାଶୁଣା ଥିଲା। ନିଜ ପଦବୀ ହରାଇବା ଜାଣି ସେ ମହାରାଜା ଭୂପିନ୍ଦର ସିଂହ ଥିବା ପର୍ଯ୍ୟନ୍ତ ରାଜ୍ୟର ବିକାଶ ସମ୍ଭବ ନୁହେଁ ଓ ସେ ରାଜ୍ୟର ଅର୍ଥ ବରବାଦ କରୁଅଛନ୍ତି ବୋଲି ଅଭିଯୋଗ କଲେ। ଏହାକୁ ସେ ରେସିଡ଼େଣ୍ଟଙ୍କ ଜରିଆରେ ବଡ଼ଲାଟଙ୍କୁ ଜଣାଇଲେ। ପୂର୍ବରୁ ସେମାନେ ଏହିପରି ଏକ ସୁଯୋଗର ପ୍ରତୀକ୍ଷାରେ ଥିଲେ। ଭାରତ ସଚିବଙ୍କ ଅନୁମତି ନେଇ ତାଙ୍କୁ ଗାଦିଚ୍ୟୁତ କରିବାକୁ ଉଦ୍ୟମ ଜାରି ରହିଲା। ଭୂପିନ୍ଦର ସିଂହ କିନ୍ତୁ ଅବିଚଳିତ ଥିଲେ। ପାନିକରଙ୍କ କଥାରେ ସେ କେତେଜଣ ଭାରତୀୟ ନ୍ୟାୟବିଦଙ୍କ ପରାମର୍ଶ ନେଲେ ଓ ପାନିକର ଲଣ୍ଡନ ଯାଇ ତାଙ୍କ ସପକ୍ଷରେ ଭାରତ ସଚିବଙ୍କୁ ପ୍ରଭାବିତ କରିବାକୁ ଉଦ୍ୟମ କଲେ। ଭୂପିନ୍ଦର ସିଂହ ଅମିତବ୍ୟୟୀ ଥିଲେ ମଧ ବିଗତ ଛଅ ବର୍ଷ ମଧରେ ତାଙ୍କ ବ୍ୟୟରେ କୌଣସି ଉଲ୍ଲେଖନୀୟ ତ୍ରୁଟି ନଥିଲା। ରାଜକୋଷ ମଧ ସମ୍ପୂର୍ଣ୍ଣ ଶୂନ୍ୟ ନଥିଲା। ପୂର୍ବତନ ବଡ଼ଲାଟ ଲର୍ଡ଼ ହାଲିଫାକ୍ସ ଓ ଅନ୍ୟମାନଙ୍କର ସମର୍ଥନ ପାଇ ଭାରତ ସଚିବ ସାର ସାମୁଏଲ ହୋର ନିକଟରେ କୌଣସି ତରବରିଆ ପଦକ୍ଷେପ ନିଆଯିବନାହିଁ ବୋଲି ପାନିକରଙ୍କୁ ପ୍ରତିଶ୍ରୁତି ଦେଲେ।

ମହାରାଜା ଭୂପିନ୍ଦର ସିଂହ ଏହା ଫଳରେ ନିଜ ବୈଦେଶିକ ମନ୍ତ୍ରୀଙ୍କ ଠାରେ କୃତଜ୍ଞତା ପ୍ରକାଶ କଲେ । ରେସିଡ଼େଣ୍ଟଙ୍କର ଅକ୍ଷମତା ପ୍ରକାଶ ପାଇଲା । ବଡ଼ଲାଟ ୱେଲିଂଡ଼ନ ବଦଳି ହୋଇଗଲେ । ନୂତନ ବଡ଼ଲାଟ ଲର୍ଡ଼ ଲିନଲିଥଗୋ ପାଟିଆଲା ପ୍ରତି ସହାନୁଭୂତିଶୀଳ ଥିଲେ। ମାତ୍ର ଅଳ୍ପଦିନ ପରେ ମହାରାଜା ୧୯୩୮ ମସିହା ମାର୍ଚ୍ଚ ୨୩ ତାରିଖରେ ପ୍ରାଣତ୍ୟାଗ କଲେ। ଜାନୁୟାରୀ ମାସଠାରୁ ସେ ସୁସ୍ଥ ହେବା ଆଶା ସମସ୍ତେ ପରିତ୍ୟାଗ କଲେ ମାତ୍ର ନିଜ ରାଜକୀୟ ଗାରିମା ଶେଷ ପର୍ଯ୍ୟନ୍ତ ସେ ରକ୍ଷା କରିଥିଲେ। ବିନା ଅନୁମତିରେ ଡାକ୍ତର, ମନ୍ତ୍ରୀ ବା ପରିବାରର ଲୋକ ତାଙ୍କ କୋଠରୀକୁ ପ୍ରବେଶ କରିପାରୁନଥିଲେ। ତାଙ୍କୁ ସାକ୍ଷାତ କରିବାକୁ, ଶୁଭେଚ୍ଛା ଜଣାଇବାକୁ ଅନ୍ୟ ରାଜ୍ୟରୁ ଆସିଥିବା ନରପତି ଓ କର୍ମଚାରୀମାନଙ୍କୁ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିବାକୁ ପଡୁଥିଲା। ସନ୍ଧ୍ୟା ସାତଟାରେ ତାଙ୍କର ମୃତ୍ୟୁ ହେଲା ଓ ପରଦିନ ମାର୍ଚ୍ଚ ୨୪ ତାରିଖ ସକାଳ ୮ଟାରେ ତାଙ୍କୁ ରାଜକୀୟ ମର୍ଯ୍ୟାଦା ସହିତ ଶ୍ମଶାନକୁ ନିଆଯାଇ ସେଠାରେ ଚିତାରୋହଣ କରାଗଲା। ନୂତନ ମହାରାଜା ଖାଲି ପାଦରେ ଚାଲି ଏହି ଶୋଭାଯାତ୍ରାରେ ଥିଲେ। ଶ୍ମଶାନଯାତ୍ରାରେ ପ୍ରଜାକୁଳ କର୍ମଚାରୀ, ଶବବାହକ, ପୁଲିସ ଓ ସୈନ୍ୟ ବାହିନୀ ସମସ୍ତଙ୍କ ଆଖିରେ ଅଶ୍ରୁଧାର ତାଙ୍କର ବିରାଟ ବ୍ୟକ୍ତିତ୍ୱର ପରିଚୟ ଦେଉଥିଲା। ତାଙ୍କ ପରେ ସାର ଯାଦବେନ୍ଦ୍ର ସିଂହ ପାଟିଆଲାର ମହାରାଜା ହେଲେ। ସେ ଥିଲେ ଶେଷ ମହାରାଜା। ଭାରତ ସହିତ ନିଜ ରାଜ୍ୟର ମିଶ୍ରଣ ନିମିତ୍ତ ସେ ଉଦ୍ୟତ ଥାଇ ପେପସୁ ୟୁନିୟନର ରାଜ ପ୍ରମୁଖ ହୋଇଥିଲେ। ମିଶ୍ରଣ ସ୍ୱାଧିନ ଭାରତରେ ତାଙ୍କର ହାତପାଣ୍ଠି ୧୭ଲକ୍ଷ ଟଙ୍କା ଧାର୍ଯ୍ୟ କରାଯାଇଥିଲା।

୨୦୧୩ ମସିହା ଜୁଲାଇ ୫ ତାରିଖ ଲଣ୍ଡନରୁ ଏକ ସମ୍ବାଦରୁ ଜଣାଗଲା ସେଠାରେ ନିଲାମରେ ୧୦୦ ବର୍ଷ ତଳର ପାଟିଆଲାର ମହାରାଜା ସାର ଭୂପିନ୍ଦର ସିଂହଙ୍କର ୧୪୦୦ଖଣ୍ଡ ବିଶିଷ୍ଟ ରୂପାର ଏକ ଡିନର ସେଟ୍ ପ୍ରାୟ ୧୮କୋଟି ଭାରତୀୟ ମୁଦ୍ରାରେ ନିଲାମ ହେଲା। ନିଜ ନାମ ନଜଣାଇ ସର୍ବୋଚ୍ଚ ଡାକରେ ଜଣେ ବ୍ରିଟିଶ ନାଗରିକ ଏହା ଖରିଦ କଲେ। ମହାରାଜା ଭୂପିନ୍ଦରଙ୍କର ରାଜକୀୟ ବିଳାସ ଓ ବୈଭବ ଏହି ସାମାନ୍ୟ ଘଟଣାରୁ ଜଣାପଡେ।





ମହାରାଜା ସାର୍ ଗଙ୍ଗା ସିଂହ
(୧୮୮୦-୧୯୪୩)

# ବିକାନୀର ମହାରାଜା
## ସାର୍ ଗଙ୍ଗା ସିଂହ

ଇଉରୋପରେ ୧୯୩୯ ମସିହା ୩ ସେପ୍ଟେମ୍ବରରେ ଜର୍ମାନୀ ସହିତ ଇଂଲଣ୍ଡ ଯୁଦ୍ଧ ଘୋଷଣା କରିବା ପରେ ଭାରତବର୍ଷରେ ଏହାର ପ୍ରତିକ୍ରିୟା ଦେଖାଗଲା । କଂଗ୍ରେସ ଯୁଦ୍ଧ ବିରୋଧି ଆନ୍ଦୋଳନ ଆରମ୍ଭ କଲା କାରଣ ଭାରତବର୍ଷର ଲୋକପ୍ରତିନିଧି ମାନଙ୍କ ମତାମତ ନ ନେଇ ଭାରତକୁ ଯୁଦ୍ଧରେ ସାମିଲ କରାଯାଇଥିଲା । ଭାରତୀୟ ନରପତିମାନେ ସଂଘୀୟ ବ୍ୟବସ୍ଥା କଥା ଭୁଲି ଯାଇ ଇଂଲଣ୍ଡକୁ ସାହାଯ୍ୟ କରିବାକୁ ଲାଗିଲେ । କେତେକ ମଧ୍ୟ ସୈନ୍ୟ ବିଭାଗରେ ଯୋଗ ଦାନ କଲେ । ସାର୍ବଭୌମ ଶକ୍ତି ଭାବରେ ଭାରତ ସରକାର କେତେକ ରାଜ୍ୟରେ ଭାରତୀୟ ଦେୱାନ ବଦଳରେ ବ୍ରିଟିଶ ଶାସକଙ୍କୁ ନିଯୁକ୍ତି ଦେଲେ । କେତେକ ନରପତିଙ୍କର କ୍ଷମତା ଖର୍ବ କରାଗଲା ବା କାଢ଼ି ନିଆଗଲା । ରାଜାମାନଙ୍କର ହାତପାଣ୍ଠି କମେଇ ଦିଆଗଲା । ସେମାନଙ୍କ ବ୍ୟକ୍ତିଗତ ସମ୍ପତ୍ତିର ଆକଳନ

କରାଗଲା। ଏସବୁର ମୂଳ ଉଦ୍ଦେଶ୍ୟ ଥିଲା ସେମାନଙ୍କୁ ଭାରତ ସରକାରଙ୍କର ଅଖଣ୍ଡ କ୍ଷମତା ଜଣାଇ ଦେବା ଓ ଯୁଦ୍ଧରେ ସେମାନଙ୍କ ଅକୁଣ୍ଠିତ ସାହାଯ୍ୟ ଲାଭ କରିବା। ସାର ଗଙ୍ଗାସିଂହ ସେତେବେଳେ ବିକାନୀରର ମହାରାଜା ଥିଲେ । ପାତିଆଲା ପରି ବିକାନୀର ୧୭ଗୋଟି ତୋପ ସଲାମି ପାଉଥିବା ୧୩ଟି ରାଜ୍ୟ ମଧ୍ୟରୁ ଗୋଟିଏ। ଏହାର ଆୟତନ ୨୩ ହଜାର ବର୍ଗମାଇଲ। ଲୋକସଂଖ୍ୟା ୯ଲକ୍ଷ ୩୬ହଜାର ଓ ଆୟ ୧କୋଟି ୧୯ଲକ୍ଷ ଥିଲା। କେ.ଏମ ପାନିକରକୁ ସେ ନିଜର ବୈଦଶିକ ମନ୍ତ୍ରୀ ଭାବେ ନିଯୁକ୍ତି ଦେଇଥିଲେ। ବୟସ, ପ୍ରତିପତ୍ତି ଓ କ୍ଷମତା ଦୃଷ୍ଟିରୁ ଭାରତୀୟ ନରପତିମାନଙ୍କ ମଧ୍ୟରେ ସାର ଗଙ୍ଗା ସିଂହଙ୍କର ଖାତିର ଉଚ୍ଚରେ ଥିଲା। ବିଭିନ୍ନ ସମୟରେ ହାଇଦରାବାଦ ନିଜାମଙ୍କ ଠାରୁ ଅନ୍ୟ ବଡ଼ସାନ ନରପତିମାନେ ତାଙ୍କର ପରାମର୍ଶ ଲୋଡୁଥିଲେ। ସେ ରାଜ୍ୟରେ ଶିକ୍ଷାର ଦ୍ରୁତ ବିସ୍ତାରର ପକ୍ଷପାତୀ ନଥିଲେ। ମାତ୍ର ପାନିକରଙ୍କ ପରାମର୍ଶରେ ସେ କଲେଜରେ ବିଜ୍ଞାନ ଶିକ୍ଷାର ପ୍ରସାର, ଉପାଧ୍ୟୁତ୍ତର ଶିକ୍ଷା, ନାରୀ ଶିକ୍ଷା ନିମିତ୍ତ ବାଳିକା ବିଦ୍ୟାଳୟ ସଂଖ୍ୟା ବୃଦ୍ଧି, ଘରୋଇ ଶିକ୍ଷାନୁଷ୍ଠାନ ମାନଙ୍କୁ ବର୍ଦ୍ଧିତ ଗ୍ରାଣ୍ଟ ସାହାଯ୍ୟ, ପୁସ୍ତକାଗାରମାନ ସ୍ଥାପନ ଆଦି କାର୍ଯ୍ୟ ଆରମ୍ଭ କଲେ। ନିଜ ରାଜ୍ୟରେ ପ୍ରତିଷ୍ଠା କରାଯାଇଥିବା ବିଧାନସଭାର କ୍ଷମତା, ମହୀଶୂର ତ୍ରିବାଙ୍କୁଡ଼ ଆଦି ପ୍ରଗତିଶୀଳ ରାଜ୍ୟମାନଙ୍କ ପରି ବୃଦ୍ଧି କରିବାକୁ ସେ ସମ୍ମତ ହେଲେ। ଫଳରେ ବେସରକାରୀ ସଭ୍ୟ ଏହି ସଭାରେ ସଂଖ୍ୟା ଗରିଷ୍ଠତା ଲାଭ କଲେ।

ମହାରାଜା ଗଙ୍ଗା ସିଂହଙ୍କ ଅନ୍ୟ ରାଜନ୍ୟ ବର୍ଗଙ୍କୁ ସାହାଯ୍ୟର ଏକ ଉଦାହରଣ ପାନିକର ଦେଇଛନ୍ତି । କଚ୍ଛ କାଥିଆବାଡ଼ ରାଜ୍ୟ ପୁଞ୍ଜର ଏକ ରାଜ୍ୟ ଥିଲା। କଚ୍ଛର ନରପତି ଥିଲେ ମହାରାଜାଧିରାଜ ମିର୍ଜା ମହାରାଓ ଖେମରାଜଜି। ସେ ୬୦ବରଷ ରାଜପଣ କରିଥିଲେ। ଜୁଲାଇ ୧୯୪୧ ମସିହାରେ ଭାରତ ସରକାର ତାଙ୍କୁ ଗାଦିଚ୍ୟୁତ କରିବାକୁ କାର୍ଯ୍ୟାରମ୍ଭ କଲେ। ସେତେବେଳେ ମହାରାଜାଙ୍କ ବୟସ ୭୫ ବର୍ଷ । ମାତ୍ର ତାଙ୍କର ଶରୀର ଓ ମନ ସମ୍ପୂର୍ଣ୍ଣ ସୁସ୍ଥ ଥିଲା। ପୂର୍ବରୁ ଭାରତ ସରକାର ତାଙ୍କୁ ଯଥେଷ୍ଟ ମର୍ଯ୍ୟାଦା ପ୍ରଦାନ କରିଥିଲେ। ଗୋଟିଏ ସାମ୍ରାଜ୍ୟ ସମ୍ମିଳନୀ (Imperial Conference) ଓ ଆଉ ଗୋଟିଏ ଆନ୍ତର୍ଜାତୀୟ ସମ୍ମିଳନୀରେ ସେ ଭାରତର ପ୍ରତିନିଧିତ୍ୱ କରିଥିଲେ। ଦୁଇଥର ସେ ନରେନ୍ଦ୍ର ମଣ୍ଡଳର ଅଧ୍ୟକ୍ଷ ନିର୍ବାଚିତ ହୋଇଥିଲେ ଓ ଦକ୍ଷତାର ସହିତ ନିଜ କାର୍ଯ୍ୟ ତୁଲାଇଥିଲେ। ଜଣେ ବରିଷ୍ଠ ନରପତି ଓ ଗୁରୁ ଭାବରେ ଅନ୍ୟ ରାଜାମାନେ ତାଙ୍କୁ ସମ୍ମାନ ଦେଉଥିଲେ। କଚ୍ଛ ଗୋଟିଏ ଅତି ପ୍ରାଚୀନ ରାଜ୍ୟ ଥିଲା। ସେମାନଙ୍କର ରାଜବଂଶର

ପ୍ରତିଷ୍ଠାତା ଭଗବାନ ଶ୍ରୀକୃଷ୍ଣ ବୋଲି ସେମାନେ ଗର୍ବ କରୁଥିଲେ । ସେ ରାଜ୍ୟର ଆୟତନ ଦକ୍ଷିଣରେ ତ୍ରିବାଙ୍କୁଡ଼ ସହିତ ସମାନ । ଅତୀତରେ ଏହା ନିଜର ସ୍ୱାଧିନତା ଅକ୍ଷୁର୍ଣ୍ଣ ରଖିଥିଲା । ସେମାନଙ୍କର ନିଜ ନୌସେନା ଥିଲେ ଓ ସେମାନେ ନିଜ ସମକକ୍ଷ ଭାବେ ଇଜିପ୍ଟ ଓ ଆବିସିନିଆର ସମ୍ରାଟମାନଙ୍କ ସହିତ ସନ୍ଧି ସ୍ଥାପନ କରିଥିଲେ । ଏହି ଅତୀତ ପରମ୍ପରାର ଦାୟାଦ ଭାବେ ଖେମରାଜଜି ନିଜ ସମ୍ମାନ ଅତୁଟ ରଖିଥିଲେ । ଇଂରେଜ ସରକାର ତାଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଲେ ତାଙ୍କ ଶାସନ ପ୍ରଗତିଶୀଳ ନଥିଲା । ଗିବସନ ଜୁଲାଇ ୨୨ ତାରିଖରେ ତାଙ୍କୁ ଏକ ଚରମପତ୍ର ଦେଲେ । କେନ୍ଦ୍ର ସରକାର ରେସିଡେଣ୍ଟ ନିର୍ବାଚିତ ଜଣେ ଦେଓ୍ୱାନ ନିଯୁକ୍ତି କରିବେ ଓ ତାଙ୍କୁ ସବୁ ଶାସନ କ୍ଷମତା ପ୍ରଦାନ କରିବେ। ରେସିଡ଼େଣ୍ଟ ଗିବସନ ତାଙ୍କୁ ୭ଦିନ ସମୟ ଦେଲେ ଏହି ବ୍ୟବସ୍ଥା ଗ୍ରହଣ କରିବାକୁ । ମହାରାଓଙ୍କ ପୁତ୍ର ଯୁବରାଜଙ୍କ ବୟସ ସେତେବେଳକୁ ୫୭ ବର୍ଷ ଓ ରାଜ୍ୟ ଶାସନ ନିମିତ୍ତ ସେ ଅତିଶୟ ବ୍ୟଗ୍ର ଥିଲେ । ଗିବସନଙ୍କ ସହିତ ହାତ ମିଳାଇ ପିତାଙ୍କ ଗାଦିଚ୍ୟୁତ ପରେ ସେ ସିଂହାସନରେ ବସିବାର ଆଶାୟୀ ଥିଲେ । କେବଳ ରେସିଡେଣ୍ଟ ଗିବସନ ଯୁବରାଜଙ୍କ ବନ୍ଧୁ ଓ ଶୁଭେଚ୍ଛୁ ନଥିଲେ । ପାର୍ଶ୍ୱବର୍ତ୍ତୀ ଅନେକ ନରପତି ମଧ ତାଙ୍କୁ ସମର୍ଥନ କରୁଥିଲେ । ମହାମହିମ ଭାଇସରାୟଙ୍କ ନୂତନ ଦେଓ୍ୱାନ ନିଯୁକ୍ତି ପ୍ରସ୍ତାବ ସାମାନ୍ୟ ପ୍ରସ୍ତାବ ନଥିଲା। ଏହା ଏକ ନିର୍ଦ୍ଦେଶ ବୋଲି ଜଣା ଥିଲା । କେହି ଏହା ଅମାନ୍ୟ କରିବାକୁ ଦୁଃସାହସ କରିବ ନାହିଁ। ରେସିଡ଼େଣ୍ଟ ଗିବସନ ଏହା ବୁଝିଥିଲେ। ବୟସ୍କ ମହାରାଓ ଖେମଜି ମଧ ନିଜ ମର୍ଯ୍ୟାଦା ବିଷୟରେ ସଜାଗ ଥିଲେ। ସେ ଗୋଟିଏ ଘରୋଇ ଉଡ଼ାଜାହାଜ ମହାରାଜା ଗଙ୍ଗାସିଂହ ପାଖକୁ ବିକାନୀରକୁ ପଠାଇଲେ। ତାକୁ ସମସ୍ୟା ଅବଗତ କରାଇ, ତାଙ୍କ ବୈଦଶିକ ମନ୍ତ୍ରୀ ପାନିକରଙ୍କୁ ତାଙ୍କୁ ସାହାଯ୍ୟ ପାଇଁ ପଠାଇବାକୁ ଅନୁରୋଧ କଲେ। ମହାରାଜା ଗଙ୍ଗାସିଂହ ପାନିକରଙ୍କୁ ଖେର୍ମଜିଙ୍କୁ ସାହାଯ୍ୟ କରିବାକୁ ବମ୍ବେ ପଠାଇଲେ। ସେତେବେଳେ ମହାରାଓ ବମ୍ବେର ତାଜମହଲ ହୋଟେଲରେ ରହୁଥାଆନ୍ତି। ଅବିଚଳିତ ଭାବରେ ସେ ଭାଇସରୟଙ୍କୁ ଉତ୍ତର ପଠାଇଲେ- ଏକ ସପ୍ତାହ ମଧରେ ବିଷୟର ଗୁରୁତ୍ୱ ଦୃଷ୍ଟିରୁ ସମ୍ପୂର୍ଣ୍ଣ ଉତ୍ତର ଦେବା ସମ୍ଭବପର ନୁହେଁ। ଅଗଷ୍ଟ ମାସ ୧୫ ତାରିଖ ପର୍ଯ୍ୟନ୍ତ ସେ ସମୟ ମାଗିଲେ। ସମସ୍ୟାର ସମାଧାନ ନିମିତ୍ତ ମହାରାଜ ଗଙ୍ଗାସିଂହ ପାନିକରଙ୍କୁ କିଛିଦିନ ରଖିବାକୁ ବିକାନୀର ମହାରାଜାଙ୍କୁ ଅନୁମତି ଦେଲେ। ପୂର୍ଣ୍ଣାଙ୍ଗ ଉତ୍ତର ଏହା ପରେ ସେ ପଠାଇଲେ। ରାଜ୍ୟ ଶାସନରେ ଆବଶ୍ୟକ ସଂସ୍କାର ଆଣିବାକୁ ସେ ପ୍ରସ୍ତୁତ ଅଛନ୍ତି କିନ୍ତୁ ନିଜେ ଜଣେ ସୁଯୋଗ୍ୟ ପ୍ରାର୍ଥୀ ନିଯୁକ୍ତ କରିବେ ମାତ୍ର କେନ୍ଦ୍ର ସରକାର ତାଙ୍କ ଉପରେ

ଲଦି ଦେଇଥିବା ପ୍ରାର୍ଥୀଙ୍କୁ ଗ୍ରହଣ କରିବେ ନାହିଁ। ଅଗଷ୍ଟ ୧୪ ତାରିଖ ସୁଦ୍ଧା ପ୍ରସ୍ତାବିତ ଉତ୍ତର ମହାରାଜାଙ୍କର ସମ୍ମତି ପାଇଲା, ମାତ୍ର ଦେଖାଗଲା ତାଙ୍କ ସରକାରୀ ଚିହ୍ନ ଥାଇ ପ୍ରସ୍ତୁତ ନୋଟ କାଗଜ ସରିଯାଇଅଛି। ଏତେବଡ଼ ଗୁରୁତ୍ୱପୂର୍ଣ୍ଣ ଚିଠିର ଉତ୍ତର ସାଧାରଣ କାଗଜରେ ପଠାଇବା ଉଚିତ ହେବନାହିଁ ବୋଲି ମନେ କରାଗଲା। କଛର ଜଣେ କର୍ମଚାରୀଙ୍କ ପାଖରେ କିଛି କାଗଜ ଥିବା ଜଣାଗଲା ଓ ତାହା ଅଣାଗଲା। ଟାଇପ ସାରି ଚିଠି ପକାଇବା ବେଳକୁ ସମୟ ସୀମା ଶେଷ ହୋଇଯାଇଥାଏ । ରାତ୍ରି ୧୨ଟା ପରେ ୧୫ ତାରିଖ। ରେସିଡ଼େଣ୍ଟ ଗିବସନଙ୍କୁ ଉତ୍ତର ସମୟ ସୀମା ମଧ୍ୟରେ ନ ପଠାଇବା ଏକ ସୁଯୋଗ ଦେବ। ତେଣୁ ପାନିକର ରେସିଡ଼େଣ୍ଟ ଗିବସନଙ୍କୁ ପୂର୍ବ ରାତ୍ରିରେ ଚିଠି ଡାକରେ ପକାଯାଇଥିବା ଟେଲିଗ୍ରାମ କରି ଜଣାଇଲେ। ଅଗଷ୍ଟ ୧୫ ତାରିଖରେ ଭାଇସରୟଙ୍କର ବ୍ୟକ୍ତିଗତ ସଚିବ ସାର ଲେଥୱେଟଙ୍କୁ ସାକ୍ଷାତ କରି ପାନ୍ନିକର ଘଟଣାର କ୍ରମ ବୁଝାଇ ଦେଲେ। ଭାଇସରୟ ତାଙ୍କ ଉତ୍ତରରେ ସନ୍ତୁଷ୍ଟ ହେଲେ। ସେ ମହାରାଓଙ୍କୁ ଅନୁମତି ଦେଲେ। ତାଙ୍କ ପଦଚ୍ୟୁତି କରିବା ତାଙ୍କର ଆଦୌ ଅଭିପ୍ରାୟ ନୁହେଁ ବୋଲି ଭାଇସରୟ ମହାରାଓଙ୍କୁ ଜଣାଇଲେ। କଛ ମହାରାଜା ପାନ୍ନିକରଙ୍କୁ ତାଙ୍କ ସାହାଯ୍ୟ ନିମିତ୍ତ ୨୩ହଜାର ଟଙ୍କା ପାରିଶ୍ରମିକ ଯାଚିଲେ, ମାତ୍ର ସେ ବିକାନୀର ସଚିବ ଆଉ ମହାରାଜଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରିଥିବାରୁ ଏହା ଗ୍ରହଣ କରିବା ଅସମୀଚିତ ବୋଲି ଏହା ପ୍ରତ୍ୟାଖାନ କଲେ। ମହାରାଜା ଗଙ୍ଗାସିଂହ ଏହିପରି ଭାବରେ ଅନ୍ୟ ନରପତି ମାନଙ୍କୁ ସାହାଯ୍ୟ କରି ସେମାନଙ୍କର ସମ୍ମାନସ୍ପଦ ଥିଲେ। ଦୀର୍ଘ ୫୬ବର୍ଷ ରାଜତ୍ୱ ମଧ୍ୟରେ ସେ ବିକାନୀରରେ ଅନେକ ସଂସ୍କାର ଆଣିଥିଲେ। ୧୯୪୨ ମସିହାରେ ତାଙ୍କର ମୃତ୍ୟୁ ପରେ ମହାରାଜା ସାର ଶାର୍ଦ୍ଦୁଳ ସିଂହ ବିକାନୀର ମହାରାଜା ହେଲେ । ଭାରତ ସ୍ୱାଧିନ ହେବା ସମୟରେ ସେ ପ୍ରଥମରୁ ସମ୍ବିଧାନ ସଭାରେ ଯୋଗ ଦେବାକୁ ସମ୍ମତି ନେଇ ଭାରତ ସହିତ ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କରିଥିଲେ। ସ୍ୱାଧିନ ଭାରତ ବର୍ଷରେ ଏଥିପାଇଁ ତାଙ୍କର ସୁଖ୍ୟାତି ବଢ଼ି ଯାଇଥିଲା। ସେ ୧୯୫୦ ମସିହାରେ ପ୍ରାଣତ୍ୟାଗ କଲେ। ତାଙ୍କ ପୁତ୍ର ମହାରାଜା କରଣ ସିଂହ ନିଜ ଲୋକପ୍ରିୟତା ହେତୁ ଭାରତର ଲୋକସଭାର ସଭ୍ୟ ନିର୍ବାଚିତ ହୋଇପାରିଥିଲେ ।

**କଛରାଜ୍ୟ :**

କଛରାଜ୍ୟ ସମ୍ପର୍କରେ ସମ୍ୟକ ବିବରଣୀ ପ୍ରଦାନ ସମୀଚିନ ହେବ । କଛମାନେ ଉଦଯୋଗଶୀଳ ଭାରତରେ ଅନ୍ୟ ରାଜ୍ୟ ଓ ବାହାରେ ବ୍ୟବସାୟ କରି ଧନ ଅର୍ଜନ କରିଥିଲେ ମଧ୍ୟ ନିଜ ରାଜ୍ୟରେ ସେମାନେ ଦରିଦ୍ର ଥିଲେ। ରାଜ୍ୟର ଆୟତନ ୮୪୬୧

ବର୍ଗମାଇଲ ଲୋକସଂଖ୍ୟା, ପ୍ରାୟ ୫ଲକ୍ଷ ଓ ବାର୍ଷିକ ଆୟ ୮୬ ଲକ୍ଷ ଥିଲା। ଦେଶସ୍ୱାଧିନ ହେବା ପରେ କେବଳ ରନ ଅଫ କଚ୍ଛ ଦ୍ୱାରା ଏହା ପାକିସ୍ଥାନର ସିନ୍ଧ ପ୍ରଦେଶରୁ ବିଛିନ୍ନ ଥିଲା । ଖରାଦିନେ ଏହି ରନ ଅଫ କଚ୍ଛ ଶୁଖିଯାଉଥିଲା । ସେଠାରେ ଯେଉଁମାନେ ବାସ କରୁଥିଲେ ସେମାନଙ୍କର ଭାରତ ପ୍ରତି ଆନୁଗତ୍ୟ ସନ୍ଦେହାତ୍ମକ ଥିଲା। ସ୍ୱାଧିନତା ପରେ ମହରାଓ ଭାରତ ସହିତ ନିଜ ରାଜ୍ୟର ମିଶ୍ରଣ ନିମିତ୍ତ ଚୁକ୍ତି ପତ୍ରରେ ସ୍ୱାକ୍ଷର କଲେ। ଏହା କାଥିଆବାଡ଼ ୟୁନିୟନରେ ମିଶାଯାଇ ପାରିଥାଆନ୍ତା ମାତ୍ର ସୀମାନ୍ତରେ ଅବସ୍ଥିତ ଏହି ରାଜ୍ୟର ଗୁରୁତ୍ୱ ଥିଲା। ପାକିସ୍ଥାନ ଗଠନ ପରେ ଭାରତ ପଶ୍ଚିମ ଉପକୂଳରେ ଥିବା ତାର କରାଚୀ ବନ୍ଦର ହରାଇଲା। କାଣ୍ଡଲାଠାରେ ଅନ୍ୟ ଏକ ବିକଳ୍ପ ବନ୍ଦର ପ୍ରତିଷ୍ଠା ଭାରତର ଲକ୍ଷ୍ୟ ଥିଲା । ତେଣୁ ଏହାକୁ କିଛିଦିନ ଏକ ଚିଫ୍ କମିଶନର ଶାସନାଧିନ ପ୍ରଦେଶ ଭାବରେ ଶାସନ କରାଯାଇ, ପରେ ବମ୍ବେ ପ୍ରଦେଶ ସହିତ ମିଶାଇ ଦିଆଯାଇଥିଲା। ମିଶ୍ରଣ ପରେ ମହାରାଓ ନିର୍ଦ୍ଧାରିତ ନିୟମ ଅନୁସାରେ ନିଜ ହାତପାଣ୍ଠି ପାଉଥିଲେ।





ନବାବ ସାର୍ ହମିଦୁଲ୍ଲା ଖାଁ
(୧୮୯୪-୧୯୬୦)

# ଭୋପାଳର ନବାବ ଇଫତିକର-ଉଲ-ମୁଲକବାହାଦୁର

## ନବାବ ସିକନ୍ଦର ସଉଲାଟ ସାର୍ ହମିଦୁଲ୍ଲା ଖାଁ

ପାରମାରବଂଶର ରାଜା ଭୋଜ ବସାଇଥିବା ନଗରର ନାମ ଥିଲା ତାଙ୍କ ନାମାନୁସାରେ ଭୋଜପାଳ। ମାଳବ ଅଞ୍ଚଳରେ ଏହି ନଗର ପରବର୍ତ୍ତୀ କାଳରେ ଭୋପାଳରେ ପରିଣତ ହେଲା।

ଏକ ମୁଖ୍ୟ ମୁସଲମାନ ରାଜ୍ୟ ଭୋପାଳ ଭାରତର କେନ୍ଦ୍ରସ୍ଥଳରେ ଅବସ୍ଥିତ ଥିଲା। ଖ୍ରୀ. ୧୭୦୯ ରେ ମୋଗଲ ସମ୍ରାଟ ବାହାଦୁର ସାହାଙ୍କ ଅମଳରେ ନିଯୁକ୍ତି ନିମିତ୍ତ ଭାରତକୁ ଆସି ଆଫଗାନିସ୍ତାନର ଦୋସ୍ତ ମହମ୍ମଦ ଏହି ରାଜ୍ୟ ପ୍ରତିଷ୍ଠା କରିଥିଲେ। ସେ ଖ୍ରୀ. ୧୭୦୯ରେ ମାଳବ ରାଜ୍ୟର ବରଶିଆ ପ୍ରଗନା ପଟ୍ଟା ନେଇଥିଲେ। ବାହାଦୁର ସାହାଙ୍କ ମୃତ୍ୟୁ ପରେ ସୃଷ୍ଟ ଅରାଜକତାର ସୁଯୋଗ ନେଇ ସେ ନିଜକୁ ଭୋପାଳର ସ୍ୱାଧିନ

ନରପତି ଭାବେ ଘୋଷଣା କଲେ। ଅଷ୍ଟମ ଶତାବ୍ଦୀର ଶେଷ ଆଡ଼କୁ ମାଳବରେ ପିଣ୍ଡାରିମାନଙ୍କ ଉତ୍ପାତ ବଢିବାରେ ଲାଗିଲା। ଇଂରେଜମାନେ ଖ୍ରୀ ୧୮୧୭ରେ ପିଣ୍ଡାରିମାନଙ୍କ ସହିତ ଯୁଦ୍ଧ କରିବାକୁ ଭୋପାଳ ରାଜ୍ୟର ସାହାଯ୍ୟ ଲୋଡ଼ିଲେ । ଭୋପାଳ ଖ୍ରୀ ୧୮୧୮ରେ ଇଷ୍ଟ ଇଣ୍ଡିଆ କମ୍ପାନୀ ସହିତ ସନ୍ଧି କଲା। ସେମାନେ ଭୋପାଳର ଅବିଭକ୍ତତାର ପ୍ରତିଶ୍ରୁତି ଦେଲେ ଓ ଏହାପରେ ରାଜ୍ୟର ପ୍ରତିଷ୍ଠା ବଢ଼ିବାକୁ ଲାଗିଲା। ଖ୍ରୀ ୧୮୪୪ ଠାରୁ ୧୯୨୬ ପର୍ଯ୍ୟନ୍ତ ଲଗାତର ୩ଜଣ ବେଗମ ରାଜ୍ୟ ଶାସନ ଦାୟିତ୍ୱ ତୁଲାଇଥିଲେ। ଭୋପାଳର ଶେଷ ନବାବ ସାର ହମିଦୁଲ୍ଲା ଖାଁ ଖ୍ରୀ ୧୯୨୬ ରେ ତାଙ୍କ ମାତା ବେଗମ ତାଙ୍କ ସପକ୍ଷରେ ମେ ୧୭ ତାରିଖରେ ପଦତ୍ୟାଗ କରିବାରୁ ସିଂହାସନ ଆରୋହଣ କଲେ। ତାଙ୍କର ଜନ୍ମ ଖ୍ରୀ ୧୮୯୪ରେ। ସେ ଆଲିଗଡ଼ ମୁସଲିମ ବିଶ୍ୱ ବିଦ୍ୟାଳୟରୁ ସ୍ନାତକ ଡ଼ିଗ୍ରୀ ହାସଲ କରିଥିଲେ। ଭାରତବର୍ଷରେ ୧୯ତୋପ ସଲାମି ପାଇବାକୁ ହକଦାର ଛଅଜଣ ନରପତିଙ୍କ ମଧ୍ୟରୁ ଭୋପାଳର ନବାବ ଜଣେ। ଭୋପାଳର କ୍ଷେତ୍ରଫଳ ୬୯୨୪ ବର୍ଗମାଇଲ। ଲୋକସଂଖ୍ୟା ୭ଲକ୍ଷ ୩୦ ହଜାର ଓ ଏହାର ବାର୍ଷିକ ଆୟ ପ୍ରାୟ ୮୦ ଲକ୍ଷ। ନରେନ୍ଦ୍ର ମଣ୍ଡଳର ଭୋପାଳର ନବାବ ଜଣେ ବରିଷ୍ଠ ସଭ୍ୟ ଥିଲେ। ୧୯୪୪ରୁ କ୍ରମାଗତ ଖ୍ରୀ ୧୯୪୭ରେ ଦୁଇଥର ସେ ଏହାର ଅଧ୍ୟକ୍ଷ (ଚାନସେଲର) ଥିଲେ । ନିଜ ରାଜ୍ୟର କ୍ଷୁଦ୍ର ଆୟତନ ଓ ପ୍ରତିଷ୍ଠା ଦୃଢ଼ରୁ ଏହା ଅପ୍ରତ୍ୟାଶିତ ଥିଲା। ଭାରତ ସ୍ୱାଧିନ ହେବା ସମୟରେ ସେ ମଧ୍ୟ ଅଧ୍ୟକ୍ଷ ଥିଲେ। ମୁସଲିମଲିଗ ଓ ଜିନ୍ନାଙ୍କ ଦ୍ୱାରା ପ୍ରଭାବିତ ହେବା ପୂର୍ବରୁ ସେ ଜଣେ ପ୍ରଗତିବାଦୀ ବିଚାରଶୀଳ ଓ ପୋଖତ ନବାବ ଭାବରେ ସାମ୍ପ୍ରଦାୟିକତାର ଉର୍ଦ୍ଧ୍ୱରେ ଥିଲେ । ହାଇଦରାବାଦ ବା ଜୁନାଗଡ଼ ଭଳି ସେ ପାକିସ୍ଥାନ ସହିତ ମିଶ୍ରଣ ଚୁକ୍ତି କରିବାକୁ ପ୍ରସ୍ତୁତ ନଥିଲେ ମାତ୍ର ଭାରତ ପାକିସ୍ଥାନ ପରି ଦୁଇଟି ସ୍ୱୟଂ ସମ୍ପୂର୍ଣ୍ଣ ଉପନିବେଶ ପ୍ରତିଷ୍ଠା ହେବାବେଳେ ସେ ଭାରତୀୟ ଦେଶୀୟ ରାଜ୍ୟ ବା ସେମାନଙ୍କର ଗୋଷ୍ଠୀମାନଙ୍କୁ ଧରି ଏକ ତୃତୀୟ ଉପନିବେଶ ପ୍ରତିଷ୍ଠା ନିମିତ୍ତ ଉଦ୍ୟମ କରୁଥିଲେ। ଲର୍ଡ଼ ମାଉଣ୍ଟବେଟେନ ଭାରତକୁ ଆସିଲା ପରେ ନରେନ୍ଦ୍ର ମଣ୍ଡଳ ଅଧ୍ୟକ୍ଷ ଭାବରେ ସେ ତାଙ୍କୁ ସାକ୍ଷାତ କରିବା ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଥମ ଥିଲେ। ୭୫ ମିନିଟ୍ ଧରି ସେ ସାକ୍ଷାତ କଲେ। ଜୁନ ୧୯୪୮ ସୁଦ୍ଧା ଭାରତକୁ ଛାଡ଼ି ଇଂରେଜମାନେ ଚାଲି ଯିବାର ସେତେବେଳେ ବ୍ୟବସ୍ଥା ଥାଏ। ଏହି ସମୟ ସୀମା ବୃଦ୍ଧି ପାଇବ କି ବୋଲି ସେ ଜାଣିବାକୁ ଚାହିଁଲେ। ସେ ଉଗ୍ର କଂଗ୍ରେସ ବିରୋଧି ଓ ଜିନ୍ନାଙ୍କୁ ସେ ପ୍ରଭାବିତ କରିପାରିବେ ବୋଲି ମାଉଣ୍ଟବେଟେନଙ୍କୁ ଜଣାଇବାକୁ ଚାହୁଁଥିଲେ। ଯେଉଁ ରାଜା ମହାରାଜାମାନେ ସମ୍ବିଧାନ ସଭାରେ ଯୋଗଦାନ

କରିଥାଆନ୍ତି ଓ ଯେଉଁମାନେ ଭାରତ ଉପନିବେଶରେ ଯୋଗଦାନ କରିବାର ଇଚ୍ଛା କରିଥାଆନ୍ତି ସେମାନଙ୍କୁ ସେ କଂଗ୍ରେସର ପକେଟ୍‌ରେ ଅଛନ୍ତି ବୋଲି ବଦନାମ କଲେ । ଏହି କଥାବାର୍ତ୍ତା ଫଳରେ ଲର୍ଡ଼ ମାଉଣ୍ଟବେଟେନ ନରେନ୍ଦ୍ର ମଣ୍ଡଳରେ ମତଭେଦର ସ୍ପଷ୍ଟ ସୂଚନା ପାଇଲେ । ୧୯୪୭ ଅପ୍ରେଲ ୧୮ ତାରିଖରେ ନିଖିଳ ଭାରତ ରାଜ୍ୟ ପ୍ରଜା ସମ୍ମିଳନୀର ଗ୍ୱାଲିୟର ଅଧିବେଶନରେ ପଣ୍ଡିତ ନେହେରୁ ସଭାପତି ଥାଇ ଘୋଷଣା କଲେ ଯେ ଯେଉଁ ରାଜ୍ୟମାନେ ସମ୍ବିଧାନ ସଭାରେ ଯୋଗ ନ ଦେବେ ସେମାନେ ଶତ୍ରୁରାଜ୍ୟ ବୋଲି ବିବେଚିତ ହେବେ । ମହାତ୍ମାଗାନ୍ଧି ଭାଇସରୟଙ୍କୁ ଶୁଣାଇଲେ ଦେଶୀୟ ରାଜ୍ୟମାନେ ଇଂରେଜ ସରକାରଙ୍କର ସୃଷ୍ଟି । ସେମାନଙ୍କୁ ନିଜ ସପକ୍ଷରେ ସବୁ ସମୟରେ ରଖିବା ପାଇଁ ଇଂରେଜମାନେ ସାର୍ବଭୌମ ଶକ୍ତି ଭାବରେ ନିଜକୁ ଦାବି କରୁଥିଲେ । ନେହେରୁଙ୍କର ଧମକରେ ରାଜାମାନେ ଭୟଭୀତ ହୋଇ ପଡ଼ିଲେ । ମାଉଣ୍ଟବେଟେନ ମଧ୍ୟ ଇଂରେଜ ସରକାର କୌଣସି ତୃତୀୟ ସ୍ୱୟଂ ଶାସିତ ଉପନିବେଶ ସୃଷ୍ଟିର ସୁଯୋଗ ଦେବେନାହିଁ ଏହା ସ୍ପଷ୍ଟ କରିଦେଲେ । ଫଳରେ ଏହା ନବାବ ହମିଦୁଲ୍ଲା ଖାଁଙ୍କର ମନୋବଳ ଭାଙ୍ଗି ଦେଲା ।

ଭୋପାଳ ନବାବଙ୍କ ଯୁକ୍ତି ଥିଲା ଅବିଭକ୍ତ ଭାରତ ହିନ୍ଦୁ ମୁସଲମାନ ଦୁଇ ଭିନ୍ନ ଜାତି, ଏହି ଯୁକ୍ତିରେ ଦ୍ୱିଖଣ୍ଡିତ ହେଉଛି । ତେଣୁ ତାଙ୍କ ମୁସଲିମ ରାଜ୍ୟ ପାକିସ୍ଥାନରେ ଯୋଗ ଦେବାର କୌଣସି ବାଧା ନାହିଁ । ରାଜ୍ୟ ମୁଖ୍ୟ ମୁସଲମାନ ଥିଲେ ମଧ୍ୟ ଓ ମୁସଲମାନମାନେ କେବଳ ଭୋପାଳ ଓ ଏହାର ନିକଟବର୍ତ୍ତୀ ଅଞ୍ଚଳରେ ବାସ କରୁଥିବାରୁ ଏହି ଯୁକ୍ତି ଅବାନ୍ତର ଥିଲା । ପାକିସ୍ଥାନରେ ମିଶିବା ସମ୍ଭବ ନ ହେଲେ ତୃତୀୟ ଉପନିବେଶ ଗଢ଼ିବା ତାଙ୍କର ଉଦ୍ଦେଶ୍ୟ ଥିଲା । ତାହା ମଧ୍ୟ ସମ୍ଭବ ନୁହେଁ ବୋଲି ରୋକଠୋକ ଭାବେ ତାଙ୍କୁ ମାଉଣ୍ଟବେଟେନ ଜଣାଇଦେଲେ । ନାନା ପ୍ରକାର କୌଶଳ ବ୍ୟବହାର କରି ଭାରତରୁ ଅଲଗା ରହିବା ଉଦ୍ୟମରେ ବିଫଳ ଭୋପାଳର ନବାବ ଭାରତର କେନ୍ଦ୍ରସ୍ଥଳ ମଧ୍ୟରେ ଅବସ୍ଥିତ ହିନ୍ଦୁ ରାଜ୍ୟ ଓ ଲୋକସଂଖ୍ୟା ହେତୁ ମଧ୍ୟ ଭାଗରେ ନିଜର ଦୁର୍ବଳ ସ୍ଥିତି ବୁଝି ପାରିଲେ । ଫେଡ଼େରାଲ କୋର୍ଟର ଜଣେ ପୁରାତନ ଜଜ୍ ମହମ୍ମଦ ଜଫରୁଲ୍ଲା ଖାଁଙ୍କୁ ସେ ନିଜ ଦେୱାନ କରି ଆଣିଲେ । ଜଫରୁଲ୍ଲା ଅତିଶୟ ଚତୁର ଥିଲେ ଓ ସେ ଭୋପାଳ ଏକୁଟିଆ ରହିବାର ସମ୍ଭାବନା ନବାବଙ୍କ ମନରୁ ଦୂର କରିଦେଲେ । ମାଉଣ୍ଟବେଟେନ ତାଙ୍କୁ ଜଣାଇଲେ ଯେ ଅଗଷ୍ଟ ୧୫ ମଧ୍ୟରେ ସେ ମିଶ୍ରଣଚୁକ୍ତି ସ୍ୱାକ୍ଷର ନ କଲେ ପରବର୍ତ୍ତୀ କାଳରେ ସର୍ଦ୍ଦାର ପଟେଲ ତାଙ୍କ ପ୍ରତି କଠୋର ହେବେ ଓ ନିଜ ସ୍ୱାର୍ଥ ଦୃଷ୍ଟିରୁ ସେ ଏହା କରିବା ଦରକାର । ମୁସ୍‌ଲିମ ଲିଗ ଓ ଜିନ୍ନାଙ୍କର ଭାରତରେ ଭରସା ହରାଇ ହମିଦୁଲ୍ଲା ଖାଁ

ଶେଷରେ ଅନନୋପାୟ ହୋଇ ମିଶ୍ରଣ ଚୁକ୍ତିରେ ଦସ୍ତଖତ କଲେ, ମାତ୍ର ନିଜ ସମ୍ମାନ ବଞ୍ଚାଇବା ପାଇ ଏଥିରେ ଗୋଟିଏ ସର୍ତ୍ତ ରଖିଲେ ଯେ ଏହି ମିଶ୍ରଣ ଚୁକ୍ତି ଭାରତ ସ୍ୱାଧିନ ହେବା ତାରିଖ ୧୯୪୭ ମସିହାଁ ୧୫ ଅଗଷ୍ଟରୁ ଦଶଦିନ ପର୍ଯ୍ୟନ୍ତ ଗୁପ୍ତ ରଖାଯିବ। ପଟେଲ ତାଙ୍କର ଏହି ପ୍ରାର୍ଥନା ମଞ୍ଜୁର କଲେ। ଶେଷରେ ସେ ସର୍ଦ୍ଦାର ପଟେଲଙ୍କୁ ଲେଖିଲେ ମୋର ରାଜ୍ୟର ସ୍ୱାଧିନ ସ୍ଥିତି ରକ୍ଷା କରିବାକୁ ମୁଁ ସବୁ ପ୍ରକାର ଉଦ୍ୟମ କରି ଆସିଛି। ଶେଷରେ ମୁଁ ପରାଜୟ ସ୍ୱୀକାର କରୁଛି। ମୋର ବିଶ୍ୱାସ ଆପଣ ଦେଖିବେ ମୁଁ ଶତ୍ରୁ ଭାବରେ ଯେପରି ଅପ୍ରତିହତ ଥିଲି, ବର୍ତ୍ତମାନ ମିତ୍ର ଭାବରେ ସେହିପରି ଅଦମ୍ୟ ଉତ୍ସାହରେ କାମ କରିବି। ଉଦାରମନା ସର୍ଦ୍ଦାର ପଟେଲ ଉତ୍ତରରେ ତାଙ୍କୁ ଜଣାଇଲେ 'ଅନ୍ୟ ରାଜ୍ୟମାନଙ୍କର ମିଶ୍ରଣ ଚୁକ୍ତି ପରି ତାଙ୍କ ମିଶ୍ରଣକୁ ସେ ଗ୍ରହଣ କରୁଛନ୍ତି। ଏହି ରଙ୍ଗମଞ୍ଚରେ କାହାର ଜୟ ବା ପରାଜୟର ପ୍ରଶ୍ନ ଉଠୁନାହିଁ। ସଂଗ୍ରାମର ଶେଷରେ ଐତିହ୍ୟ ଓ ଆବଶ୍ୟକତା ହିଁ ତିଷ୍ଠି ପାରିଛି। ଆମ୍ଭେମାନେ ନିଜ ନିଜର ସମର୍ପିତ ଦାୟିତ୍ୱ କେବଳ ଏ ପର୍ଯ୍ୟନ୍ତ କରିଆସିଅଛୁ।' ମିଶ୍ରଣ ପରେ ଭୋପାଳ ଏକ ଚିଫ କମିଶନର ରାଜ୍ୟ ରୂପେ ରଖାଗଲା। ନବାବଙ୍କର ହାତପାଣ୍ଠି ୧୧ଲକ୍ଷ ଟଙ୍କା ନିର୍ଦ୍ଧାରିତ ହେଲା ଓ ଏଥିରୁ ୧ଲକ୍ଷ ତାଙ୍କ ଉତ୍ତରାଧିକାରୀ କନ୍ୟାଙ୍କ ନିମିତ୍ତ ଅଲଗା ରଖାଯାଇଥିଲା। ନବାବ ନିଜର ମାଆ ଭୋପାଳର ବେଗମଙ୍କୁ ତାଙ୍କ ରକ୍ଷଣାବେକ୍ଷଣ ନିମିତ୍ତ ଅନେକ ଗୁଡ଼ିଏ ଗାଁ ଜାଗିର ଦେଇଥିଲେ। ଯାହାକୁ ମିଶ୍ରଣ ପୂର୍ବରୁ ସେ ନିଜେ ଖାରଜ କରି ଦେଇଥିଲେ।

ଭୋପାଳ ରାଜ୍ୟର ମୁସଲିମାନ ମାନେ ରାଜଧାନୀର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ କେବଳ ରହୁଥିଲେ। ସେମାନଙ୍କୁ ସୁରକ୍ଷା ଦେବା ଆବଶ୍ୟକ ହେଉଥିଲା। ଭୋପାଳର ସୈନ୍ୟବାହିନୀରେ ମୁଖ୍ୟତଃ ପାକିସ୍ତାନି ମୁସଲିମ ମାନେ ରହୁଥିଲେ। ଭୋପାଳ ରାଜ୍ୟର ବିଭିନ୍ନ ଚାକିରୀରେ ବିଶେଷ କରି ପୋଲିସରେ ସେମିତି ମୁସଲମାନମାନେ ଅଧିକ ସଂଖ୍ୟାରେ ଥିଲେ। ରାଜ୍ୟର ସଂଖ୍ୟାଧିକ ହିନ୍ଦୁ ପ୍ରଜାଙ୍କର ଏଥିରେ ସାମାନ୍ୟ ଭାଗ ଥିଲା। ଭୋପାଳକୁ ଚିଫ କମିଶନର ପ୍ରଦେଶ କରି ଶାସନ କରିବା ମୂଳରେ ଏହି ସମସ୍ତ ସମସ୍ୟାର ସମାଧାନ ଲକ୍ଷ୍ୟ ଥିଲା। ପରେ ରାଜ୍ୟ ସୀମା ପୁର୍ନଗଠନ କମିଶନ ନିଷ୍ପତ୍ତି ଅନୁସାରେ ମଧ୍ୟଭାରତ ବିନ୍ଧ୍ୟ ପ୍ରଦେଶ ମିଶିଗଲା ଓ ଭୋପାଳ 'ସି' ଶ୍ରେଣୀ ରାଜ୍ୟଥାଇ ଏଥିରେ ମିଶି ମଧ୍ୟପ୍ରଦେଶର ରାଜଧାନୀ ହେବାର ଗୌରବ ଅର୍ଜନ କଲା। ପରବର୍ତ୍ତୀ କାଳରେ ଭାରତର ରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମା ଭୋପାଳର ମୁଖ୍ୟମନ୍ତ୍ରୀ ଥିବା ସମୟରେ ଏ ଦିଗରେ ସଫଳ ଉଦ୍ୟମ କରିଥିଲେ। ଭୋପାଳର ସାମାଜିକ ଜୀବନ ଭାରତ ବିଭାଜନ ସମୟର ତିକ୍ତତାକୁ ବାଦ

ଦେଲେ ଅନ୍ୟ ସମୟରେ ଧର୍ମ ନିରପେକ୍ଷ ଓ ବିଚାରଶୀଳ ଚିନ୍ତାଧାରା ଦ୍ୱାରା ପରିଚାଳିତ ହେଉଥିଲା । ହିନ୍ଦୁ ମୁସଲମାନ ସଂସ୍କୃତିର ସମନ୍ୱୟରେ ଭୋପାଳ ଆଲାମ ମହମଦଇକବଲ ଓ ସାର ସୟଦ ଅହମ୍ମଦ ଖାଁଙ୍କର ନାତି ସାର ସୟଦ ରସ ମାସୁଦଙ୍କୁ ସ୍ଥାନ ଦେଇଥିଲା । ଐତିହାସିକ କୀର୍ତ୍ତି ପରମ୍ପରାଯୁକ୍ତ ଭୋଜନାଳୟ ହୋଟେଲ ନୂରଉସ ସିକନ୍ଦର ହଫିଜ ଖାଁ ଓ ଜେହାନ ନୁରମ୍ମ ଏବେ ମଧ୍ୟ ଅନୁପମ ପାକ୍ ବିଧି ନିମିତ୍ତ ସୁଖ୍ୟାତି ରଖିଅଛି । ନିକଟରେ ଭୋପାଳର ଘୋର ଘନ ଜଙ୍ଗଲ ଓ ଏଥିରେ ଥିବା ବିଭିନ୍ନ ପ୍ରଜାତିର ବନ୍ୟଜନ୍ତୁ ବହୁ ପରିମାଣରେ ହ୍ରାସ ପାଇଅଛନ୍ତି ।

ଭାରତର ସ୍ୱାଧିନତା ପ୍ରାପ୍ତି ସମୟରେ ନିଜର ଅପକୀର୍ତ୍ତି ନିମିତ୍ତ ଖଳନାୟକ ଭୂମିକାରେ ଅଂଶଗ୍ରହଣକରି ୧୯୬୦ ମସିହାରେ ସାର ହମିଦୁଲ୍ଲା ଖାଁ ପ୍ରାଣ ତ୍ୟାଗ କଲେ ।





*ମହାରାଜା ସାର୍ ପ୍ରତାପ ସିଂହ ଗାଇକୋବାଡ*
*(୧୯୦୮-୧୯୬୮)*

## ମେଜର ଜେନେରାଲ ଫରନ୍ଦାଜ-
## ଇ-ଖାସ୍-ଇ-ଦୌଲାତ-ଇ-ଇଙ୍ଗଲିଶିଆ
# ସାର ପ୍ରତାପସିଂହ ଗାଇକୋବାଡ୍,
## ସେନା ଖାନ ଖେଲ ସାମଶେର ବାହାଦୁର
## ବରୋଦା ମହାରାଜା

ମହାରାଜା ପ୍ରତାପସିଂହ ଗାଇକୋବାଡଙ୍କ ପରି ଭାରତର ଅନ୍ୟ କୌଣସି ନରପତି ଏପରି ଐତିହାସିକ ପରମ୍ପରା, ପ୍ରାକୃତିକ ସମ୍ପଦ ଓ ଅର୍ଥବିଭବ ସହିତ ଏକ ସୁଶାସିତ ରାଜ୍ୟର ଉତ୍ତରାଧିକାରୀ ହୋଇ ନଥିଲେ। ଗାଇକୋବାଡ୍ ପେଶବାଙ୍କର ଗୋଟିଏ ଅଂଶ ଥିଲେ। ଗାଇକୋବାଡ୍ ସହିତ ସେମାନଙ୍କର ସମ୍ପର୍କ ଖ୍ରୀ ୧୮୧୫ରୁ ଛିନ୍ନ ହୋଇଥିଲା। ଗାଇକୋବାଡ୍, ପେଶବାଙ୍କ ପରି ଇଂରେଜମାନଙ୍କ ସହିତ ସନ୍ଧି କରି ସେମାନଙ୍କର ସହଯୋଗ ଓ ସଦିଚ୍ଛା ଲାଭ କରିବାରେ ସକ୍ଷମ ହୋଇଥିଲେ।

ସାର ପ୍ରତାପସିଂହ, ତାଙ୍କ ପିତାମହ ସାର ସାୟାଜି ରାଓଙ୍କ ପରେ ୧୯୩୯ ମସିହାରେ ଗାଦିରେ ବସିଲେ। ସାୟଜିରାଓ ଦୀର୍ଘ ୫୮ ବର୍ଷ ରାଜତ୍ୱ କରିଥିଲେ। ୧୮୭୭ ମସିହାରେ ଇଂରେଜ ସରକାର ତାଙ୍କୁ ଫରନ୍ଦାଜ-ଇ-ଖାସ-ଇ ଦୌଲତ-ଇ-ଇଙ୍ଗିଲିଶିଆ ଉପାଧି ପ୍ରଦାନ କରିଥିଲେ। ଦୀର୍ଘ ରାଜତ୍ୱ କାଳରେ ଅନେକ ସୁଯୋଗ୍ୟ ଦେଓ୍ୱାନ ନିଯୁକ୍ତ କରି ସେ ରାଜ୍ୟର ଉନ୍ନତି ଓ ସମୃଦ୍ଧିରେ ସକ୍ଷମ ହୋଇଥିଲେ। ରାଜ୍ୟର ବିକାଶ ସବୁ କ୍ଷେତ୍ରରେ ଉଲ୍ଲେଖନୀୟ ଥିଲା। ସେ ସମୟରେ ବରୋଦା ରାଜ୍ୟର ଆୟତନ ୮୨୩୬ ବର୍ଗମାଇଲ ଓ ହାରାହାରି ବାର୍ଷିକ ଆୟ ସାତକୋଟି ଥିଲା।

ସାର ପ୍ରତାପସିଂହ ରାଜ୍ୟର ଉନ୍ନତ ଶାସନ ବ୍ୟବସ୍ଥା, ବିକାଶମୂଳକ କାର୍ଯ୍ୟକ୍ରମ ଓ ସାମାଜିକ ପରମ୍ପରା ପ୍ରଥମ କେତେ ବର୍ଷ, ପୂର୍ବ ଶାସନର ଅନୁକରଣରେ ରଖି ରାଜପଣ କଲେ। ମାତ୍ର ପ୍ରାୟ ୩/୪ବର୍ଷ ପରେ ଅନେକ ଖଳ ପ୍ରକୃତିର ଲୋକଙ୍କ କବଳରେ ପଡ଼ି ନିଜର ସତ୍ତା ହରାଇଲେ। ଖ୍ରୀ ୧୯୨୯ରେ ସେ କୋଲହାପୁର ରାଜବଂଶର ଘୋରପାଡ଼େ ପରିବାରର ଶାନ୍ତାଦେବୀଙ୍କୁ ବିବାହ କରିଥିଲେ। ସେମାନଙ୍କର ଆଠ ଗୋଟି ସନ୍ତାନ ଥିଲେ। ମାନ୍ଦ୍ରାଜ ପ୍ରଦେଶର ଜଣେ ଜମିଦାରଙ୍କର ସୀତା ଦେବୀ ନାମରେ ଜଣେ କନ୍ୟା ଥିଲେ। ସେ ବିବାହିତ ଥିଲେ ଓ ୧୯୩୩ର ଏହି ବିବାହ ପରେ ତାଙ୍କର ଗୋଟିଏ ପୁତ୍ର ଜନ୍ମିଥିଲା।

୧୯୪୩ ଅକ୍ଟୋବର ମାସରେ ସୀତାଦେବୀ ହିନ୍ଦୁଧର୍ମ ପରିତ୍ୟାଗ କରି ଇସଲାମରେ ଦୀକ୍ଷିତ ହେଲେ। ଏହି ଧର୍ମାନ୍ତର ଫଳରେ ତାଙ୍କ ପୂର୍ବର ବିବାହ ଖାରଜ (dissolved) ହେଲା ବୋଲି ସେ ଏକ ଅଦାଲତରୁ ହୁକୁମନାମା ଆଣିଲେ। ସେହିବର୍ଷ ଡିସେମ୍ବର ୨୬ରୁ ୩୧ ତାରିଖ ମଧ୍ୟରେ ସୀତା ଦେବୀ ଆର୍ଯ୍ୟ ସମାଜ ମତରେ ଇସଲାମ ଧର୍ମ ପରିତ୍ୟାଗ କରି ପୁନର୍ବାର ହିନ୍ଦୁ ଧର୍ମ ଗ୍ରହଣ କଲେ। ଏହାପରେ ସେ ମହରାଜା ପ୍ରତାପସିଂହକୁ ବିବାହ କଲେ। ତାଙ୍କ ବିବାହକୁ ନିଜ ରାଜ୍ୟରେ ଆଇନ ସମ୍ମତ କରିବାକୁ ମହାରାଜା ପ୍ରତାପସିଂହ ରାଜ୍ୟରେ ପ୍ରଚଳିତ ଦ୍ୱିବିବାହ (Brigamy) ଆଇନ୍ ସଂଶୋଧନ କଲେ। ଆଇନ୍‌ରେ ବ୍ୟବସ୍ଥା ଖଞ୍ଜାଗଲା ଯେ ପ୍ରଚଳିତ ଏହି ଆଇନର କୌଣସି ବ୍ୟବସ୍ଥା ରାଜ୍ୟର ମହାମହିମ ମହାରାଜାଙ୍କ ପ୍ରତି ପ୍ରଯୁଜ୍ୟ ହେବନାହିଁ। ମାତ୍ର ଯେପରି ଭାବରେ ବିବାହିତ ସୀତାଦେବୀଙ୍କୁ ସେ ବିବାହ କଲେ ତାହା ରାଜ୍ୟ ପ୍ରଜାମାନଙ୍କ ମଧ୍ୟରେ ତୀବ୍ର ବିରୋଧ ପ୍ରତିକ୍ରିୟା ସୃଷ୍ଟିକଲା। ଭାରତ ବା ବ୍ରିଟିଶ ସରକାର କେହି ଏହି ବିବାହକୁ ସ୍ୱୀକୃତି ଦେଲେନାହିଁ। ଏହାପରେ ମହାରାଜା ପ୍ରତାପସିଂହ ଗୋଟିଏ ପରେ ଗୋଟିଏ ରାଜ୍ୟ ଓ

ଜନ ବିରୋଧି କାର୍ଯ୍ୟ କରିବାରେ ଲାଗିଲେ। ତାଙ୍କର ବ୍ୟକ୍ତିଗତ ହାତପାଣ୍ଠି ବାର୍ଷିକ ୨୩ଲକ୍ଷ ଟଙ୍କା ଥିଲା। ଖ୍ରୀ ୧୯୪୪ରେ ଏହାକୁ ୫୦ଲକ୍ଷକୁ ବଢ଼ାଇ ଦେଲେ। ପୂର୍ବ ପରମ୍ପରା ଭଙ୍ଗ କରି ସେ ରାଜକୋଷରୁ ଅର୍ଥ ନିଜେ ଆଗତୁରା ନିଜ ପାଇଁ ନେବାକୁ ଲାଗିଲେ। ଏହାପରେ ଅବଶ୍ୟ ୧୯୪୭ ମସିହାରେ ଭାରତରେ ସମ୍ବିଧାନ ସଭା ଗଠିତ ହେବାଉତ୍ତାରେ ସେ ପ୍ରଥମ ରାଜ୍ୟ ଭାବରେ ଏଠାକୁ ନିଜ ପ୍ରତିନିଧି ପଠାଇ ନିଜ ଦୂରଦୃଷ୍ଟିର ପରିଚୟ ଦେଲେ। ଭାରତର ଅନ୍ୟ ରାଜାମାନଙ୍କୁ ସ୍ୱାଧିନ ଭାରତ ସହିତ ମିଶ୍ରଣ ବିଶିଷ୍ଟ ଚୁକ୍ତି (accssion) ସ୍ୱାକ୍ଷର କରିବାକୁ ପ୍ରବର୍ତ୍ତାଇ ନିଜ ଦେଶପ୍ରେମର ପରିଚୟ ଦେଲେ। ମାତ୍ର ତାଙ୍କ ନିନ୍ଦନୀୟ ବ୍ୟକ୍ତିଗତ ଆଚରଣ ଯୋଗୁ ଏସବୁ ପ୍ରଚାରିତ ଓ ପ୍ରଶଂସିତ ହେଲାନାହିଁ।

୧୯୪୭ ସେପ୍ଟେମ୍ବରରେ କାଥିଆବାଡ଼ ରାଜ୍ୟ ପୁଞ୍ଜ ନିଜର ଏକ ୟୁନିୟନ ଗଠନ ନିମିତ୍ତ ଉଦ୍ୟମ କରୁଥିବା ବେଳେ ଓ ଜୁନାଗଡ଼ ନବାବ ପାକିସ୍ତାନ ସହିତ ମିଶ୍ରଣ ଚୁକ୍ତି କରିବା ବେଳେ ତାଙ୍କଠାରୁ ଆଶାକରାଯାଉଥିବା ସାହାଯ୍ୟ ଭାରତ ସରକାରଙ୍କୁ ମିଳିଲାନାହିଁ। ଅଧିକନ୍ତୁ ଅନେକ ଗୁଡ଼ିଏ ବିରକ୍ତିକର ସର୍ତ୍ତ ଉଠାଇ ସେ ସର୍ଦ୍ଦାର ପଟେଲଙ୍କୁ ତାଙ୍କ ପ୍ରତି ବିମୁଖ କରାଇଲେ। ଭାରତ ସ୍ୱାଧିନ ହେବା ପରେ ନିଜ ରାଜ୍ୟରେ ପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠା କରିବା ଅବଶ୍ୟମ୍ଭାବୀ ଥିଲା। ଭାରତ ସରକାରଙ୍କର ସଚିବ ଭି.ପି.ମେନନ ତାଙ୍କ ସହିତ ଏ ବିଷୟରେ ବମ୍ବେରେ ଆଲୋଚନା କଲେ। ତାଙ୍କ ସହିତ ରାଜ୍ୟ କଂଗ୍ରେସ ତରଫରୁ ଦରବାର ଗୋପଳଦାସ ପ୍ରତିନିଧିତ୍ୱ କରୁଥିଲେ। ପ୍ରତାପସିଂହ ରାଜ୍ୟରେ ଗୋଟିଏ ସମ୍ବିଧାନ ସଭା ଗଠନ ଓ ଏହି ସଭା ରାଜ୍ୟର ବ୍ୟବସ୍ଥା ସଭା ହେବାକୁ ରାଜି ହେଲେ ମାତ୍ର ଏହି ସଭାର ରାଜ୍ୟମୁଖ୍ୟଙ୍କର ଘରୋଇ ହାତପାଣ୍ଠି, ସଭା ଡ଼କାଯିବା ଓ ଭଙ୍ଗାଯିବା ସମ୍ବନ୍ଧରେ କିଛି ଦାୟିତ୍ୱ ନଥିଲା । ବ୍ୟବସ୍ଥା ସଭାକୁ ଉତ୍ତରଦାୟୀ ଥାଇ ଏକ ଅସ୍ଥାୟୀ ମନ୍ତ୍ରୀ ମଣ୍ଡଳ ସୃଷ୍ଟି ନିମିତ୍ତ ଗାଇକୋବାଡ଼ ରାଜି ହେଲେ, ମାତ୍ର ଏହା କାର୍ଯ୍ୟକାରୀ କରିବାକୁ ସେ ୪ମାସ ସମୟ ନେଲେ। ସେ ସର୍ଦ୍ଦାର ପଟେଲଙ୍କ ଆଗରେ ତାଙ୍କ ଦେଶୀୟ ରାଜ୍ୟ ମନ୍ତ୍ରଣାଳୟ ତାଙ୍କୁ ତାଙ୍କ ମତାମତ ପ୍ରକାଶରେ ସୁଯୋଗ ଦେଉନାହିଁ ବୋଲି ଅଭିଯୋଗ କଲେ। ମାତ୍ର ସର୍ଦ୍ଦାର ପଟେଲ ତାଙ୍କୁ ରାଜ୍ୟରେ ଶାସନ ସଂସ୍କାର ତ୍ୱରାନ୍ୱିତ କରିବାକୁ ପରାମର୍ଶ ଦେଲେ। ଏହା ପରେ ସେ ଡକ୍ଟର ଯୁବରାଜ ମେହେଟାଙ୍କୁ ଦେୱାନ ଭାବେ ନିଯୁକ୍ତି କଲେ ମାତ୍ର ଅନ୍ୟ ମନ୍ତ୍ରୀମାନଙ୍କ ନାମ ଅନୁମୋଦନ ନ କରି ୧୯୪୮ ମଇ ମାସରେ ୟୁରୋପ ଯାତ୍ରା କଲେ। ବାରମ୍ବାର ଲେଖିଲେ ମଧ୍ୟ ସେ ଅନ୍ୟ ମନ୍ତ୍ରୀମାନଙ୍କ ନାମ ଅନୁମୋଦନ କରି

ପଠାଇଲେ ନାହିଁ। ଯୁବରାଜ ମେହେଟ୍ଟା ଦେଶର ଜଣେ ଖ୍ୟାତିସମ୍ପନ୍ନ ଚିକିତ୍ସକ ଓ ସମ୍ମାନନୀୟ କଂଗ୍ରେସ ନେତା ଥିଲେ। ନିଜ ଦାୟିତ୍ୱ ନେଇ ସେ ଦେଖିଲେ ବ୍ୟକ୍ତିଗତ ଖର୍ଚ୍ଚପାଇଁ ବହୁତ ଅର୍ଥ ମହାରାଜା ରାଜ୍ୟ ତହବିଲରୁ ନେଇଯାଇଛନ୍ତି ରାଜ୍ୟର ରତ୍ନଭଣ୍ଡାର ଇଚ୍ଛା ଅନୁସାରେ ବ୍ୟବହାର କରିଅଛନ୍ତି। ନୂତନ ମନ୍ତ୍ରୀମଣ୍ଡଳ କ୍ଷମତା ପାଇବାର ଅଳ୍ପ ଆଗରୁ ୧୯ଅପ୍ରେଲରେ ମହାରାଜା ପ୍ରତାପସିଂହ ହୁକୁମନାମା ଜାରି କଲେ ମହାମାନ୍ୟ ରାଜ୍ୟମୁଖ୍ୟଙ୍କୁ ଯେଉଁ ସବୁ ତସଲମତ (ଋଣ) ଦିଆଯାଇଥିବାର କାଗଜପତ୍ରରେ ଦେଖାଯାଉଛି ସେ ସବୁ ବ୍ୟୟ ହୋଇଥିବା ଦୃଷ୍ଟେ ତାକୁ ଆଦାୟ ଯୋଗ୍ୟ ଋଣ ହିସାବରୁ ବାଦ ଦିଆଯାଉ। ଏହାର ପରିମାଣ ୨୨୦ଲକ୍ଷ ଟଙ୍କା ଥିଲା। ମଇମାସ ୨୯ ତାରିଖରେ ସେ ରାଜ୍ୟ ଖଜଣା ଖାନାରୁ ୧୦୫ ଲକ୍ଷ ଟଙ୍କା ଉଠାଇ ନେଲେ। ସେଥିରୁ ବିନା ସୁଧରେ ୬୫ ଲକ୍ଷ ଟଙ୍କା ତାଙ୍କୁ ଅଗ୍ରୀମ ଦିଆଯିବ ଓ ଆଉ ୬୦ଲକ୍ଷ ନିକଟରେ ହେବାକୁଥିବା ତାଙ୍କ କନ୍ୟାର ବିବାହରେ ବ୍ୟୟ କରାଯିବ ବୋଲି ସଫେଇ ଦେଲେ। ଦେୱାନ ଯୁବରାଜ ମେହେଟ୍ଟା ବିଧାନସଭାର ୫୮ଜଣ ସଭ୍ୟଙ୍କ ଏକ ବୈଠକ ଡକାଇଲେ। ଯହିଁରେ ୫୦ ଜଣ ସଭ୍ୟ ଉପସ୍ଥିତ ହେଲେ, ସେମାନଙ୍କୁ ରାଜ୍ୟର ଆର୍ଥିକ ପରିସ୍ଥିତି ବୁଝାଇଦେଲେ। ମହାରାଜାଙ୍କ ବିଷୟରେ କୌଣସି ପ୍ରସ୍ତାବ ଗ୍ରହଣ ବ୍ୟବସ୍ଥା, ବିଧାନ ସଭାର କ୍ଷମତା ପରିସର ମଧ୍ୟରେ ନଥିବାରୁ ସଭ୍ୟମାନେ ଅଲଗା ଏକ ସଭା କଲେ। ଦେୱାନ ତାହାର ସଭାପତି ହେଲେ ମାତ୍ର ତାଙ୍କର ଭୋଟ ଅଧିକାର ନିରପେକ୍ଷତା ଦୃଷ୍ଟିରୁ ରହିଲା ନାହିଁ। ତିନିଜଣ ସରକାରୀ ସଭ୍ୟଙ୍କୁ ମଧ୍ୟ ବାଦ ଦିଆଗଲା। ସେମାନେ ଉକ୍ତ ସଭାରେ ପ୍ରସ୍ତାବ ଗ୍ରହଣ କଲେ ଯେ ମହାରାଜା ସାର ପ୍ରତାପସିଂହ ସେମାନଙ୍କର ବିଶ୍ୱାସ ହରାଇଅଛନ୍ତି। ରାଜ୍ୟ ଶାସନ ନିମିତ୍ତ ତାଙ୍କର ଦକ୍ଷତା ଓ ଯୋଗ୍ୟତା ସନ୍ଦେହାତ୍ମକ ଜଣାଯାଉଛି। ସେ ନିଜ ଜ୍ୟେଷ୍ଠପୁତ୍ର ସପକ୍ଷରେ ପଦତ୍ୟାଗ କରିବା ନିମିତ୍ତ ତାଙ୍କୁ କୁହାଗଲା। ଭାରତ ସରକାରଙ୍କୁ ମହାରାଜ କୁମାରଙ୍କର ନାବାଳକ ଥିବା ଅବସ୍ଥାରେ ଶାସନ ପରିଚାଳନା ବ୍ୟବସ୍ଥା କରିବାକୁ ମଧ୍ୟ କୁହାଗଲା। ଅନ୍ୟ ଏକ ପ୍ରସ୍ତାବରେ ମହାରାଜା ରାଜକୋଷରୁ ସାଢ଼େ ୩ କୋଟି ଟଙ୍କା ଅପବ୍ୟୟ କରିଥିବାରୁ ଏହାର ତଦନ୍ତ କରି ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ନିମିତ୍ତ ଏକ କମିଟି ଗଠନ କରିବାକୁ ଭାରତ ସରକାରଙ୍କୁ ମଧ୍ୟ ଅନୁରୋଧ କରାଗଲା।

ମହାରାଜା ପ୍ରତାପସିଂହ ୟୁରୋପରେ ଥିବା ସମୟରେ ଏହି ପ୍ରସ୍ତାବମାନ ପାଇଲେ। ରାଜ୍ୟ ଜନମତ ତାଙ୍କ ବିରୋଧି ଅଛି ଏହା ମଧ୍ୟ ସେ ଜାଣିପାରିଲେ। ତେଣୁ ସେ ସତ୍ୱର ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କଲେ ଓ ସର୍ଦ୍ଦାର ପଟେଲଙ୍କ ସହିତ ସାକ୍ଷାତ କଲେ। ଏହି ସାକ୍ଷାତ

ସମୟରେ ରାଜ୍ୟ କଂଗ୍ରେସ ସଭାପତି ଓ ଦେୱାନ ମଧ୍ୟ ଉପସ୍ଥିତ ଥିଲେ। ଆଲୋଚନା ପରେ ମହାରାଜା ଅତି ଶୀଘ୍ର ବିନା ସର୍ତ୍ତରେ ସମ୍ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ପ୍ରବର୍ତ୍ତନ କରିବାକୁ ଓ ସେ ରାଜ୍ୟ ବାହାରେ ରହୁଥିବା ସମୟରେ ଦେୱାନ, ମହାରାଣୀ ଶାନ୍ତାଦେବୀ, ରାଜ୍ୟ ଆଇନମନ୍ତ୍ରୀଙ୍କୁ ନେଇ ଗଠିତ ଏକ କାଉନସିଲ ତାଙ୍କର କ୍ଷମତା ଉପଯୋଗ ନିମିତ୍ତ ସମ୍ମତି ପ୍ରଦାନ କଲେ। ରାଜ୍ୟ କୋଷାଗାରରୁ ନେଇଥିବା ଅର୍ଥ ଫେରାଇ ଦେବାକୁ ସେ ରାଜି ହେଲେ । ଆଉ ମଧ୍ୟ ନିଷ୍ପତ୍ତି ହେଲା ଯେ ଭାରତ ରାଜ୍ୟ ମନ୍ତ୍ରଣାଳୟ ଜଣେ ସ୍ୱତନ୍ତ୍ର ଅଫିସର ନିଯୁକ୍ତ କରିବେ ଯେ ତନ୍ନ ତନ୍ନ କରି ରାଜ୍ୟର ଅର୍ଥ କାରବାରମାନ ପରୀକ୍ଷା କରିବେ ଓ ରାଜ୍ୟ ଜହରତ ଖାନାରେ (ରତ୍ନ ଭଣ୍ଡାରରେ) ଗଚ୍ଛିତ ମୂଲ୍ୟବାନ ରତ୍ନ ଓ ଅଳଙ୍କାରର ଏକ ନିର୍ଭୁଲ ତାଲିକା ପ୍ରସ୍ତୁତ କରିବେ। ଏହି ସବୁ ନିଷ୍ପତ୍ତି ଏକ ଇସ୍ତାହାରରେ ସର୍ବସାଧାରଣଙ୍କୁ ଜଣାଇ ଦିଆଗଲା। ସେହି ଅନୁସାରେ ଭାରତ ସରକାର ଭାରତୀୟ ଅଡ଼ିଟ ଓ ଏକାଉଣ୍ଟ ସେବାର ଜଣେ ଅଫିସର ନିଯୁକ୍ତ କଲେ। ମାତ୍ର ତଦନ୍ତ କରିବାକୁ ମହାରାଜା ପ୍ରତାପସିଂହ ତାଙ୍କୁ ଆବଶ୍ୟକ ସହଯୋଗ କଲେନାହିଁ। ହିସାବର କାଗଜପତ୍ର ସେ ଦେଖାଇଲେ ନାହିଁ। ରତ୍ନଭଣ୍ଡାରର ତାଲିକା କରିବା ଆହୁରି କଷ୍ଟକର ଥିଲା। ଜୱାହରଖାନାରୁ ଅନେକ ରତ୍ନ ବାହାରକୁ ନିଆଯାଇଛି । ଅନେକ ରତ୍ନ ଖଚିତ ଅଳଙ୍କାରରୁ ରତ୍ନମାନ କାଢ଼ି ନିଆଯାଇଛି। ସେ ସ୍ଥାନରେ ନୂତନ ଅଳଙ୍କାର ଗଢ଼ାଯାଇଛି। ଦେଢ଼କୋଟି ଟଙ୍କାର ନୂଆ ଖରିଦ ମଧ୍ୟ ଜୱାହରଖାନା ହିସାବକୁ ଅଣାଯାଇନାହିଁ। ଆଇନ୍ ଖିଲାପ କରି ଅନେକ ଶ୍ରଦ୍ଧା ଉପହାର ମଧ୍ୟ ଭଣ୍ଡାରରୁ କାଢ଼ି ନିଆଯାଇଛି। ଭାରତ ସରକାର ସାମାନ୍ୟ ପରିବର୍ତ୍ତନ ସହିତ ସ୍ୱତନ୍ତ୍ର ଅଫିସରଙ୍କର ରିପୋର୍ଟ ଗ୍ରହଣ କଲେ। ମହାରାଜାଙ୍କ ତରଫରୁ ତାଙ୍କ ଆଇନ୍ ପରାମର୍ଶଦାତା ମଧ୍ୟ ସାମାନ୍ୟ ପରିବର୍ତ୍ତନ ସହ ଏହି ରିପୋର୍ଟ ଗ୍ରହଣ କଲେ। ରିପୋର୍ଟରୁ ରାଜ୍ୟର ଆତଙ୍କଜନକ ଆର୍ଥିକ ପରିସ୍ଥିତି ଦୃଷ୍ଟିକୁ ଆସିଲା। ୧୯୪୩ରୁ ୧୯୪୭ ମଧ୍ୟରେ ବାର୍ଷିକ ହାତପାଣ୍ଡି ୫୦ଲକ୍ଷ ଟଙ୍କା ବାଦ ମହାରାଜା ପ୍ରତାପସିଂହ ରାଜ୍ୟ ଇନଭେଷ୍ଟମେଣ୍ଟ ରିଜର୍ଭରୁ ୬କୋଟି ଟଙ୍କା ଉଠାଇ ନେଇଥିଲେ। ଅନେକ ମୂଲ୍ୟବାନ ରତ୍ନ ଅଳଙ୍କାର ମଧ୍ୟରେ ସାତସରି ହୀରାର ହାର ଯେଉଁଥିରେ ତିନିଗୋଟି ଅମୂଲ୍ୟ ରତ୍ନ ଦକ୍ଷିଣ ନକ୍ଷତ୍ର (Star of the South) ଇଉଜେନି ଓ ସାହି ଆକବର ଲାଗିଥିଲା ଓ ମୁକ୍ତାର କାର୍ପେଟ ଗାଲିଚା ଇଉରୋପକୁ ପଠାଯାଉଅଛି। ରାଜ୍ୟର ପରମ୍ପରା ଥିଲା ଏସବୁ ରତ୍ନ ଅଳଙ୍କାର କେବଳ ରାଜ ପରିବାରରେ ବିଶେଷ ଉତ୍ସବରେ ବ୍ୟବହାର ହେବ ଓ ତାହାପରେ ପୁଣି ରତ୍ନଭଣ୍ଡାରରେ ଜମା ଦିଆଯିବ।

ଖାଲି ବରୋଦା ନୁହେଁ ଅନ୍ୟ ଅନେକ ଦେଶୀୟ ରାଜ୍ୟରେ ମଧ ଏହି ପରମ୍ପରା ଅଲଂଘ୍ୟ ଥିଲା।

ରାଜ୍ୟ ମନ୍ତ୍ରୀମଣ୍ଡଳ ସହିତ ମହାରାଜା ପ୍ରତାପସିଂହ ସମ୍ପୂର୍ଣ୍ଣ ସହଯୋଗ କରୁ ନ ଥିଲେ। ଥରେ ରାଜ୍ୟ ମନ୍ତ୍ରଣାଳୟ ସଚିବ ଭି.ପି.ମେନନ ତାଙ୍କୁ ବୁଝାଇଦେଲେ ଯେ ଦାୟିତ୍ୱମୂଳକ ଜନ ପ୍ରତିନିଧି ଶାସନ ପ୍ରତିଷ୍ଠା ପରେ ସେ ନାମକୁ ମାତ୍ର ଶାସନ ମୁଖ୍ୟ ଅଛନ୍ତି। ବରୋଦା ରାଜ୍ୟ ଗୋଟିଏ ସମାନ ଅଂଶୀଦାର ଗଠିତ (Home geneous) ୟୁନିଟ ନୁହେଁ। ଗୁଜୁରାଟ ଓ କାଥିଆବାଡ଼ ରାଜ୍ୟର ଅଂଶମାନ ଏହି ରାଜ୍ୟ ମଧରେ ପଶିଯାଇଅଛି। ତାଙ୍କ ରାଜ୍ୟ ଏକ ଆର୍ଥିକ ଦୃଷ୍ଟିରୁ ବିକାଶ ନିମିତ୍ତ ସମର୍ଥ ରାଜ୍ୟ (Viable unit) ଭାବରେ ତିଷ୍ଠି ପାରିବ ମାତ୍ର ଯେହେତୁ ସେ ନିଜେ ମରହଟ୍ଟା ଓ ରାଜ୍ୟର ପ୍ରଜାମାନେ ବେଶି ଗୁଜୁରାଟୀ ଥିଲେ ଭବିଷ୍ୟତରେ ଏଥିପାଇଁ କିଛି ଅଘଟଣ ଘଟିପାରେ। ଏପରି ହେଲେ ତାଙ୍କୁ ହୁଏତ ବହୁତ ମୂଲ୍ୟ ଦେବାକୁ ପଡ଼ିପାରେ। ବରୋଦା ବମ୍ବେ ସହିତ ମିଶିଗଲେ ତାଙ୍କ ନିଜ ଆସନ ସୁଦୃଢ଼ ରହିବ। ନିଜ ବାର୍ଷିକ ହାତପାଣ୍ଠି, ନିଜର ଘରୋଇ ସମ୍ପତ୍ତି ଓ ସର୍ବସାଧାରଣରେ ତାଙ୍କ ପ୍ରାପ୍ୟ ସୁଖ୍ୟାତି ଓ ସୁବିଧା ସୁଯୋଗ ଅକ୍ଷୁର୍ଣ୍ଣ ରହିବ। ଏହା ସେ ବିବେଚନା କରି କିଛି ନିଷ୍ପତ୍ତି ଜଣାଇଲେ ନାହିଁ। ମାତ୍ର ଏହାର ଅଳ୍ପଦିନ ପରେ ସେ ଜଣାଇଦେଲେ ଯେ, ସର୍ଦ୍ଦାର ପଟେଲ ଓ ଭି.ପି.ମେନନ ଯେଉଁଦିନ ଚାହିଁବେ ସେହି ଦିନଠାରୁ ତାଙ୍କ ରାଜ୍ୟ ବମ୍ବେ ସହିତ ମିଶିଯିବାକୁ ସେ ସମ୍ମତି ଦେବେ। ଏହା ଭାରତ ସରକାରଙ୍କୁ ଚକିତ କଲା। ରାଜ୍ୟରେ ଖାଲି ମହାରାଜା ପ୍ରତାପସିଂହ ଭାରତ ସରକାରଙ୍କର ମୁଣ୍ଡବ୍ୟଥା କାରଣ ନଥିଲେ। ମନ୍ତ୍ରୀମଣ୍ଡଳର ସଭ୍ୟମାନେ ସମଷ୍ଟି ଭାବରେ ସହଯୋଗ ରଖି କାର୍ଯ୍ୟ କଲେ ନାହିଁ। ଅଭିଯୋଗ ଓ ପ୍ରତି ଅଭିଯୋଗ ସେମାନଙ୍କର ସମ୍ମାନ କ୍ଷୁର୍ଣ୍ଣ କଲା। ୧୯୪୯ ଜାନୁୟାରୀରେ ସର୍ଦ୍ଦାର ପଟେଲ ଏଥିରେ ବିବ୍ରତ ହୋଇ ବରୋଦା ଯିବାକୁ ଓ ସେଠାରେ ଥାଇ ବମ୍ବେ ସହିତ ମିଶ୍ରଣ ନିଷ୍ପତ୍ତି ଘୋଷଣା କରିବାକୁ ଠିକ୍ କଲେ। ତାଙ୍କ ଶାସନ ସଚିବ ମେନନ ମହାରାଜା ପ୍ରତାପସିଂହଙ୍କୁ ଏହା ଆଲୋଚନା ପାଇ ଦିଲ୍ଲୀ ଡ଼କେଇଲେ ସେ ମହାରାଣୀ ଶାନ୍ତା ଦେବୀଙ୍କ ପରାମର୍ଶ ନେଇ ନିଷ୍ପତ୍ତି ନେବାକୁ କହିବାରୁ ସେମାନେ ମହାରାଣୀଙ୍କୁ ବମ୍ବେରେ ସାକ୍ଷାତ କଲେ। ମହାରାଣୀ ବମ୍ବେ ସହିତ ବରୋଦାର ମିଶ୍ରଣର ବିରୋଧି ଥିଲେ। ତା'ପରେ ମହାରାଣୀ ବମ୍ବେରୁ ବରୋଦା ଚାଲିଗଲେ। ଏହାର କିଛି ଦିନ ପରେ ମହାରାଜା ତାଙ୍କର ଆଇନ୍ ପରମର୍ଶଦାତା କେକେ ସାହା ଓ ଶାସନ ସଚିବ ଭି.ପି.ମେନନ ବସି ବମ୍ବେ ସହିତ ମିଶ୍ରଣର ସୁବିଧା ଓ ଅସୁବିଧା ବିଚାର କଲେ। ବହୁ

ଆଲୋଚନା ପରେ ମହାରାଜା ନିଜର ମନ୍ତ୍ରୀମଣ୍ଡଳରୁ ଭବିଷ୍ୟତରେ ସେ ନ୍ୟାୟ ପାଇବା ଆଶା ନାହିଁ ଏହା ଆଶଙ୍କା କରି ବମ୍ବେ ସହିତ ମିଶ୍ରଣକୁ ରାଜି ହେଲେ। ତାଙ୍କ ହାତପାଣ୍ଠି ଘରୋଇ ସମ୍ପତ୍ତି ଆଦି ଅନ୍ୟାନ୍ୟ ସୁବିଧା ସେଥିରେ ସାଙ୍ଗେ ସାଙ୍ଗେ ଉଲ୍ଲେଖ କରାଯାଇପାରିଲାନାହିଁ। ଦିନେ ଦି'ଦିନ ପରେ ସର୍ଦ୍ଦାର ପଟେଲ ବରୋଦାରେ ଥିବାବେଳେ ମହାରାଜା ଯାଇ ତାଙ୍କୁ ସାକ୍ଷାତ କଲେ। ତାଙ୍କ ରହଣି ମଧ୍ୟରେ ବରୋଦାର ବମ୍ବେ ସହିତ ମିଶ୍ରଣର ଘୋଷଣା ନକରିବାକୁ ତାଙ୍କ ଠାରୁ ପ୍ରତିଶ୍ରୁତି ନେଲେ। ଏହାପରେ ସେ ନିଜ ମନ୍ତ୍ରୀମଣ୍ଡଳକୁ ଜଣାଇବାରୁ ସେମାନେ ଏହାକୁ ପୂର୍ଣ୍ଣ ସମର୍ଥନ ଦେଇ ୧୯୪୯ମସିହା ଜାନୁୟାରୀ ୨୮ ତାରିଖରେ ଏକ ପ୍ରସ୍ତାବ ଗ୍ରହଣ କଲେ ଓ ମହାରାଜା ଏକ ପ୍ରେସ ଇସ୍ତାହାର ଦ୍ୱାରା ଏହା ସର୍ବସାଧାରଣଙ୍କୁ ଜଣାଇ ଦେଲେ। ଏହାପରେ ନିଷ୍ପତ୍ତିର ସତ୍ୟତା ପ୍ରମାଣ ନିମିତ୍ତ ଦୃଢ଼ୀକରଣ ପତ୍ର (Confirmatory letter) ଭାରତ ସରକାର ଓ ମହରାଜାଙ୍କ ମଧ୍ୟରେ ଦିଆନିଆ ହେଲା । ତାଙ୍କ ହାତପାଣ୍ଠି ସାଢ଼େ ୨୬ ଲକ୍ଷ ଟଙ୍କାରେ ଧାର୍ଯ୍ୟ କରାଗଲା। ପୂର୍ବ ମହାରାଜା ସାୟାଜିରାତ ରାଜ୍ୟରେ କୋଟିଏ ଟଙ୍କାରେ ଦୁଇଟି ଟ୍ରଷ୍ଟ ଗଠନ ନିମିତ୍ତ ମୂଳପାଣ୍ଠି ଅଲଗା ରଖିବାକୁ ନିଷ୍ପତ୍ତି ନେଇଥିଲେ। ଏଥିରୁ ଗ୍ରାମାଞ୍ଚଳରେ ଲୋକହିତକର କାର୍ଯ୍ୟ ଓ ଶିକ୍ଷାର ପ୍ରସାର କରାଯିବ। ବରୋଦା ବିଶ୍ୱବିଦ୍ୟାଳୟ ମଧ୍ୟ ଏଥିରୁ ସାହାଯ୍ୟ ପାଇବ। ଟ୍ରଷ୍ଟ ଗଠନ ନିମିତ୍ତ ମହାରାଜା ମଧ୍ୟ ରାଜି ହେଲେ। ସେ ଯେଉଁସବୁ ଅର୍ଥ ରାଜକୋଷରୁ ଆଗତୁରା ନେଇ ଯାଇଛନ୍ତି ସେଥିରୁ କିଛି ଅଂଶ ଅନ୍ତତଃ ଫେରାଇବାକୁ, ରତ୍ନ ଭଣ୍ଡାରରୁ ୟୁରୋପକୁ ପଠାଯାଇଥିବା ରତ୍ନମାନ ଫେରାଇ ଆଣିବାକୁ ମଧ୍ୟ ସେ ସମ୍ମତ ହେଲେ। ମହାରାଜାଙ୍କର ଘରୋଇ ରତ୍ନର ସମ୍ପତ୍ତି ଓ ରାଜ୍ୟର ରତ୍ନ ଭଣ୍ଡାରର ରତ୍ନ ଓ ମୁକ୍ତା ଆଦିର ଅଲଗା ତାଲିକା ନିମିତ୍ତ ଉଭୟପକ୍ଷ ସମ୍ମତିରେ ନିଷ୍ପତ୍ତି ନିଆଗଲା। ତାଙ୍କର ବ୍ୟକ୍ତିଗତ ସମ୍ପତ୍ତି, କୋଠାବାଡ଼ି, ରତ୍ନ ଅଳଙ୍କାର ସମୂହ ବ୍ୟାଙ୍କ ପ୍ରତିଭୂତି କାଗଜ (cash securities) ଘୋଡ଼ା ଦଉଡ଼ରେ ତାଙ୍କର ଯାହା ସମ୍ପତ୍ତି ଭାରତବର୍ଷରେ ଓ ଅନ୍ୟତ୍ର ୟୁରୋପରେ ଅଛି ସେ ସବୁର ଏକ ତାଲିକା କରାଯିବ ଓ ଭବିଷ୍ୟତରେ ମହାରାଣୀ ରାଜସନ୍ତାନ ସନ୍ତତି ମାନଙ୍କର ହିତ ଦୃଷ୍ଟେ ତାଙ୍କୁ ଏହା ବରବାଦ କରିବାକୁ ସୁଯୋଗ ନଦେବାକୁ ଗୋଟିଏ ଟ୍ରଷ୍ଟ ଗଠନ କରାଯିବ। ୧୯୪୯ ମସିହା ମଇ ୧ ତାରିଖରେ ରାଜ୍ୟର ବମ୍ବେ ସହିତ ମିଶ୍ରଣ ହେଲା ଓ ସର୍ବସାଧାରଣ ସଭାରେ ମହାରାଜା ପ୍ରଜାମାନଙ୍କଠାରୁ ନିଜର ମେଲାଣି ନେଲେ। ମାତ୍ର ଚୁକ୍ତି ଅନୁସାରେ ସେ କୌଣସି ସର୍ତ୍ତ ପାଳନ କରିବାରେ ଆଗ୍ରହ ଦେଖାଇଲେ ନାହିଁ। ଗୋଆଲିୟର, କୋଲହାପୁର, ବରୋଦା

ଓ ଇନ୍ଦୋର ନରପତିମାନେ ମରହଟ୍ଟା ମହାରାଜାମାନଙ୍କ ମଧ୍ୟରେ ସମ୍ମାନନୀୟ । ୧୯୫୦ ଅଗଷ୍ଟ ମାସରେ ଗୋଆଲିୟର ଓ କୋଲହାପୁର ମହାରାଜାଙ୍କୁ ଧରି ମେନନ ବରୋଦା ଗଲେ । ବମ୍ବେର ଗୃହମନ୍ତ୍ରୀ ମୋରାଜି ଦେଶାଇ ସେମାନଙ୍କ ସହିତ ଯୋଗଦେଲେ । କୋଟିଏ ଟଙ୍କାର ଦୁଇଟି ଟ୍ରଷ୍ଟ ମହାରାଣୀ ଓ ପରିବାରର ସଦସ୍ୟ ମାନଙ୍କ ମଙ୍ଗଳ ନିମିତ୍ତ ଘରୋଇ ଟ୍ରଷ୍ଟ ସେହିଠାରେ ଗଢ଼ାଗଲା । ଘରୋଇ ସମ୍ପତ୍ତିର ତାଲିକା ମଧ୍ୟ ରଖାଗଲା । ଆଇନଗତ କାର୍ଯ୍ୟାନୁଷ୍ଠାନ ଚୂଡ଼ାନ୍ତ ସମୟ ସାପେକ୍ଷ ହେବ । ସେ ପର୍ଯ୍ୟନ୍ତ ଘରୋଇ ରତ୍ନ ଭଣ୍ଡାରର ଦାୟିତ୍ୱ ନେବା ଓ ଆର୍ଥିକ ପରିଚାଳନାରେ ମହାରାଜାଙ୍କୁ ପରାମର୍ଶ ଦେବାକୁ ସେ ନିଜେ ସଭାପତି ଥାଇ ତାଙ୍କ ଯୁବରାଜ ଓ କୋଲହାପୁର ମହାରାଜା ସଭ୍ୟ ଥାଇ ଗୋଟିଏ କମିଟି ଗଢ଼ାଯିବ । ପରିବାରର ହିତ ଦୃଷ୍ଟିରୁ ଏହା ଆବଶ୍ୟକ ବୋଲି ଗୋଆଲିୟର ଓ କୋଲହାପୁରର ମହାରାଜା ମତାମତ ପ୍ରକାଶ କଲେ । ସେମାନଙ୍କ ଉପସ୍ଥିତିରେ ମହାରାଜା ପ୍ରତାପସିଂହ ସବୁ ନିଷ୍ପତ୍ତି ଶୀଘ୍ର କାର୍ଯ୍ୟକାରୀ କରିବାକୁ ସମ୍ମତି ଦେଲେ ମାତ୍ର ସମସ୍ତେ ଚାଲିଯିବା ପରେ ସେ ପୁଣି କିଛି ନକରି ଚୁପ୍ ରହିଲେ । ବାରମ୍ବାର ତାଗିଦ୍ ସତ୍ତ୍ୱେ ସେ ରତ୍ନମାନ ଫେରାଇଲେ ନାହିଁ । ମେନନ ତାଙ୍କୁ ଭାରତ ସରକାର ଏହା ଫଳରେ କ୍ରୁଦ୍ଧ ହେବେ ବୋଲି କହିଲେ । ସେ ପାଞ୍ଚ ସପ୍ତାହ ସମୟ ମାଗିଲେ କାଳେ ଅନ୍ୟ ରତ୍ନମାନ ସେ ନେଇଯିବେ ରତ୍ନଭଣ୍ଡାରକୁ ଏଥିପାଇଁ ସିଲ କରାଗଲା । ତାଙ୍କୁ ସମୟ ଦିଆଗଲା ସେ ଜାନୁଆରୀ ମାସରେ କେତୋଟି ବଡ଼ ରତ୍ନ ଆଣିଲେ ମାତ୍ର ସାତସରି ହାରରୁ ଗୋଟିଏ ସରି ସେଥିରେ ନଥିଲା । ଏହା ସେ ଯୋଡିଦେବାକୁ ଚାହିଁଲେ ମାତ୍ର କାରିଗରମାନେ ଏହା ପ୍ରାୟ ଅସମ୍ଭବ କହିଲେ । ଯଦି ଉଦ୍ୟମ କରାଯାଏ ଏଥିପାଇଁ ବହୁତ ବର୍ଷ ଓ ଲକ୍ଷେ ଟଙ୍କା ଲାଗିବ । ହୀରା ହାରର ବିଖ୍ୟାତ ରତ୍ନ ୩ ଗୋଟି ମାତ୍ର ଥିଲା । ୨ ଗୋଟି ମୁକ୍ତାର କାରପେଟ ଫେରି ଆସିଲା ନାହିଁ । ଏହାପରେ ରତ୍ନ ସୁରକ୍ଷା ନିମିତ୍ତ ଉପରୋକ୍ତ ଟ୍ରଷ୍ଟମାନ ଗଢ଼ା ଯାଇଥିଲା ।

ଦେଶୀୟ ରାଜ୍ୟ ଗୁଡ଼ିକରେ ଭାରତ ସହିତ ସମୀକରଣ (Integration) ଉତ୍ତାରେ ରାଜ୍ୟମାନଙ୍କର ଆନ୍ତରୀଣ ଶାସନ ଅଭିଜ୍ଞ କୃତବିଦ ଶାସକ ମାନଙ୍କର ଅଭାବ, ପରିବର୍ତ୍ତିତ ପରିସ୍ଥିତ, ମନ୍ତ୍ରୀମାନଙ୍କର ଅନଭିଜ୍ଞତା ଓ ଅପାରଗତା ହେତୁ ଦକ୍ଷ ବା ଲୋକପ୍ରିୟ ନଥିଲା । ରାଜ୍ୟମାନଙ୍କରେ ପ୍ରଜାମାନେ ଏହି ହେତୁ ସମୀକରଣକୁ ସେମାନଙ୍କର ଦୁଃଖର କାରଣ ବୋଲି ଧରି ନେଉଥିଲେ । କିଛି ପୂର୍ବତନ ରାଜା ମହାରାଜା ଥିଲେ ଯେଉଁମାନେ ଏହାକୁ ଏକ ସୁଯୋଗ ଭାବି ପ୍ରଜାମାନଙ୍କୁ ଉସୁକାଇ ଜନମତରେ ସେମାନଙ୍କର ପୁନଃ ପ୍ରତ୍ୟାବର୍ତ୍ତନ କ୍ଷେତ୍ର ପ୍ରସ୍ତୁତ କରୁଥିଲେ ।

ମହାରାଜା ପ୍ରତାପସିଂହ ନିଷ୍କ୍ରିୟ ଥାଇ ନିଜ ଆଇନ ପରାମର୍ଶଦାତା କେ.କେ.ସାହାଙ୍କୁ ତାଙ୍କ ପଦରୁ ଅବ୍ୟାହିତ ଦେଲେ। ତାଙ୍କର ପରାମର୍ଶ ସବୁ ସମୟରେ ମହାରାଜା ଗ୍ରହଣ ନ କରୁଥିଲେ ମଧ୍ୟ ମହାରାଜାଙ୍କ ଉପରେ ତାଙ୍କର ଚିତ୍ତ ସ୍ଥିର ନିମିତ୍ତ ପ୍ରଭାବ ପଡୁଥିଲା। ଅନେକ ବିଭିନ୍ନ ସ୍ୱାର୍ଥ ଓ ରୁଚିର ଲୋକ ତାଙ୍କ ପରାମର୍ଶଦାତା ହେବାକୁ ଆଗ୍ରହୀଥିଲେ। ସେମାନେ ମହାରାଜା ଅବ୍ୟବସ୍ଥିତ ଚିତ୍ତ, ନିଜର କୌଣସି ସ୍ୱାଧିନ ମତ ପ୍ରଦାନରେ ଅକ୍ଷମ ଓ ପ୍ରଚୁର ଅର୍ଥର ମାଲିକ ଜାଣି ଅର୍ଥ ଉର୍ପାଜନ ପାଇ ତାଙ୍କୁ ଘେରି ରହିଲେ। ସର୍ଦ୍ଦାର ପଟେଲ ବମ୍ବେରେ ଗୁରୁତର ଅସୁସ୍ଥ ଥାଇ ଚିକିତ୍ସିତ ହେଉଥିଲେ। ସେ ୧୫ ଡିସେମ୍ବର ୧୯୫୦ରେ ପ୍ରାଣତ୍ୟାଗ କଲେ । ତେଣୁ ତାଙ୍କର ନିଷ୍ପତ୍ତି ଆଶା କରାଯାଉନଥିଲା। ମହାରାଜା ଭାରତ ସରକାର ପ୍ରତି ବେଖାତିର ମନୋଭାବ ପୋଷଣ କରିବା ଆରମ୍ଭ କଲେ । ୧୯୫୦ ଡିସେମ୍ବର ମାସ ଆରମ୍ଭରେ ସେ ତାଙ୍କ ରାଜ୍ୟରୁ ବମ୍ବେ ସହିତ ମିଶ୍ରଣ ଆଇନ ସଙ୍ଗତ ନୁହେଁ ବୋଲି ଦାବି କରି ଭାରତର ରାଷ୍ଟ୍ରପତିଙ୍କୁ ଏକ ସ୍ମାରକପତ୍ର (Memorial) ଦାଖଲ କଲେ। ତାଙ୍କ ଯୁକ୍ତିଗୁଡ଼ିକୁ ଅସମୀଚିନ ଭାବି ରାଷ୍ଟ୍ରପତି ଏହାକୁ ଆଗ୍ରାହ୍ୟ କଲେ। ଏହି ସମୟରେ କେତେକ ରାଜ୍ୟଚ୍ୟୁତ ନରପତି ବମ୍ବେରେ ଏକାଠି ହୋଇ ସେମାନଙ୍କର ଏକ ୟୁନିୟନ ଗଠନ କଲେ। ବରୋଦା ମହାରାଜାଙ୍କୁ ସେମାନେ ଏହାର ଅଧକ୍ଷ କଲେ। ମହାରାଜା ବରୋଦା ରାଜ୍ୟର ଗାଁମାନଙ୍କୁ ଯାଇ ସଭାକରି ଲୋକମାନଙ୍କୁ ପ୍ରଶାସନ ବିରୁଦ୍ଧରେ ଉତ୍ତେଜିତ କରିବାକୁ ଉଦ୍ୟମ କଲେ। ବମ୍ବେ ପ୍ରଦେଶର ଗୃହ ସଚିବ ଏହାକୁ ଅକ୍ଷମଣୀୟ ଅପରାଧ ବୋଲି ବିବେଚନା କଲେ। ୧୯୩୯ରେ ରାଜ୍ୟର ଗାଦିନସିନ ହେବାଠାରୁ ଏ ପର୍ଯ୍ୟନ୍ତ ମହାରାଜା ପ୍ରତାପସିଂହଙ୍କ ଆଚରଣ କୌଣସି କ୍ଷେତ୍ରରେ ପ୍ରଶଂସନୀୟ ନଥିଲା। ତାଙ୍କ ରାଷ୍ଟ୍ର ବିରୋଧି କାର୍ଯ୍ୟ ସମୂହକୁ ସମୂଳେ ଉତ୍ପାଟିତ କରିବାକୁ ଦୃଢ଼ କାର୍ଯ୍ୟାନୁଷ୍ଠାନ ନିମିତ୍ତ ଭାରତ ସରକାର ନିଷ୍ପତ୍ତି ନେଲେ। ମନ୍ତ୍ରୀମାନଙ୍କ ପରାମର୍ଶ ନେଇ ରାଷ୍ଟ୍ରପତି ଭାରତୀୟ ସମ୍ବିଧାନର ୩୬୬ ଧାରା ଅନୁସାରେ ମହାରାଜା ପ୍ରତାପ ସିଂହଙ୍କ ଉପରୁ ତାଙ୍କ ସ୍ୱୀକୃତି ପ୍ରତ୍ୟାହାର ନିମିତ୍ତ ନିଷ୍ପତ୍ତି ନେଲେ ଓ ଏଥିସହ ତାଙ୍କ ଜ୍ୟେଷ୍ଠପୁତ୍ର ଯୁବରାଜ ଫତେସିଂହଙ୍କୁ ନୂତନ ମହାରାଜା ଭାବେ ଭାରତ ସରକାର ସ୍ୱୀକୃତି ଦେଲେ। ଏହା ଫଳରେ ମହାରାଜା ଭାବରେ ପାଉଥିବା ହାତପାଣ୍ଠି ବାର୍ଷିକ ସାଢ଼େ ୨୬ଲକ୍ଷ ଓ ଅନ୍ୟ ସୁବିଧା ମହାରାଜା ପ୍ରତାପସିଂହ ହରାଇଲେ । ନୂତନ ମହାରାଜାଙ୍କର ହାତପାଣ୍ଠି ମିଶ୍ରଣ ଚୁକ୍ତି ଅନୁସାରେ ବାର୍ଷିକ ୧୦ଲକ୍ଷ ଟଙ୍କା ଧାର୍ଯ୍ୟ କରାଗଲା। ଏହି ଆଦେଶ ପୂର୍ବତନ ମହାରାଜାଙ୍କ ଉପରେ ବିଧିବଦ୍ଧ ଭାବରେ ଜାରି କରାଗଲା । ଏପରି ଏକ କ୍ରୁର ଓ କଠିନ

ପଦକ୍ଷେପ ସରକାର ନେବେ ଏଥିପ୍ରତି ମହାରାଜା ପ୍ରତାପସିଂହ ସଜାଗ ନଥିଲେ। ସେ ନିଜକୁ ସଂଯତ କଲେ। ଯେଉଁ ରାଜାମାନେ ୟୁନିୟନ କରିଥିଲେ ସେମାନେ ଏହାକୁ ଭାଙ୍ଗିଦେଇ ଛିନ୍ନଭିନ୍ନ ହୋଇଗଲେ। ମହାରାଜା ପ୍ରତାପସିଂହ ରାଷ୍ଟ୍ରପତିଙ୍କୁ ତାଙ୍କ ସ୍ୱୀକୃତି ପ୍ରତ୍ୟାହାରର ପୁର୍ନବିଚାର ନିମିତ୍ତ ଏକ ନିବେଦନ କଲେ ମାତ୍ର ତାଙ୍କର ଅତୀତ କାର୍ଯ୍ୟକଳାପ ବିବେଚନା କରାଯାଇ ନିଷ୍ପତ୍ତି ଚୂଡ଼ାନ୍ତ ବୋଲି କୁହାଗଲା। ତାଙ୍କ ତରଫରୁ ମହାରାଣୀ ଶାନ୍ତାଦେବୀ ଭାରତୀୟ ନାରୀ ଚରିତ୍ରର ଆଦର୍ଶ ଉଦାହରଣ ଥିଲେ। ତାଙ୍କ ପ୍ରତି କରାଯାଇ ଥିବା ସ୍ୱାମୀଙ୍କର ଅତୀତର ସବୁ ଅନ୍ୟାୟ ଭୁଲିଯାଇ ତାଙ୍କୁ କ୍ଷମା କରିବାକୁ ସେ ପୁଣି ରାଷ୍ଟ୍ରପତିଙ୍କୁ ନିଜ ସ୍ୱାମୀଙ୍କ ତରଫରୁ ପ୍ରାର୍ଥନା କଲେ ଓ ପୁନଃସ୍ଥାପିତ ହେଲେ ତାଙ୍କ ସଦାଚରଣ ନିମିତ୍ତ ମହାରାଣୀ ଦାୟୀ ରହିବେ ବୋଲି ଜଣାଇ ପୁର୍ନବିଚାର ପାଇଁ ପ୍ରାର୍ଥନା କଲେ । ଦେଶର ତତ୍କାଳୀନ ରାଜନୈତିକ ପରିସ୍ଥିତି ବିଚାରକୁ ନେଇ ତାହା ମଧ୍ୟ ନାକଚ ହେଲା।

ଅବ୍ୟବସ୍ଥିତ ଚିତ୍ତ, ସର୍ବଦା ଅବିଚାରିତ ଭାବେ ଅନ୍ୟ ପରାମର୍ଶରେ ପରିଚାଳିତ, ଅଯଥା ଅପବ୍ୟୟ କରିବାକୁ ପ୍ରଚୁର ଅର୍ଥ ସମ୍ପତ୍ତିର ମାଲିକ, ଏହି ମହରାଜାଙ୍କୁ ଅନେକ ଖଳ ଓ କୁଟିଳ ପ୍ରକୃତିର ଲୋକ ଏପରି ଅବ୍ୟବସ୍ଥାକୁ ଆଣି ଅଛନ୍ତି। ଏହା ବିଚାର କରି ବହୁବର୍ଷ ପରେ ଭାରତ ସରକାର ତାଙ୍କୁ ହିଜ୍ ହାଇନେସ (His Highness) ଉପାଧି ବ୍ୟବହାର କରିବାକୁ ଓ ତାଙ୍କ ନିଜ ଖର୍ଚ୍ଚ ନିମିତ୍ତ କିଛି ଭତ୍ତା ଦେବାକୁ ନିଷ୍ପତ୍ତି ନେଲେ। ସଂକ୍ଷେପରେ ଭାରତୀୟ ସାଧାରଣତନ୍ତ୍ର ରାଷ୍ଟ୍ରରେ ଏହିପରି ଭାବରେ ପ୍ରଥମ କରି ଜଣେ ମହାରାଜାଙ୍କର ସ୍ୱୀକୃତି ପ୍ରତ୍ୟାହାର ଅଧ୍ୟାୟ ଏହିପରି ଶେଷ ହେଲା।





ମହାରାଜା ଗୁଲାବ ସିଂହ
(୧୯୦୩-୧୯୫୦)

# ରେୱା ମହାରାଜା
## ଗୁଲାବ ସିଂହ

ରେୱା କେନ୍ଦ୍ର ଭାରତର ଏକ ରାଜ୍ୟ । ଏହାର ଆୟତନ ୟୁରୋପର ହଲାଣ୍ଡ ଦେଶ ସହିତ ସମାନ । ଲୋକସଂଖ୍ୟା ପ୍ରାୟ ୧୫ଲକ୍ଷ ଓ ଆୟ ପ୍ରାୟ ୫୪ଲକ୍ଷ ଥିଲା । ଭାରତରେ ୧୭ଗୋଟି ତୋପ ସଲାମି ପାଉଥିବା ୧୩ଟି ରାଜ୍ୟ ମଧ୍ୟରୁ ଏହା ଅନ୍ୟତମ ଥିଲା । କରଫିଲ୍ଡ ଜଣେ ଆଇ.ସି.ଏସ୍ ଅଫିସର । ଭାରତ ସରକାରଙ୍କ ରାଜନୀତିକ ବିଭାଗରେ ସେ ଜଣେ ଟାଣୁଆ ଓ ଦକ୍ଷ ଅଫିସର ଥିଲେ । ତାଙ୍କୁ ରେୱା ମହାରାଜଙ୍କ ପରାମର୍ଶଦାତା ଭାବରେ ସରକାର ସାର୍ବଭୌମ ଶକ୍ତି ଭାବରେ ୧୯୩୮ ମସିହାରେ ନିଯୁକ୍ତି ଦେଲେ । ମହାରାଜାଙ୍କ ଉପରେ ସରକାର ସନ୍ତୁଷ୍ଟ ନ ଥାଆନ୍ତି । କୌଣସି ଚୁକ୍ତି ବା ସନନ୍ଦରେ ଏହା ଅନ୍ତର୍ଗତ ନଥିଲେ ମଧ୍ୟ ପରମ୍ପରା ଅନୁସାରେ, ଯଦି ରାଜା ଇଂରେଜ ସରକାର ନିଯୁକ୍ତ ଦେୱାନ ବା ଆଡ଼ଭାଇଜରଙ୍କର ମତାମତ ଉପେକ୍ଷା କରନ୍ତି ତାହାହେଲେ ତାଙ୍କୁ ଏହାର

କୁପରିଣାମ ଭୋଗିବାକୁ ପଡ଼େ। ଯୋଗଦାନ ପୂର୍ବରୁ କୋରଫିଲ୍ଡଙ୍କୁ ମହାରାଜାଙ୍କୁ ସାକ୍ଷତ କରିବାକୁ କୁହାଯାଇଥିଲା। ଏତେ ବଡ଼ ରାଜ୍ୟ ମାତ୍ର ରାଜ୍ୟ ରାଜଧାନୀ ସାତନା ରେଲଷ୍ଟେସନ ଠାରୁ ୩୦ ମାଇଲ ଦୂର। ସେଇଠି ଓହ୍ଲାଇ ଯିବାକୁ ହୁଏ। ଯେତେବେଳେ ବମ୍ବେ ଆହ୍ଲାବାଦ ରେଳଲାଇନ ପଡୁଥାଏ ଏହା ରାଜ୍ୟ ରାଜଧାନୀ ଦେଇ ଯିବାର ଥିଲା। ମାତ୍ର ମହାରାଜାଙ୍କର ବ୍ରାହ୍ମଣ ପରାମର୍ଶଦାତ ମାନେ ରାଜାଙ୍କୁ ବୁଝାଇଦେଲେ ଯେ ରେଲ ଚଳାଚଳ ହେଲେ କିଛି ରେଲଗାଡ଼ିରେ ଭୋଜନାଳୟ ରହିବ। ଏଠାରେ ସାହେବମାନଙ୍କ ପାଇଁ ଗୋମାଂସ ଖାଦ୍ୟ ପ୍ରସ୍ତୁତ ହେବ। ଏହି ଗୋହତ୍ୟା ପାପ ପାଇଁ ରାଜ୍ୟର ରାଜା ଦାୟୀ ହେବେ।. ଗୋହତ୍ୟା ଭଳି ପାପ କଥା ଶୁଣି ମହାରାଜା ରେଲ ଲାଇନ ତାଙ୍କ ରାଜଧାନୀଠାରୁ ଦୂରରେ ତାଙ୍କ ରାଜ୍ୟରେ ଯାଉ ବୋଲି ପ୍ରସ୍ତାବ କଲେ। ଯାହାହେଉ କୋରଫିଲ୍ଡ ସାତନାରେ ଓହ୍ଲାଇ ରେୱାରେ ପହଞ୍ଚିଲେ। ତାଙ୍କୁ ନେବାକୁ ଷ୍ଟେସନରେ ଗୋଟିଏ କାର ଅପେକ୍ଷା କରିଥିଲା। ସେ ଜାଣିପାରିଲେ ଆଗରୁ ଅନେକ ପରାମର୍ଶଦାତା, ଦେୱାନ ଆଦି ନିଯୁକ୍ତ ପାଇଛନ୍ତି ମାତ୍ର ମହାରାଜା ସେମାନଙ୍କୁ କୌଣସି କ୍ଷମତା ହସ୍ତାନ୍ତର କରିନାହାନ୍ତି। ତାଙ୍କ ନିଯୁକ୍ତର ଆବଶ୍ୟକତା କଣ ମଧ ସେ ବୁଝି ପାରିନଥିଲେ। ଶୁଣିଲେ ଅନ୍ୟ ଜଣେ ମହାରାଜା ତାଙ୍କୁ କୋରଫିଲ୍ଡ ଅତି ଭଦ୍ର ବୋଲି କହିଥିବାରୁ ତାଙ୍କ ନିଯୁକ୍ତିକୁ ମହାରାଜା ସମର୍ଥନ କରିଥିଲେ। ଯୋଗଦାନ କରି ଦେଖିଲେ ମହାରାଜା କଠୋର ହିନ୍ଦୁ ଧର୍ମ ଅନୁରାଗୀ ଓ ପୁରାତନ ପନ୍ଥୀ ହେଲେବି ତାଙ୍କ ପ୍ରତି ଅତିଶୟ ସମ୍ମାନ ପ୍ରଦର୍ଶନରେ ତ୍ରୁଟି କରୁନଥିଲେ ଓ ତାଙ୍କୁ ଆବଶ୍ୟକ ଅନୁସାରେ ସାକ୍ଷାତ ଦେଉଥିଲେ। ଆଡ଼ଭାଇଜର ଭାବରେ ତାଙ୍କ ଦାୟିତ୍ୱ ଥିଲା - ସେ ସବୁ ବିଭାଗର ମନ୍ତ୍ରୀ ଓ କର୍ମଚାରୀ ମାନଙ୍କର କାର୍ଯ୍ୟ ତଦାରଖ କରିବେ ଓ ତାଙ୍କ ପ୍ରସ୍ତାବମାନ ମହାରାଜା ଗ୍ରହଣ କରିବେ। ରାଜ୍ୟରେ ସବୁ ଶ୍ରେଣୀର ଲୋକ ଅସନ୍ତୁଷ୍ଟ ଥିବାର ସେ ଲକ୍ଷ୍ୟ କଲେ। ପଞ୍ଜାବର ଜଣେ ଅବସରପ୍ରାପ୍ତ ଅଫିସର ସର୍ଦ୍ଦାର ସନ୍ତୋକ ସିଂହ ପୁଲିସ ଆଇ.ଜି.(I.G.) ଥିଲେ। ସେ ବଡ଼ ଦକ୍ଷ ବିଶ୍ୱସ୍ତ ଓ ଦୂରଦୃଷ୍ଟି ସମ୍ପନ୍ନ ଥିଲେ। ତାଙ୍କଠାରୁ କୋରଫିଲ୍ଡ ଜାଣିଲେ ଶାସନ ଅତି ପୁରୁଣା ଢ଼ଙ୍ଗର ଥିଲା। ଜମିଦାର (ଜମିମାଲିକ)ମାନେ ବହୁତ ଖଜଣା ଭାରରେ ଉତ୍ତ୍ୟକ୍ତ। ସହରର ବ୍ୟବସାୟୀ ଶ୍ରେଣୀ ରାଜ୍ୟରେ କୌଣସି ବିକାଶ କାର୍ଯ୍ୟ ନ ହେବାରୁ ବିରକ୍ତ ଥିଲେ। ରାଜ୍ୟର ସର୍ଦ୍ଦାର ଯେଉଁମାନେ ପ୍ରଜାମାନଙ୍କ ଠାରୁ ଖଜଣା ଅସୁଲ କରନ୍ତି ସେମାନଙ୍କୁ ପୱାରଦାର କୁହାଯାଉଥିଲା। ସାଧାରଣତଃ ଏହି ଶ୍ରେଣୀର ପ୍ରଜା ରାଜଭକ୍ତ ହୁଅନ୍ତି। ମାତ୍ର ଚୁକ୍ତି ମୁତାବକ ସେମାନଙ୍କ ଅଧିକାରରେ ଦରବାର ବାରମ୍ବାର ହସ୍ତକ୍ଷେପ କରୁଥିବାରୁ ସେମାନେ ମଧ ଶାସନ ବରୋଧି

ଥିଲେ ଓ ପରୋକ୍ଷରେ ପ୍ରଜାମଣ୍ଡଳକୁ ସମର୍ଥନ କରୁଥିଲେ। ରାଜ୍ୟ ପଣ୍ଡିତ ନେହେରୁଙ୍କ ଆହ୍ଲାବାଦଠାରୁ ଦୂର ନଥିଲା ଓ ସେଠାରୁ କଂଗ୍ରେସ ଦଳ ପ୍ରଜା ମଣ୍ଡଳକୁ ସମର୍ଥନ କରି ଆନ୍ଦୋଳନ ଆରମ୍ଭ କରିବାକୁ ଚାହୁଁଥିଲେ।

ସେମାନଙ୍କର ଆନ୍ଦୋଳନ ନିର୍ଦ୍ଦିଷ୍ଟ କେବେ ଆରମ୍ଭ ହେବ ଏହା ପୁଲିସ ଆଇ.ଜି (I.G) ତାଙ୍କୁ ଜଣାଇବାକୁ କହିଲେ। କୋରଫିଲ୍ଡ ଆନ୍ଦୋଳନ ପଣ୍ଡ କରିବାକୁ ଉଦ୍ୟମ କଲେ ମାତ୍ର ସେମାନଙ୍କୁ ଗିରଫ କଲେ ସ୍ଥାନୀୟ ଜେଲରେ ରଖିବା ନିରାପଦ ହେବନାହିଁ ବୋଲି ଭାବିଲେ। ରାଜ୍ୟରେ ଅନେକ ଗୁଡ଼ିଏ ପୁରୁଣା ଦୁର୍ଗ ଥାଏ। ନିଜକୁ ଜଣେ ପ୍ରତ୍ନତତ୍ତ୍ୱବିଦ ଭାବରେ ପରିଚୟ ଦେଇ କୋରଫିଲ୍ଡ ଏସବୁ ବୁଲି ଦେଖିଲେ। ଜଙ୍ଗଲ ମଧ୍ୟରେ ବନ୍ଧଗଡ଼ରେ ଗୋଟିଏ ପୁରୁଣା ଦୁର୍ଗ ଥିଲା। ଏହା ପୂର୍ବରୁ ରାଜ୍ୟର ରାଜଧାନୀ ଥିଲା । ୧୫୯୭ ମସିହାରେ ଆକବର ଏହାକୁ ରାଜ୍ୟ ସହିତ ଦଖଲ କରିଥିଲେ। ପରେ ପରେ ଏହା ଇଂରେଜମାନଙ୍କ ହାତକୁ ଆସି ରେୱା ରାଜ୍ୟରେ ଥିଲା। ଏହାର ମରାମତି ପାଇ କୋରଫିଲ୍ଡ ମହାରାଜାଙ୍କଠାରୁ ବିଶେଷ ଅର୍ଥ ବ୍ୟବସ୍ଥା କରାଇଲେ। ଏହାକୁ ସୁନ୍ଦର ଓ ନେତାମାନଙ୍କର ବାସୋପଯୋଗୀ ଭାବରେ ଚିହ୍ନଟ କରାଯାଇ ରଖାଗଲା। ଶେଷରେ ଆନ୍ଦୋଳନ ଦିନ ଆସିଲା। ତା' ପୂର୍ବଦିନ ରାତିରେ ରାଜ୍ୟର ସମସ୍ତ ରାଜନେତାମାନଙ୍କୁ ଗ୍ରେପ୍ତାର କରି ବନ୍ଧଗଡ଼ଦୁର୍ଗରେ ସମ୍ମାନର ସହ ରାଜବନ୍ଦୀ ଭାବରେ ରଖାଗଲା। ପରଦିନ ନେତାମାନଙ୍କର ଅନୁପସ୍ଥିତିରେ ଆନ୍ଦୋଳନ ଆଉ ରୂପରେଖ ନେଲାନାହିଁ।

ମହାରାଜା ପ୍ରଥମେ ଏ ପ୍ରସ୍ତାବରେ ଦୋଦୋପାଞ୍ଚ ଥିଲେ। ପରାମର୍ଶଦାତା ତାଙ୍କୁ ବୁଝାଇ ନେଲେ ସେ ତାଙ୍କୁ ପରାମର୍ଶଦାତା ଭାବେ ଯାହା ଉପଦେଶ ଦେବେ ସେ ଅନୁସାରେ କାର୍ଯ୍ୟହେଲେ ଭଲମନ୍ଦ ତାଙ୍କର । ଯଦି ଏହା ସଫଳ ହୁଏ ମହାରାଜା ବାହାଦୁରି ପାଇବେ ମାତ୍ର ଏହା ବିଫଳ ହେଲେ ସବୁ ଦୋଷ ପରାମର୍ଶ ଦାତାଙ୍କ ମୁଣ୍ଡରେ ପଡ଼ିବ। ଏହାପରେ ସେ ରାଜି ହେଲେ। କୋରଫିଲ୍ଡ ପରୱାରଦାରମାନଙ୍କୁ ସେମାନଙ୍କ ଚୁକ୍ତିପତ୍ର ସର୍ତ୍ତ ଦେଖାଇଲେ। ସେଥିରେ ସେମାନେ ରାଜଭକ୍ତ ହେବାର ସୂଚନା ଥିଲା । ଅନ୍ୟଥା ସେମାନଙ୍କ ଅଧିକାର କାଢ଼ି ନିଆଯିବ। ଏହିପରି ନୋଟିସ ପାଇବା ପରେ ସେମାନଙ୍କର ଉତ୍ସାହ କମିଗଲା ଓ ସେମାନେ ସାମୟିକ ଆନ୍ଦୋଳନରୁ ବିରତ ରହିଲେ। ଏହାପରେ ପ୍ରଜାମାନେ ନେତା ନଥାଇ ଗୋଟିଏ ବିଶାଳ ଜନସମାବେଶ କରି ଶାସନ ବିରୁଦ୍ଧରେ ଯୁଦ୍ଧ ଘୋଷଣା ନିଷ୍ପତ୍ତି ଓ ରାଜଧାନୀ ଦଖଲ କରିବାକୁ ଠିକ୍ କଲେ। ପୁଲିସ ଆଇ.ଜି (I.G) ଠିକ ସମୟରେ ଏହା ଆଡଭାଇଜରଙ୍କୁ ଜଣାଇଲେ। ସେମାନେ ଏକ ସ୍ଥାନରେ ବହୁ

ସଂଖ୍ୟାରେ ସମବେତ ହେବା ସୁନିଶ୍ଚିତ ଥିଲା। ସେମାନଙ୍କର ପୁଞ୍ଜିଭୂତ କ୍ରୋଧ ସବୁ ଶ୍ରେଣୀର ରାଜ୍ୟବାସୀ ପ୍ରକାଶ କରିବାକୁ ଚାହୁଁଥିଲେ। କୋରଫିଲ୍ଡ ଯୋଜନା କଲେ ସେମାନେ ଯେଉଁ ସ୍ଥାନରେ ଏକାଠି ହେବେ ତାହାର ତିନି ପାଖରେ ରାଜ୍ୟର ଘୋଡ଼ସୱାର ବାହିନୀ ଜଗି ରହିବେ ଓ ଗୋଟିଏ ପାଖ ଖୋଲା ରହିବ ଯେପରି ପୁଲିସ କାର୍ଯ୍ୟାନୁଷ୍ଠାନ ଦେଖିଲେ ଲୋକମାନେ ସୁବିଧାରେ ପଳାଇ ଯାଇପାରିବେ। ନିର୍ଦ୍ଦିଷ୍ଟ ଦିନ ଘୋଡ଼ସୱାର ବାହିନୀ ସେମାନଙ୍କର ବର୍ଚ୍ଛା ସମତଳ କରି ଧରି ସେମାନଙ୍କୁ ଘେରାଉ କରିବାରେ ଭୟରେ ଜନତା ଛତ୍ରଭଙ୍ଗ ଦେଲା ଓ ବିନା ରକ୍ତପାତରେ ଆନ୍ଦୋଳନ ଭାଙ୍ଗିଗଲା।

ମାତ୍ର ଏହାପରେ ପ୍ରଜାମାନଙ୍କର ଅସଲ ସମସ୍ୟାର ସମାଧାନ ଉଦ୍ୟମ ଆରମ୍ଭ ହେଲା। ମହାରାଜା ନିଜ ଆଡ଼ଭାଇଜରଙ୍କ ଉପରେ ବିଶ୍ୱାସ ରଖିବାର ସୁଯୋଗ ପାଇଲେ। ପୱାରଦାରମାନଙ୍କର ଅଭିଯୋଗ ଦୂର କରିବା ଓ ସେମାନଙ୍କ ସମସ୍ତ ଅଧିକାର ଅକ୍ଷୁର୍ଣ୍ଣ ରଖିବା ନିମିତ୍ତ ମନ୍ତ୍ରୀ ଓ କର୍ମଚାରୀମାନଙ୍କର ପରାମର୍ଶ ନେଇ ଆଇନ୍ ପ୍ରଣୟନ କରାଗଲା। ଭୂମି ମାଲିକମାନଙ୍କ ଅସୁବିଧା ପ୍ରତି ଦୃଷ୍ଟିଦେବା ଓ ରାସ୍ତା ତିଆରି କରି ସହରାଞ୍ଚଳର ବିକାଶ ପ୍ରତି ଦୃଷ୍ଟି ଦିଆଗଲା ।

ଖରାଦିନ । ରେୱାଗଡ଼ ତାତିରେ ଫୁଟୁଥାଏ। ଦିନେ ମଧ୍ୟାହ୍ନରେ ମହାରାଜା ଆଡ଼ଭାଇଜରଙ୍କୁ ସାକ୍ଷାତ ପାଇଁ ଡାକିଲେ। ସେ ଗାଡ଼ିରେ ବାହାରିଲେ । ରାଜପ୍ରାସାଦର ମୁଖ୍ୟ ଗେଟରେ ଜଗୁଆଳି ଜଣାଇଲା ଯେ ଆଗକୁ ଗାଡ଼ି ଯାଇପାରିବ ନାହିଁ। ଜବରଦସ୍ତି ଯିବା ତାଙ୍କର ଇଚ୍ଛା ନଥିଲା। ତେଣୁ ସେ ନିଜ ବଙ୍ଗଳାକୁ ଫେରି ଆସିଲେ। କିଛି ସମୟ ପରେ ମହାରାଜାଙ୍କ ଦେହରକ୍ଷୀ ଏ.ଡି.ସି. ତାଙ୍କୁ ମହାରାଜା ଅପେକ୍ଷାରତ ଜଣାଇବାରୁ ସେ ଯାଇ ଗେଟରୁ ଫେରି ଆସିବା କଥା କହିଲେ। ଶେଷରେ ଏଡ଼ିସି ଜଣାଇଲେ ମଣିମା ହିଜହାଇନେସ ଜଗୁଆଳୀର ଭୁଲ ପାଇ ଦୁଃଖିତ ଓ ସମୟ ଦେଖି ସାକ୍ଷାତ କରିବାକୁ ଅପେକ୍ଷା କରୁଛନ୍ତି। କୋରଫିଲ୍ଡ ରାଜା ଡ଼କାଇ ପଠାଇବା ଓ ସାକ୍ଷାତ ପାଇ ଘଣ୍ଟା ଘଣ୍ଟା ଅପେକ୍ଷା କରିବା କଥା ଲେଖିଛନ୍ତି। ତେଣୁ ସେ ଖଣ୍ଡେ ଲୋକପ୍ରିୟ ଉପନ୍ୟାସ ଧରି ଯାଇ ଏ.ଡି.ସି. ସାକ୍ଷାତକୁ ନେବା ପର୍ଯ୍ୟନ୍ତ ଅଭ୍ୟର୍ଥନା କୋଠିରେ ଅପେକ୍ଷା କରନ୍ତି। ମହାରାଜା ତାଙ୍କୁ ଅପେକ୍ଷାରତ କରିଥିବାରୁ ଦୁଃଖ ପ୍ରକାଶ କଲେ । ଆଡ଼ଭାଇଜର ମୁଣ୍ଡ ନୁଆଁଇ ତାଙ୍କୁ ଶୁଣାଇଲେ ହିଜହାଇନେସ ମହାରାଜା ମୋତେ ଯେଉଁ ଦରମା ଦେଉଛନ୍ତି ସେଥିପାଇଁ ଗରମରେ ମୋ ଅଫିସରେ ବସି କାମ ନକରି ଏଠାକୁ ଆସି ସୁଶୀତଳ ଅଭ୍ୟର୍ଥନାଗାରରେ ନଭେଲ ପଢ଼ିବାରେ ମୋର ଆନନ୍ଦ ବେଶି। ମହାରାଜା ଏହା ଶୁଣି ନିଜ ଅବସ୍ଥା ବୁଝି

ପାରିଲେ ଓ ତାଙ୍କ ପ୍ରତି ବନ୍ଧୁତ୍ୱ ବ୍ୟବହାର କଲେ। ପାଓ୍ୱାରଦାରମାନଙ୍କର ଅଧିକାର ସୁବିଧା ସୁଯୋଗ ଆଦି ଉଭୟ ପକ୍ଷର ସମ୍ମତିରେ ଆଇନ କରାଯାଇଥିଲା। ମାତ୍ର ଆଇନ ଅନୁସାରେ ନିୟମାବଳୀ ହେବାର କଥା। ଆଡ଼ଭାଇଜର ଆଉ ବରଷେ ପାଇଁ ନିଯୁକ୍ତି ପାଇଲେ। ନିୟମାବଳୀ, ଅନୁମୋଦନ ପାଇ ମହାରାଜାଙ୍କ ଦପ୍ତରରେ ଦୀର୍ଘଦିନ ପଡ଼ି ରହିଲା। କୋରଫିଲ୍ଡ ସାତଦିନ ଛୁଟି ମାଗିଲେ। ଛୁଟି ମଞ୍ଜୁର ହେଲା । ମହାରାଜା କହିଲେ ସେ ବହୁତ କାମ କରୁଛନ୍ତି। ତାଙ୍କର ବିଶ୍ରାମ ନେବା ଦରକାର । ସେ ଦିଲ୍ଲୀ ଯାଉଛନ୍ତି ଶୁଣି ମହାରାଜା ସେ ଦିଲ୍ଲୀରେ କେଉଁଠି ରହିବେ ଜାଣିବାକୁ ଚାହିଁଲେ। ବଡ଼ଲାଟଙ୍କ ରାଜନୈତିକ ସଚିବଙ୍କ ପାଖରେ ରହିବାର ଜାଣି ସେ ତାଙ୍କୁ ବିଶ୍ରାମର ଶୁଭେଚ୍ଛା ଜଣାଇଲେ। ସେହିଦିନ ସନ୍ଧ୍ୟାରେ ତାଙ୍କ ଠାରୁ ନିୟମାବଳୀ ମଞ୍ଜୁର ହୋଇ ଫେରି ଆସିଲା। ସରକାରଙ୍କ ଉଚ୍ଚ କର୍ତ୍ତୃପକ୍ଷଙ୍କ ପ୍ରତି ମହାରାଜାଙ୍କ ଭୟ ବୁଝି ହେଲା।

ରେଓ୍ୱା ମହାରାଜା ୩ୟ ଗୋଲ ଟେବୁଲ ବୈଠକରେ ଯୋଗଦେବାକୁ ଠିକ୍ କଲେ। ଆଡ଼ଭାଇଜରଙ୍କୁ ସେ ଜାହାଜରେ ସାଙ୍ଗରେ ନେବାକୁ ଚାହିଁଲେ । କୋରଫିଲ୍ଡ ମଧ ଏହା ଚାହୁଁଥିଲେ। ତାଙ୍କ ସ୍ତ୍ରୀ ଉଟକାମଣ୍ଡରେ ଏକ ଦୁର୍ଘଟଣାର ଶିକାର ହୋଇ ଆହତ ଥାଇ ଚିକିତ୍ସିତ ହେଉଥିଲେ। ବିଦେଶରେ ତାଙ୍କର ଚିକିତ୍ସା ଆବଶ୍ୟକ ଥିଲା। ଗୋଲଟେବୁଲ ବୈଠକରୁ କିଛି ଲାଭ ପାଇବାରୁ ମହାରାଜା ବିଫଳ ହେଲେ । କୋରଫିଲ୍ଡଙ୍କର ସ୍ତ୍ରୀ ମଧ ସେଠାରେ ଚିକିତ୍ସିତ ହେବା ସମୟରେ ପ୍ରାଣ ତ୍ୟାଗ କଲେ।

ପ୍ରଥମେ ମହାରାଜା ନିଜ ମନ୍ତ୍ରୀମଣ୍ଡଳ ବୈଠକରେ ସ୍ୱୟଂ ଅଧକ୍ଷତା କରୁଥିଲେ ମାତ୍ର ଆଡ଼ଭାଇଜରଙ୍କ ଉପରେ ବିଶ୍ୱାସ ଆସିବାରୁ ତାଙ୍କୁ ଏହି ସୁଯୋଗ ଦିଆଗଲା। କୋରଫିଲ୍ଡ ରାଜ୍ୟ ତମାମ ଗସ୍ତ କଲେ। ଉଦ୍ଦେଶ୍ୟ ରାସ୍ତା ପୋଲ ଆଦି ତିଆରି କରି କିପରି ବିକାଶ ତ୍ୱରାନ୍ୱିତ କରାଯାଇପାରିବ। ରାଜ୍ୟର ଦକ୍ଷିଣ ଅଂଶ ପ୍ରାୟ ଅଗମ୍ୟ ଥିଲା। ପୁଲିସ କର୍ମଚାରୀମାନେ ଅଳ୍ପ ବେତନ ପାଉଥିଲେ। ତେଣୁ ଲାଞ୍ଚ ନେବା ଚିରାଚରିତ ପ୍ରଥା ଥିଲା। ସେମାନଙ୍କର ଦରମା ବୃଦ୍ଧି ନିମିତ୍ତ ମହାରାଜାଙ୍କ ସହିତ ଆଲୋଚନା କଲେ। ଯୁକ୍ତି ଥିଲା ବର୍ତ୍ତମାନ ୧୫ଟଙ୍କା ବେତନ ଥିବାରୁ ଲାଞ୍ଚ ପରିମାଣ ସେତିକିରେ ରହୁଛି। ମାତ୍ର ଦରମା ୩୦ଟଙ୍କା ହେଲେ ଏହି ଲାଞ୍ଚ ବନ୍ଦ କରି ହେବନାହିଁ। ପ୍ରଜାମାନେ ଏହାଦ୍ୱାରା ଦୁଇଗୁଣା କ୍ଷତିଗ୍ରସ୍ତ ହେବେ ଓ ପୁଲିସରର ଲାଭ ଦି'ଗୁଣ ହେବ। ବେଶି ଦରମା ଦେଲେ ଓ ଉପଯୁକ୍ତ ତତ୍ତ୍ୱାବଧାନ କଲେ ରାଜ୍ୟରୁ ଲାଞ୍ଚ ଓ ଅନ୍ୟ ବେଆଇନ ପାଉଣା ଉଠେଇ ଦେବା ସମ୍ଭବ ଏହା ତାଙ୍କ ପରାମର୍ଶଦାତା ମହାରଜାଙ୍କୁ ବୁଝେଇବାରେ ଶେଷରେ ଅକ୍ଷମ

ହେଲେ। ରାଜ୍ୟରେ ପ୍ରଜା ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ ପାଇ ପରାମର୍ଶ ଗୋଲଟେବୁଲ ବୈଠକ ପରେ ବିଚାର କରିବାକୁ ମହାରାଜା କହିଥିଲେ ମାତ୍ର ଏହି ଆଶା ବିଫଳ ହେଲା।

ରାଜ୍ୟର ବଜେଟରେ ଅର୍ଥ ବ୍ୟବସ୍ଥା କରାଯାଇ ବିଭିନ୍ନ ବିକାଶମୂଳକ କାର୍ଯ୍ୟ ପାଇ ରଖାଯାଇଥାଏ। ଏହାପରେ କାର୍ଯ୍ୟ ଆରମ୍ଭ ହେବାର କଥା । ତାହାହେଲେ ବର୍ଷ ଶେଷକୁ ଅର୍ଥ ବିକାଶ କ୍ଷେତ୍ରରେ ବ୍ୟୟିତ ହୋଇପାରିବ। ମାତ୍ର ଏହା ସମ୍ଭବ ନଥିଲା। କାର୍ଯ୍ୟ ଆରମ୍ଭ ନିମିତ୍ତ ମହାରାଜାଙ୍କର ଆଉ ଏକ ଆଦେଶର ଆବଶ୍ୟକତା ଥିଲା, କିନ୍ତୁ ଏହି ଆଦେଶ ବହୁତ ବିଳମ୍ବରେ ମିଳୁଥିଲା - ହୁଏତ ବର୍ଷ ଶେଷ ହେବା ଅଳ୍ପଦିନ ଆଗରୁ। ଫଳରେ ବଜେଟ ଅର୍ଥ ଖର୍ଚ୍ଚ କରିବା ସମ୍ଭବପର ନଥିଲା। ତେଣୁ ବିକାଶ ନିମିତ୍ତ ଅର୍ଥ ବ୍ୟବସ୍ଥାର କିଛି ମୂଲ୍ୟ ନଥିଲା। ଆଡ଼ଭାଇଜର ମହାରାଜାଙ୍କୁ ତାଙ୍କ ନିଜ ହାତପାଣ୍ଠି ଓ ରାଜ୍ୟର ବଜେଟରେ ବ୍ୟବସ୍ଥାପିତ ଅର୍ଥର ପାର୍ଥକ୍ୟ ବୁଝାଇଦେଲେ କାରଣ ଯେଉଁ ବଜେଟ ବ୍ୟବସ୍ଥା ଅର୍ଥ ଖର୍ଚ୍ଚ ନ ହୋଇପାରେ ତାହା ଷ୍ଟେଟ ରିଜର୍ଭ ପାଣ୍ଠିକୁ ଯାଉଥାଏ। ଏହି ପାଣ୍ଠି ପୁଣି ମହାରାଜାଙ୍କ ହାତପାଣ୍ଠିକୁ ହସ୍ତାନ୍ତର ହୁଏ। ମହାରାଜାଙ୍କର ନିଜ ପାଇଁ ଖର୍ଚ୍ଚର ନିର୍ଦ୍ଦିଷ୍ଟ ବ୍ୟବସ୍ଥା ନଥାଏ। ଦିନକୁ ଦିନ ତାଙ୍କ ହାତପାଣ୍ଠି ବୃଦ୍ଧି ହେବାରେ ଲାଗେ । ବିକାଶ ନିମିତ୍ତ ଅର୍ଥ ବ୍ୟବସ୍ଥା ଦେଖାଇ ଦିଆଯାଉଥିଲେ ମଧ ପ୍ରକୃତ କୌଣସି ବିକାଶ ହୋଇପାରୁ ନଥାଏ। ସବୁ ପ୍ରକାର ଉଦ୍ୟମ କରି ଶେଷରେ କୋରଫିଲ୍ଡ ମହାରାଜାଙ୍କୁ ବାଟକୁ ଆଣି ପାରିଲେନାହିଁ। ସେ ଦେଖିଲେ ସର୍ବୋତ୍ତମ ଶକ୍ତି ନିଜ କ୍ଷମତା ପ୍ରୟୋଗ କରି ତାଙ୍କୁ ବାଟକୁ ଆଣିବା ଏକମାତ୍ର କଠୋର ପନ୍ଥା ରହିଲା। ଏହାର ଅର୍ଥ ହେଲା ତାଙ୍କୁ ସାମୟିକ କ୍ଷମତାଚ୍ୟୁତ କରାଇବା। ଏଥିପାଇ ସୁଯୋଗ ଅପେକ୍ଷା କରାଗଲା। ମହାରାଜା ଗୁଲାବସିଂହଙ୍କୁ ସ୍ୱେଚ୍ଛାଚାରୀ ହେବାକୁ ସବୁ ସୁଯୋଗ ଦିଆଯାଇ ପରବର୍ତ୍ତୀ କାଳରେ ୧୦ବର୍ଷ ପରେ ରାଜ୍ୟଚ୍ୟୁତ କରାଗଲା । ସେତେବେଳକୁ ତାଙ୍କ ଏକମାତ୍ର ପୁତ୍ର ରାଜ୍ୟ ଶାସନ ନିମିତ୍ତ ବୟସ୍କ ଓ ଯୋଗ୍ୟତା ସମ୍ପନ୍ନ ହୋଇ ସାରିଥିଲେ।

ସେତେବେଳେ ରାଜ୍ୟରେ ଗୋଟିଏ ପ୍ରଥା ଥିଲା ଯାହାକୁ ହରୱାଇ କୁହାଯାଉଥିଲା । ଜଣେ ବାପ ଜଣେ ମହାଜନଠାରୁ କିଛି ଅର୍ଥ ନେଇ ପ୍ରତିଦାନରେ ତାର ଗୋଟିଏ ସନ୍ତାନକୁ ଆଜୀବନ ତା ପାଇଁ ଖଟିବାକୁ ଚୁକ୍ତିବଦ୍ଧ ହେଉଥିଲା। ଯଦି ସନ୍ତାନ ପଳାଇ ଆସୁଥିଲା ତାକୁ ଖୋଜି ଲୋଡ଼ି ଗିରଫ କରାଯାଉଥିଲା ଓ ପୁଣି ତାକୁ ମହାଜନଙ୍କୁ ଫେରାଇ ଦିଆଯାଉଥିଲା। ଏହା କ୍ରୀତଦାସ ପ୍ରଥାର ଏକ ରୂପ ଥିଲା । କୋରଫିଲ୍ଡ ଏହାର ବିଲୋପ

ଉଦ୍ୟମ କଲେ । ମହାରାଜା ତାଙ୍କ ଯୁକ୍ତିରେ ସନ୍ତୁଷ୍ଟ ହୋଇ ଏଥିରେ ସାଙ୍ଗେ ସାଙ୍ଗେ ସମ୍ମତି ଦେଲେ । ଅର୍ଥମନ୍ତ୍ରୀଙ୍କୁ କହି ଚମ୍ବଲ ନଦୀରେ ଗୋଟିଏ ପୋଲ ତିଆରି କଲେ ରାଜ୍ୟର ଦକ୍ଷିଣ ଅଂଶକୁ ଗମନାଗମନ ସୁବିଧାଜନକ ହେବ ଓ ଏଥିପାଇ ଅର୍ଥ ବ୍ୟବସ୍ଥା କରାଯାଇଥିଲା । ମାତ୍ର ମହାରାଜାଙ୍କର ବିଚିତ୍ର ନୀତି ଫଳରେ ଏହି ବିକାଶ ଉଦ୍ୟମ ସମ୍ଭବପର ହୋଇପାରିନଥିଲା । କୋରଫିଲ୍ଡଙ୍କର ଦୁଇବର୍ଷ କାର୍ଯ୍ୟକାଳ ଶେଷ ହେଲା । ମହାରାଜାଙ୍କ କାର୍ଯ୍ୟ ସମ୍ପାଦନାରେ ସେ କଣ୍ଟକ ରୂପେ ବିବେଚିତ ହେଉଥିଲେ ମଧ୍ୟ ତାଙ୍କୁ ବନ୍ଧୁ ଭାବରେ ମହାରାଜା ବିଦାୟ ଦେଲେ । ସ୍ମାରକୀ ସ୍ୱରୂପ ତାଙ୍କୁ ସୁନାର ଗୋଟିଏ ସିଗାରେଟ୍ କେସ୍ ଦେଲେ । କୋରଫିଲ୍ଡ ଏହି ସଶ୍ରଦ୍ଧ ଉପହାର ପ୍ରତ୍ୟାଖ୍ୟାନ କଲେ । ମହାରାଜା ହସି କରି ସୁଯୋଗ ଅପେକ୍ଷା କଲେ । ବଡ଼ଲାଟଙ୍କୁ ସାକ୍ଷାତ କରିବାକୁ ସେଦିନ ନିର୍ଦ୍ଦିଷ୍ଟ କଲେ । ନିଜ ଆଡ଼ଭାଇଜରଙ୍କୁ ସେ ସାଥିରେ ନେଲେ । ବଡ଼ଲାଟ ଥିଲେ ଲର୍ଡ଼ ୱେଲିଂଡ଼ନ । ପୂର୍ବରୁ ସେ ମାନ୍ଦ୍ରାଜ ଓ ବମ୍ବେରେ ମଧ୍ୟ ଗର୍ଭଣର ଥିଲେ । ତେଣୁ ଭାରତୀୟ ରୀତିନୀତି ସହିତ ସେ ସୁପରିଚିତ ଥିଲେ । ମହାରାଜାଙ୍କ ସାକ୍ଷାତ ସାରି ସେ କୋରଫିଲ୍ଡଙ୍କୁ ଡ଼ାକିଲେ । ଅନ୍ୟାନ୍ୟ ବିଷୟ ପରେ ସେ ତାଙ୍କୁ ପ୍ରଚଳିତ ଯେଉଁ ନିୟମ ଅନୁସାରେ ଭାରତୀୟମାନଙ୍କ ଠାରୁ କୌଣସି ଉପହାର ଗ୍ରହଣ କରିବା ମନା ସେ ବିଷୟରେ ତାଙ୍କର ମତ କଣ ? କୋରଫିଲ୍ଡ କହିଲେ ଯଦି ଉପହାର ଗ୍ରହଣ କରିବା ଦ୍ୱାରା ଉପହାରଦାତାଙ୍କୁ ଉପକୃତ କରାଯାଉନଥାଏ ତାହାହେଲେ ଏହା ଗ୍ରହଣ କରିବାରେ ଦୋଷ ନାହିଁ । ବଡ଼ଲାଟ ହସିଲେ । କହିଲେ ମୋର ମତ ମଧ୍ୟ ଠିକ୍ ସେଇଆ । ରେବା ମହାରାଜାଙ୍କ ଠାରୁ ବିଦାୟକାଳୀନ ଗୋଟିଏ ସୁନା ସିଗାରେଟ୍ କେସ କଣ ତୁମ୍ଭଙ୍କୁ ତାଙ୍କ ପ୍ରତି ଅନୁଗତ କରିବ । ନିଜ ଡ୍ରୟରଖୋଲି ସେ ସିଗାରେଟ୍ କେସଟିକୁ କୋରଫିଲ୍ଡଙ୍କୁ ଦେଲେ । ସେ ରଖିବା ଆଗରୁ କହିଲେ ପ୍ରକୃତରେ ଏହା ଅସଲି ସୁନା କି ନକଲି ପରୀକ୍ଷା କରାଯାଉ । ଅସଲ ସୁନାର ବୋଲି ଜଣାଗଲା । ଲର୍ଡ଼ ୱେଲିଂଡ଼ନ ଏହିପରି ଉଦାର ସ୍ୱଭାବର ବଡ଼ଲାଟ ଭାଇସରୟ ଥିଲେ । କୋରଫିଲ୍ଡ ବଦଳି ହୋଇ ଭାଇସରୟ ଦପ୍ତରରେ କାର୍ଯ୍ୟ କରିବାକୁ ଲାଗିଲେ ମାତ୍ର ରେବା ମହାରାଜାର ଆଚରଣରେ କୌଣସି ପରିବର୍ତ୍ତନ ଲକ୍ଷ କରାଗଲା ନାହିଁ ।

୧୯୪୨ ମସିହା ବେଳକୁ ରେବା ମହାରାଜାଙ୍କ କୁଶାସନ ସୀମା ଲଙ୍ଘନ କରି ସାରିଥାଏ । ତାଙ୍କର କ୍ଷମତା କାଢ଼ି ନିଆଗଲା ଓ ତାଙ୍କୁ ରାଜ୍ୟ ବାହାରେ ରହିବାକୁ ନିର୍ଦ୍ଦେଶ ଦିଆଗଲା । ତାଙ୍କ ବିରୁଦ୍ଧରେ ଗୋଟିଏ ପାଞ୍ଚ ଜଣିଆ ତଦନ୍ତ କମିଶନ ବସିଲା । କୁହାଯାଉଥାଏ ରାଜ୍ୟରେ ଅନ୍ତତଃ ୧୨ଗୋଟି ହତ୍ୟାକାଣ୍ଡରେ ସେ ସଂପୃକ୍ତ ଥିଲେ । ଏଥିରୁ କେବଳ

ଗୋଟିଏ ପ୍ରମାଣ ଯୋଗ୍ୟ ଥିଲା । ଅନ୍ୟଗୁଡ଼ିକରେ ସାକ୍ଷୀମାନେ ରାଜଭକ୍ତ ଥାଇ ସାକ୍ଷ୍ୟ ଦେବାକୁ ମନା କଲେ ବା ସେମାନଙ୍କୁ ପରିଣାମ ଜଣାଇ ଭୟଭୀତ କରାଯାଇଥିଲା। କମିଶନରେ ଦୁଇଟି ଅଭିଯୋଗ ବିଚାର ଯୋଗ୍ୟ ଥିଲା। ଶଙ୍କର ପ୍ରସାଦ ନାମକ ଜଣେ ବ୍ୟକ୍ତିଙ୍କର ହତ୍ୟାରେ ସେ ପ୍ରତ୍ୟକ୍ଷ ସମ୍ପୃକ୍ତ ଥିଲେ। ଦ୍ୱିତୀୟରେ ନିଜର ଏଜେଣ୍ଟ ଲଗାଇ ସେ କେନ୍ଦ୍ରାଞ୍ଚଳ ରେସିଡ଼େଣ୍ଟ ଅଫିସର କର୍ମଚାରୀମାନଙ୍କୁ ଲାଞ୍ଚ ଦେଇ ଅଫିସର ଗୁପ୍ତ ଖବର ସଂଗ୍ରହ କରିଥିଲେ। କମିଶନ ୧୯୪୩ ଜାନୁୟାରୀରେ ରିପୋର୍ଟ ଦେଲେ। ୩ଜଣ ଭାରତୀୟ ସଭ୍ୟ ତାଙ୍କୁ ଦୋଷମୁକ୍ତ କଲେ। ମାତ୍ର ଦୁଇଜଣ ବ୍ରିଟିଶ ସଭ୍ୟ ତାଙ୍କୁ ଦୋଷୀ ସାବ୍ୟସ୍ତ କରି ସବୁ ଅପରାଧ ପ୍ରମାଣିତ ବୋଲି ରିପୋର୍ଟ ଦେଲେ। ଏମିତି ଦୁଇଗୋଟି ରିପୋର୍ଟ ମିଳିଲା । ମହାମାନ୍ୟ ସମ୍ରାଟଙ୍କର ପ୍ରତିନିଧି ଭାଇସରୟ, ସବୁ ବିଷୟ ବିବେଚନା କରି ଦୁଇ ଗୁରୁତର ଅପରାଧ ନ୍ୟାୟିକ ବ୍ୟବସ୍ଥା ଅନୁସାରେ ସୁପ୍ରମାଣିତ ହୋଇଛି ବୋଲି ମନେ କଲେ ନାହିଁ। କିନ୍ତୁ ଲାଞ୍ଚ ଦେବା ପ୍ରମାଣିତ ହୋଇଥିଲା । ମହାରାଜାଙ୍କୁ ରାଜ୍ୟକୁ ଫେରିବାକୁ ଅନୁମତି ମିଳିଲା ନାହିଁ। ରାଜ୍ୟରେ ଶାସନ ବ୍ୟବସ୍ଥାରେ ସଂସ୍କାର ଆଣି ଶାସନ ସଜଡା ଯିବା ଓ ସମ୍ରାଟଙ୍କ ପ୍ରତିନିଧିଙ୍କର ଏ ଦିଗରେ ହୃଦବୋଧ ହେବା ପର୍ଯ୍ୟନ୍ତ ଏହି ବ୍ୟବସ୍ଥା ରହିବା ସ୍ଥିର ହେଲା। ଏହି ଲକ୍ଷରେ ସାର ଏଡ଼ୱାର୍ଡ଼ ୱେକଫିଲ୍ଡ ନାମକ ଜଣେ ଟାଣୁଆ ଦକ୍ଷ ଅଫିସରଙ୍କୁ ରେୱାର ଦେୱାନ ଭାବରେ ୧୯୪୩ ଡିସେମ୍ବର ଦ୍ୱିତୀୟ ସପ୍ତାହରେ ନିଯୁକ୍ତ କରାଗଲା। ୱେକଫିଲ୍ଡ ସୁଶାସନ ପରିବର୍ତ୍ତନ ନିମିତ୍ତ ଅଭିଜ୍ଞ କୋରଫିଲ୍ଡଙ୍କ ପରାମର୍ଶ ନେଲେ। ଦଶବର୍ଷ ତଳେ ସେ କାର୍ଯ୍ୟ କରିଥିଲେ। ମହାରାଜା ତାଙ୍କର ଦୋଷ ତ୍ରୁଟି ଖୋଜିବେ ଓ ସେହି ଜରିଆରେ ସେ ଦେୱାନଙ୍କୁ କରଗତ କରିବାକୁ ଚେଷ୍ଟା କରିବେ ବୋଲି ସେ ସାବଧାନ କରିଦେଲେ । ଏହା ବ୍ୟତୀତ ମହାରାଜାଙ୍କୁ ଉଚିତ ମର୍ଯ୍ୟାଦା ଦେଖାଇବା ତାଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ମିଳିବାରେ ସବୁ ପ୍ରକାର ସୁବିଧା କରିବା ଓ ତାହା ସହ ପ୍ରଶାସନର ନୀତି ଦୃଢ଼ତାର ସହିତ ପାଳନ କରି ବିନା ସାଲସରେ ତାଙ୍କ ସାମାନ୍ୟ ଅନୁରୋଧ ଗ୍ରହଣ କରିବା ନିମିତ୍ତ କୋରଫିଲ୍ଡ ପରାମର୍ଶ ଦେଲେ। ମହାରାଜା ଏକ ପାପଗ୍ରହ। ସାମାନ୍ୟ ତ୍ରୁଟି ଦେଖି ବା ସାମାନ୍ୟ ଦୋଷରେ କଳୁଷିତ କରି ସେ ଦେୱାନଙ୍କୁ କରାୟତ୍ତ କରିବେ। ଏଥିପାଇଁ ସାବଧାନ ରହିବାକୁ ସେ ପରାମର୍ଶ ଦେଲେ। କୋରଫିଲ୍ଡ ୧୯୩୪ ମସିହାରେ ରାଜ୍ୟର ଜମିଦାରମାନଙ୍କ ଯେଉଁ ସବୁ ଅଧିକାର ଉପଭୋଗ ନିମିତ୍ତ ଗ୍ୟାରେଣ୍ଟି ଦେଇଥିଲେ। ତହା ମହାରାଜା ମାନୁ ନଥିବାରୁ ସେମାନେ ବିରୋଧରେ ଥିଲେ। ସେମାନଙ୍କର ମୁଖ୍ୟ ଥିଲେ ଚୋରହାଟର ରାଓ। ସେ ଜଣେ ଅତି ଦକ୍ଷ ସଂଗଠକ ଥିଲେ

ତାଙ୍କୁ ନିଜ ସପକ୍ଷରେ ରଖିବାକୁ କୋରଫିଲ୍ଡ ପରାମର୍ଶ ଦେଇଥିଲେ। ନୂଆ ଦେଓ୍ୱାନଙ୍କର ପ୍ରଥମ କାମ ହେଲା ଶାସନକୁ ସଜାଡ଼ିବା । ଶାସନ ପୁରୁଣା କାଳିଆ ଥିଲା। କର୍ମଚାରୀମାନେ ଲାଞ୍ଚୁଆ ଓ ଅକର୍ମା । ଅପରାଧିମାନଙ୍କୁ ଧରିବାକୁ ପୁଲିସ ସନ୍ଦେହୀମାନଙ୍କୁ ନିର୍ଯ୍ୟାତନା ଦେଇ ମକଦ୍ଦମା ତଦନ୍ତ କରୁଥିଲେ। ଶାସନକୁ ଏପରି ସଜାଡ଼ିବାକୁ ହେବ ଯେପରି ମହାରାଜାଙ୍କ ଲାଞ୍ଚ ବା ଅନ୍ୟ ପ୍ରକାର ପ୍ରଲୋଭନ କାମ କରିବ ନାହିଁ। ସେ ନିଜର ବ୍ୟକ୍ତିଗତ ପାଚକ ଓ ଭୃତ୍ୟ ନିଜ ସାଙ୍ଗରେ ଆଣିଥିଲେ। ତାଙ୍କର ଷ୍ଟେନୋ ଖ୍ରୀଷ୍ଟିୟାନ ଥିଲେ । ମହାରାଜା ତାଙ୍କୁ ସେ ସ୍ଥାନୀୟ ଲୋକ ହୋଇ ନଥିବାରୁ ବିଶ୍ୱାସ କରି ଦେଓ୍ୱାନଙ୍କ ବିରୁଦ୍ଧରେ ଲଗାଇବେ ନାହିଁ । ଦେଓ୍ୱାନଙ୍କ ଜମାଦାର ଛୋଟୁରାମ ଖୁବ ଦକ୍ଷ ଓ ପରିଶ୍ରମୀ ଥିଲେ। ସେ ନିଜକୁ ଇଂରେଜ ଜାଣିନାହାନ୍ତି ବୋଲି କହୁଥିଲେ ମଧ୍ୟ ଥରେ ଗୋଟିଏ ଇଂରେଜ ଚିଠି ଯାହା ପଠାଯାଇଥିଲା ତାକୁ ପଢ଼ିବା ଦେଖି ଦେଓ୍ୱାନ ତାଙ୍କ ପ୍ରତି ସତର୍କ ରହିଲେ । ବାହାରେ ସେ ଜମାଦାର ଇଂରେଜ ନ ଜାଣିଥିବା ପ୍ରକାଶ କଲେ। ବିଶେଷ ଗୁରୁତ୍ୱପୂର୍ଣ୍ଣ ନ ଥିଲେ ଚିଠି ସେ ପଢ଼ିବା ଭଳିଆ ଖୋଲା ଜାଗାରେ ରଖୁଥିଲେ ଓ ଜମାଦାର ତାହା ପଢ଼ି ବିଷୟବସ୍ତୁ ମହାରାଜାଙ୍କୁ ଜଣାଉଥିଲେ। ସୁରକ୍ଷା ନିମିତ୍ତ ଦିଲ୍ଲୀ ସହିତ ଚିଠିପତ୍ର କୋଡ଼ରେ ହେଉଥିଲା। ଏହି କୋଡ଼ କେବଳ ଦେଓ୍ୱାନଙ୍କୁ ଜଣାଥିଲା। ଗୁରୁତ୍ୱପୂର୍ଣ୍ଣ ଚିଠି ସତନାରୁ ରେଲୱେ ମେଲ ଯୋଗେ ପଠାଯାଉଥିଲା। ଦେଓ୍ୱାନ ଗୃହମନ୍ତ୍ରୀ ହୋଇ ନିଜ ହାତରେ ସ୍ୱରାଷ୍ଟ୍ର ବିଭାଗ ରଖିଲେ। ଚୋରହାଟର ରାଓଙ୍କୁ ସେ ଶିକ୍ଷକମାନଙ୍କର ଆନ୍ଦୋଳନ ପ୍ରତ୍ୟାହତ କରିବାକୁ ଶିକ୍ଷା ମନ୍ତ୍ରୀ କଲେ। ସେ ମହାରାଜାଙ୍କର ଘୋର ବିରୋଧି ଥିଲେ। ଉତ୍ତର ପ୍ରଦେଶରୁ ଜଣେ ଦକ୍ଷ ଅଫିସର ମଗାଇ ତାଙ୍କୁ ସେ ପୁଲିସ ବିଭାଗର ମୁଖ୍ୟ ଆଇଜି କଲେ। ଆଗରୁ ରାଜ୍ୟ ସୈନିକ ବିଭାଗର ମୁଖ୍ୟ ବ୍ରିଗେଡ଼ିଅର ଜୟସିଂହଙ୍କୁ ସେ ନିଜ ପଦରେ କାର୍ଯ୍ୟ କରିବାକୁ ସୁଯୋଗ ଦେଲେ। ଗୃହମନ୍ତ୍ରୀ ଭାବରେ ତାଙ୍କୁ ଜଣେ ଯୋଗ୍ୟ ପୁରୁଣା କର୍ମଚାରୀ ମିଳିଲେ। ଯିଏ ମହାରାଜାଙ୍କ ବିରୁଦ୍ଧରେ କମିଶନ ଆଗରେ ଅଭିଯୋଗମାନ ଉପସ୍ଥାପିତ କରିଥିଲେ। ତେଣୁ ସେ ଦେଓ୍ୱାନଙ୍କ ବିରୁଦ୍ଧରେ କାର୍ଯ୍ୟ କରିବା ସମ୍ଭାବନା ନଥିଲା। ବମ୍ବେରୁ ଜଣେ ଦକ୍ଷ ଓ ନିର୍ମଳ ଚରିତ୍ରର କର୍ମଚାରୀ ମଗାଇ ଆଣି ତାଙ୍କୁ ସେ ରାଜ୍ୟର ଶିଳ୍ପ ଓ ବାଣିଜ୍ୟମନ୍ତ୍ରୀ କଲେ। ମହାରାଜାଙ୍କ ଅନୁଗତମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖାଗଲା। ରାଜ୍ୟର ଅଳ୍ପ ଡାକ୍ତରଖାନାମାନଙ୍କରେ ବେଶି ଯୌନରୋଗୀ ଚିକିତ୍ସିତ ହେଉଥିଲେ। ଲଙ୍ଗୁଳୀ ସାଧୁମାନେ ପାଉଁଶ ବୋଳି ହୋଇ ଗାଁମାନଙ୍କରେ ବୁଲୁଥିଲେ। ଆତିଥେୟତା ଗ୍ରହଣ କରି ମହିଳାମାନଙ୍କ ସହ ଯୌନ ବ୍ୟଭିଚାର ଯୋଗୁ ଏହି ରୋଗ

ବ୍ୟାପୁଥିଲା । ବିଦ୍ୟାଳୟ ମାନଙ୍କରେ ୭୦/୮୦ଜଣ ଛାତ୍ର ଗୋଟିଏ ଶ୍ରେଣୀରେ ପଢୁଥିଲେ । ଶିକ୍ଷକମାନେ ଅଶିକ୍ଷିତ ବା ଅର୍ଦ୍ଧ ଶିକ୍ଷିତ ଥିବାରୁ ଶିକ୍ଷାକ୍ଷେତ୍ରରେ ଉନ୍ନତି ହେଉନଥିଲା । ପୁଲିସ ଥାନାରେ ଅପରାଧିଠାରୁ ସ୍ୱୀକାରୋକ୍ତି ବାହାର କରିବାକୁ ନାନା ପ୍ରକାର ଯନ୍ତ୍ରଣା ଦେଉଥିଲେ । ଦେଓ୍ୱାନ ଏସବୁ ସମାଧାନ ଦିଗରେ ଦୃଷ୍ଟି ଦେଲେ । ମାତ୍ର ଶିଳ୍ପ ବାଣିଜ୍ୟ କ୍ଷେତ୍ରରେ ତାଙ୍କ କାର୍ଯ୍ୟ ଦକ୍ଷତା ବିଶେଷ ଭାବେ ପ୍ରକାଶ ପାଇଲା । ରାଜ୍ୟର ୬ ହଜାର ବର୍ଗମାଇଲ ଜଙ୍ଗଲରେ ବହୁତ ଲାଖ ମିଳୁଥିଲା । ଏହା ସଂଗୃହୀତ ହୋଇ ରାଜ୍ୟ କାରଖାନାକୁ ଆସୁଥିଲା । ମାତ୍ର ଆଣୁଥିବା ଲୋକେ ଭଲ ମଜୁରୀ ପାଉନଥିଲେ ଓ କାରଖାନା ମଧ୍ୟ ପରିଚାଳନା ଦୋଷରୁ ଲାଭ ଦେଖାଉ ନଥିଲା । ଦେଓ୍ୱାନ ଯୁଦ୍ଧ ଉଦ୍ୟମରେ ଲାଖର ଆବଶ୍ୟକତା ଅବଗତ ଥାଇ କାରଖାନା ପରିଚାଳନାରେ ଉନ୍ନତି ଆଣିଲେ । ସଂଗ୍ରହ ମଜୁରୀ ଦି'ଗୁଣା କଲେ । କାରଖାନାରୁ ମାଲ ଯୁଦ୍ଧ ଉଦ୍ୟମରେ ବ୍ୟବହାର ନିମିତ୍ତ ପଠାଯାଇ ରାଜସ୍ୱ ତିନିଗୁଣ ବଢ଼ାଗଲା । ରାଜ୍ୟରେ ଚାଉଳ ଉତ୍ପାଦନ ରାଜ୍ୟର ଆବଶ୍ୟକତା ତୁଳନାରେ ଯଥେଷ୍ଟ ବେଶି ଥିଲା । ବଙ୍ଗ ପ୍ରଦେଶରେ ଦୁର୍ଭିକ୍ଷ ପଡ଼ିଥାଏ । ବେଶି ପଇସା ଦେଇ କିଣିବାକୁ ବ୍ୟବସାୟୀମାନେ ବାହାରିଲେ ମାତ୍ର ସେ ନିଜେ ଦିଲ୍ଲୀରେ ଉଦ୍ୟମ କରି ଓ ବେପାରୀମାନେ ଜବଲପୁରରେ ରେଲକର୍ମଚାରୀମାନଙ୍କୁ ଧରା ଧରି କରି ଲାଞ୍ଚ ଦେଇ ରେଲଓ୍ୱେବାଗନ ପାଇପାରୁନଥିଲେ । ଚାହିଦା ବହୁତ । ମାଲ ମାତ୍ର ପଡ଼ିରହିଲା । ଚାଷୀ ମୂଲ୍ୟ ପାଇପାରୁନଥିଲା । ଏହି ଅବସ୍ଥାରେ ଦେଓ୍ୱାନ ରାଜ୍ୟ ମଧ୍ୟରେ ୩/୪ଗୋଟି ରେଲଷ୍ଟେସନ ବାଛିଲେ । ସେଠାରେ ମାଲ, ଗୋଦାମରେ ରଖିବାର ସୁବିଧା ଥିଲା । ରାଜ୍ୟରେ ଉତ୍ପାଦିତ ସମୁଦାୟ ବଳକା ଚାଉଳ ରାଜ୍ୟ ସରକାର କିଣିନେଲେ । ଏହି ଷ୍ଟେସନ ମାନଙ୍କରେ ଏହି ମାଲ ଠିକାଦାରମାନଙ୍କୁ ପେଟ୍ରୋଲ ଯୋଗାଇ ସେମାନଙ୍କର ଟ୍ରକରେ ଅଣାଯାଇ ଗୋଦାମମାନଙ୍କରେ ରଖାଗଲା । ବଙ୍ଗ-ସରକାର ଆବଶ୍ୟକତା ଦୃଷ୍ଟିରୁ ମାଲ କିଣି ନେଲେ ଓ ସେମାନେ ନିଜ ଦାୟିତ୍ୱରେ ଓ୍ୱାଗନରେ ମାଲ ନେବାର ବ୍ୟବସ୍ଥା କଲେ । ରାଜ୍ୟର ଏହି ଖରିଦ ବିକ୍ରି ଫଳରେ ପ୍ରଚୁର ଲାଭ ହେଲା ଓ ଚାଷୀ ମଧ୍ୟ ନିଜ ମାଲ ଉଚିତ ମୂଲ୍ୟରେ ବିକ୍ରି କରି ଭଲ ଦି'ପଇସା ରୋଜଗାର କଲେ । ଏହି ଯୋଜନା କାର୍ଯ୍ୟକାରୀ କରିବା ବଡ଼ କଷ୍ଟକର ଥିଲା । ମାତ୍ର ଦେଓ୍ୱାନ ନିଜ ଅଭିଜ୍ଞତା ହେତୁ ଏହା ସଫଳ କରି ସୁନାମ ଲାଭ କଲେ ।

ବ୍ରିଟିଶ ଦେଓ୍ୱାନ ନିଯୁକ୍ତି ହେତୁ ରାଜ୍ୟରେ ସୁଶାସନ ଫେରିଲେ ମହାରାଜା ରାଜ୍ୟକୁ ଆସିବେ, ଏହା ତାଙ୍କୁ କୁହାଯାଇଥାଏ । ବାରମ୍ବାର ସେ ଏଥିପାଇଁ ନିବେଦନ କରୁଥାଆନ୍ତି ।

୧୯୪୪ ମସିହାରେ ଭାଇସରୟ ଆଉ ଅଧିକ ଦିନ ତାଙ୍କୁ ରାଜ୍ୟ ବାହାରେ ରଖିବାକୁ ଉଚିତ ମନେକଲେ ନାହିଁ। ଦେୱାନଙ୍କୁ ପ୍ରସ୍ତୁତ ହେବାପାଇଁ କୁହାଗଲା। ସେ ସୁରକ୍ଷା ବ୍ୟବସ୍ଥାର ସମୀକ୍ଷା କଲେ। ଜୁଲାଇ ୧୯୪୪ରେ ରାଜ୍ୟକୁ ମହାରାଜା ଫେରିବା ସମ୍ଭବ ବୋଲି ଦେୱାନ ପ୍ରସ୍ତୁତ ଥିବା ଜଣାଇଲେ, ମାତ୍ର ସେ ଜାଣିଥିଲେ ମହାରାଜା ହିନ୍ଦୀ ଓ ସ୍ଥାନୀୟ ଭାଷାରେ ବାକପଟୁ। ସୁଯୋଗ ପାଇଲେ ସେ ଲୋକମାନଙ୍କୁ ଭାରତ ସରକାର ବିରୁଦ୍ଧରେ ମତାଇ ଦେଇପାରିବେ। ପ୍ରଜାମାନେ ଏତେଦିନି ପରେ ରାଜା ଫେରୁ ଥିବାରୁ ତାଙ୍କୁ ଦେଖିବାକୁ ଆଗ୍ରହୀ ଥିଲେ। ଗାଁ ମାନଙ୍କରୁ ହଜାର ହଜାର ଲୋକ ଏକାଠି ହେବାର ସମ୍ଭାବନା ଥିଲା। ସହରର ଦୋକାନୀମାନେ ମଧ୍ୟ ନିଜ ଦୋକାନ ସଜାଇବାରେ ଆଗ୍ରହୀ ଥିଲେ। ନାଗ ଚତୁର୍ଥୀ ଏକ ପର୍ବ। ଏଦିନ ସରକାରୀ ଛୁଟି ଥାଏ। ମହାରାଜା ଏହି ଦିନ ଫେରିବାକୁ ଠିକ କଲେ। ପ୍ରଜାମାନଙ୍କୁ ଏକାଠି ହେବା ବା ଦୋକାନୀ ମାନଙ୍କୁ ଦୋକାନ ସଜାଇବା ମନା କରି ହେବନାହିଁ । ତେଣୁ ଦେୱାନ ମହାରାଜାଙ୍କୁ ବୁଝାଇଦେଲେ ଯଦି ସେ ତାଙ୍କର ରାଜ୍ୟ ପ୍ରତ୍ୟାବର୍ତ୍ତନ ଘରୋଇ ରଖନ୍ତି ଓ ସର୍ବ ସାଧାରଣରେ କିଛି ପ୍ରଦର୍ଶନ ନ କରନ୍ତି ତାହାହେଲେ ମହାମାନ୍ୟ ସମ୍ରାଟଙ୍କର ପ୍ରତିନିଧି ସନ୍ତୁଷ୍ଟ ହେବେ। ଶୀଘ୍ର ଫେରିବାକୁ ବ୍ୟଗ୍ରଥିବାରୁ ଅନିଚ୍ଛା ସତ୍ତ୍ୱେ ମହାରାଜା ଏଥିରେ ରାଜି ହେଲେ। ରେୱା ରାଜ୍ୟ ତମାମ ପ୍ରଚାରିତ ହେଲା ଯେ ମହାରାଜା ଘରୋଇ ଭାବରେ ଆସୁଛନ୍ତି ଓ ତାଙ୍କ ପାଇଁ କୌଣସି ଅଭ୍ୟର୍ଥନାର ବନ୍ଦୋବସ୍ତ ଅନାବଶ୍ୟକ। ଏହା ଲୋକେ ବୁଝିଗଲେ। ଶେଷରେ ୧୯୪୪ ଜୁଲାଇ ୨୫ତାରିଖ ଉପରବେଳା ଘ୪.୩୦ମି.ରେ ମହାରାଜା ସାତନା ଷ୍ଟେସନରେ ପହଞ୍ଚିଲେ । ତାଙ୍କ ସାଲୁନ ଆଗପଛ ହୋଇ ଶେଷରେ ତାଙ୍କ ପାଇଁ ପଡ଼ିଥିବା ନାଲି ଗାଲିଚା ପାଖରେ ରହିଲା । ଦେୱାନଙ୍କୁ ଉପେକ୍ଷା କରି ସେ ନିଜର କିଛି ଅନୁଗତମାନଙ୍କୁ ସଙ୍ଗରେ ନିଜ ଗାଡ଼ିରେ ଗଡ଼କୁ ଫେରିଲେ। ଦେୱାନ ପଛରେ ନିଜ ଗାଡ଼ିରେ ଗଲେ। ରେୱାଠାରୁ ଦୁଇ ମାଇଲ ଦୂରରେ ପୂର୍ବ ବ୍ୟବସ୍ଥା ଅନୁସାରେ ତାଙ୍କ ଗାଡ଼ି ଅଟକାଇ ମହାରାଜାଙ୍କୁ ମନ୍ତ୍ରୀମାନେ ଅଭ୍ୟର୍ଥନା ଦେବାକୁ ଅପେକ୍ଷା କରିବା ଦେୱାନ ଜଣାଇଲେ। ଇଚ୍ଛା ନଥିଲେ ମଧ୍ୟ ସେ ଗାଡ଼ିରୁ ଓହ୍ଲାଇଲେ ଓ ଦେୱାନ ଜଣ ଜଣଙ୍କର ମନ୍ତ୍ରୀମାନଙ୍କୁ ତାଙ୍କୁ ଚିହ୍ନାଇ ଦେଲେ। ତାଙ୍କର ଘୋର ଶତ୍ରୁ ଚୋରହାଟର ରାଓଙ୍କୁ ଚିହ୍ନାଇ ଦେବାବେଳେ ଯେପରି ଭାବରେ ଉଭୟ କରମର୍ଦ୍ଦନ କଲେ ସେଥିରୁ ଅନୁମାନ କରିବା ସମ୍ଭବ ନଥିଲା ଯେ ସେମାନେ ପୂର୍ବତନ ଶତ୍ରୁ ଅଟନ୍ତି। ପୁଲିସ ବ୍ୟବସ୍ଥା ଅନୁସାରେ ମହାରାଜାଙ୍କୁ ନିର୍ଦ୍ଧାରିତ ରାସ୍ତାରେ ତାଙ୍କ ଦୁର୍ଗକୁ ନିଆଗଲା। ବଜାରର ସାଜସଜ୍ଜା ତାଙ୍କ ଆଖିରେ ପଡ଼ିଲାନାହିଁ।

ଦେୱାନ ମହାରାଜାଙ୍କୁ ସେ ତାଙ୍କ ସେବା ନିମିତ୍ତ ସତତ ପ୍ରସ୍ତୁତ ଅଛନ୍ତି ଜଣାଇ ଏକ ପତ୍ର ପଠାଇଲେ। ପାଞ୍ଚଦିନ ପରେ ସେ ତାଙ୍କୁ ଚା' ଖାଇବାକୁ ଡାକିଲେ। କଥାବାର୍ତ୍ତା ସମୟରେ ସମ୍ରାଟଙ୍କର ପ୍ରତିନିଧି ତାଙ୍କ ପରି ଅନ୍ୟାୟ କରିଛନ୍ତି ବୋଲି ସେ ଅଭିଯୋଗ କଲେ। ଶିକ୍ଷାମନ୍ତ୍ରୀ ଚୋରହାଟର ରାଓ ଗୋଟାଏ ବିଷଧର ସାପ ଓ ତା' ପ୍ରତି ହୁସିଆର ରହିବାକୁ ସେ ପରାମର୍ଶ ଦେଲେ। ତାଙ୍କର ଏକମାତ୍ର ପୁତ୍ର ମାର୍ତ୍ତଣ୍ଡ ସିଂହ ମହୀଶୂରରେ ପ୍ରଶାସନିକ ଶିକ୍ଷା ଗ୍ରହଣ କରୁଥିଲେ। ତାଙ୍କ ବୟସ ୨୧ ବର୍ଷ ହୋଇଗଲାଣି। ପୁତ୍ରକୁ ରେୱା ଆସି ତାଙ୍କୁ ସାକ୍ଷାତ କରିବାରେ ସେ ଦେୱାନଙ୍କ ସାହାଯ୍ୟ ଲୋଡ଼ିଲେ। ଦେୱାନ ଉଦ୍ୟମ କରିବେ ବୋଲି କହିଲେ।

ମହାରାଜାଙ୍କର ଦୁଇରାଣୀ ଥିଲେ। ଜ୍ୟେଷ୍ଠରାଣୀ ଯୋଧପୁର ମହାରାଜାଙ୍କ ଭଉଣୀ ଥିଲେ। ମାର୍ତ୍ତଣ୍ଡ ତାଙ୍କ ପୁତ୍ର ଥିଲେ। ମହରାଜାଙ୍କ ଫେରିବାର ସପ୍ତାହେ ଆଗରୁ ବଡ଼ ମହାରାଣୀ ଯୋଧପୁରରୁ ଫେରିଲେ। ତାଙ୍କ ସାଙ୍ଗରେ ସେ ସାର ଅଜିତ ସିଂହ ବୋଲି ଜଣେ ବିଶ୍ୱସ୍ତ ସମ୍ପର୍କୀୟଙ୍କୁ ଆଣିଥିଲେ। ମହାରାଜାଙ୍କ ସହିତ ସୁସମ୍ପର୍କ ନଥିବାରୁ ମହାରାଣୀଙ୍କୁ ଦରକାର ବେଳେ ସାହାଯ୍ୟ ଦେବାକୁ ସେ ଦେୱାନଙ୍କ ପ୍ରତିଶ୍ରୁତି ଚାହିଁଲେ। ଦେୱାନ ଉଦ୍ୟମ କରିବେ ବୋଲି କହିଲେ। ମହାରାଜା ଫେରିବାର ଅଳ୍ପଦିନ ପରେ ଦିନେ ରାତି ଗୋଟାଏ ବେଳେ ମହାରାଣୀ ତାଙ୍କୁ ଫୋନ୍‌ରେ ଜଣାଇଲେ ଯେ ତାଙ୍କୁ ବିଷ ଦିଆଯାଇଛି । ତାଙ୍କୁ ଶୀଘ୍ର ମୃତ୍ୟୁମୁଖରୁ ସେ ରକ୍ଷା କରନ୍ତୁ। ପୋଷାକ ପିନ୍ଧି ରାଣୀଭବନକୁ ରାତିରେ ବାହାରିବାବେଳେ ତାଙ୍କର କୋରଫିଲ୍ଡଙ୍କ ପରାମର୍ଶ ମନେପଡ଼ିଲା। ମହାରାଜା ରାତି ପାହିବାବେଳକୁ ଦେୱାନଙ୍କୁ ରାଣୀ ଭବନରେ ଦେଖି ତାଙ୍କର କୁତ୍ସା କରିବାର ସୁଯୋଗ ପାଇବେ। ସେ ନଯିବାକୁ ଠିକ କଲେ। ରାଜ୍ୟର ମୁଖ୍ୟ ଚିକିତ୍ସକ କର୍ଣ୍ଣେଲ ମକନ୍ଦଙ୍କୁ ମହାରାଣୀ ଅସୁସ୍ଥ ଓ ତାଙ୍କର ଆଶୁ ଚିକିତ୍ସା ଦରକାର ବୋଲି ସେ ନିର୍ଦ୍ଦେଶ ଦେଲେ। ଡାକ୍ତର ଯାଇ ବିଷ ନିରାକରଣ ଚିକିତ୍ସା କରିବାରୁ ମହାରାଣୀ ସୁସ୍ଥ ହେଲେ। ପରବର୍ତ୍ତୀ ସମୟରେ ଏ ବିଷୟରେ ମହାରାଜା ବା ମହାରାଣୀ କେହି ତାଙ୍କୁ ପଚାରିନଥିଲେ।

ଅଗଷ୍ଟ ମାସରେ ବାରମ୍ବାର ମହାରାଜା ଦେୱାନଙ୍କୁ ତାଙ୍କ ପୁତ୍ର ମାର୍ତ୍ତଣ୍ଡ ରେବା ଫେରିବା ବ୍ୟବସ୍ଥା କରିବାକୁ ଅନୁରୋଧ କଲେ। ମହାରାଜାଙ୍କର ଆଚରଣରେ କିଛି ତ୍ରୁଟି ନଥିବା ଦେଖି ଦେୱାନ ମହାରାଜ କୁମାର ସେପ୍ଟେମ୍ବର ମାସରେ ନିଜ ଟ୍ୟୁଟର ମିଷ୍ଟର ଓୱେନ (Owen)ଙ୍କ ସହିତ କିଛିଦିନ ପାଇଁ ରେବା ଫେରିବାର ବ୍ୟବସ୍ଥା କଲେ।

ନିଜ କାମ ହାସଲ କରି ସାରିବା ପରେ ମହାରାଜାଙ୍କ ଆଚରଣରେ ପରିବର୍ତ୍ତନ ଘଟିଲା। ସେପ୍ଟେମ୍ବରରେ ଦଶହରା। ଏହି ସମୟରେ ରାଜ୍ୟର ସବୁ ଜମିଦାରମାନେ ସେମାନଙ୍କୁ ଦିଆଯାଇଥିବା ସନନ୍ଦ ଅନୁସାରେ ନିର୍ଦ୍ଦିଷ୍ଟ ସିପାହୀ ହାତୀ, ଓଟ ଓ ଘୋଡ଼ା ଧରି ପ୍ୟାରେଡ଼ରେ ଯୋଗଦେବାରେ ବିଧି ଅଛି। ସେମାନେ ସେହି ନିର୍ଦ୍ଦେଶ ପାଳନ କଲେ, ମାତ୍ର ମହାରାଜା କେତେକ ଜମିଦାର ଚୁକ୍ତି ମୁତାବକ ସୈନିକ ଓ ଜନ୍ତୁ ପଠାଇ ନାହାନ୍ତି, କେତେକ ନିଜେ ନଆସି ସେମାନଙ୍କର ପୁଅ ପୁତୁରା ପଠାଇ ଅଛନ୍ତି ବୋଲି ଅଭିଯୋଗ କରି ସେମାନଙ୍କଠାରୁ କୈଫିୟତ ମାଗି ଏହା ସନ୍ତୋଷଜନକ ନ ହେଲେ ଜମିଦାରୀରୁ ଉଚ୍ଛେଦ କରିବାକୁ କହିଲେ। ମହାରାଜା ସେନାପତି ବ୍ରିଗେଡ଼ିଅର ଜୟ ସିଂହ ତାଙ୍କୁ ବଜାରରେ ଦେଖି ଉଚିତ ମର୍ଯ୍ୟାଦା ପ୍ରଦର୍ଶନ କରିନାହାନ୍ତି ବୋଲି ଅଭିଯୋଗ କଲେ। ବିନା ସର୍ତ୍ତରେ କ୍ଷମା ପ୍ରାର୍ଥନା ନ କଲେ ତାଙ୍କୁ ଚାକିରୀରୁ ଅବ୍ୟାହିତ ଦେବା ମହାରାଜାଙ୍କର ଇଚ୍ଛା ଥିଲା। ମାତ୍ର ବ୍ରିଗେଡ଼ିଅର ଜୟ ସିଂହ ମହାରାଜାଙ୍କୁ ଆଦୌ ବଜାରରେ ଦେଖି ନଥିବା ଦୃଢ଼ ଭାବରେ ପ୍ରକାଶ କଲେ। ଏସବୁ ମହାରାଜାଙ୍କର ବିରୋଧ ଆଚରଣ ଦେଖି ନୀତିଗତ ନିଷ୍ପତ୍ତିରେ ଅଟଳ ରହିବାକୁ କୋରଫିଲ୍ଡ ଦେଇଥିବା ପରାମର୍ଶ ଦେଓ୍ୱାନ ମନେ ପକାଇଲେ । ସେ କୌଣସି କାର୍ଯ୍ୟାନୁଷ୍ଠାନ କଲେନାହିଁ। ତାଙ୍କର ଅନୁରୋଧ ପୂରଣ ହେବା ପର୍ଯ୍ୟନ୍ତ ମହାରାଜା ସୁବୋଧ ଥିଲେ ମାତ୍ର ବର୍ତ୍ତମାନ ସେ ନିଜ ମତିଗତି ବଦଳାଇ ଅଛନ୍ତି ଦେଓ୍ୱାନଙ୍କର ଏହା ହୃଦବୋଧ ହେଲା। ଆଗରୁ କୁହାଯାଇଛି ବଜେଟରେ ଅର୍ଥ ବ୍ୟବସ୍ଥା ଥାଇ କାର୍ଯ୍ୟ ନ ହୋଇ ଅବ୍ୟବହୃତ ପାଣ୍ଠି ମହାରାଜାଙ୍କ ହାତପାଣ୍ଠିକୁ ଚାଲିଯାଏ ଏହିପରି ଭାବରେ ସେ ନିଜର ହାତପାଣ୍ଠି ବ୍ୟାଙ୍କ ଅଫ ଇଂଲଣ୍ଡରେ କୋଡ଼ିଏ ଲକ୍ଷ ପାଉଣ୍ଡ (ଭାରତୀୟ ମୁଦ୍ରାରେ ୨କୋଟି ୬୬ଲକ୍ଷ ୬୦ହଜାର ଟଙ୍କା) ଜମା ରଖିଥିଲେ। ମାହାମାନ୍ୟ ସମ୍ରାଟଙ୍କର ପ୍ରତିନିଧି ଏହି ଅର୍ଥ ସମୁଦାୟ ବା ବିଶେଷ ଅଂଶ ରାଜ୍ୟର ବୋଲି ହୃଦବୋଧ କରି ଏ ବିଷୟରେ ତଦନ୍ତ କରୁଥିଲେ। ବାଇଶି ବରଷ ରାଜ୍ୟ ଶାସନ ମଧ୍ୟରେ ମହାରାଜା ଏହି ପରି ଭାବରେ ନିଜର ଲାଭଅର୍ଥ ଜମାଇ ପାରିଥିଲେ। ଦେଓ୍ୱାନ ଦେଖିଲେ ଯଦି ମହାରାଜା ଜାଣନ୍ତି ଯେ ଏ ପାଣ୍ଠି ତାଙ୍କର କି ରାଜ୍ୟବାସୀଙ୍କର ଏ ବିଷୟ ଦେଓ୍ୱାନଙ୍କ ରିପୋର୍ଟ ଉପରେ ନିର୍ଭର କରେ ତାହାହେଲେ ସେ ତାଙ୍କ ପ୍ରତି କୌଣସି ବିରୋଧିଭାବ ରଖିବେ ନାହିଁ ଓ ତାଙ୍କ ଉପଦେଶ ଅନୁସାରେ କାର୍ଯ୍ୟ କରିବେ । ଏହା ମନରେ ରଖି ସେ ବିଭାଗୀୟ ଅନୁଶାସନ ସଚିବଙ୍କୁ ଏକ ଚିଠି ଲେଖିଲେ ଏଥିରେ ଲେଖା ଥିଲା ଇଂଲଣ୍ଡ ବ୍ୟାଙ୍କରେ ଜମା ଅର୍ଥର କେତେ ଅଂଶ ରାଜ୍ୟର କେତେ ମହାରାଜାଙ୍କର ନିଜର ଏହା ସେ

ଅନୁସନ୍ଧାନ କରୁଅଛନ୍ତି ଓ ସମୟ କ୍ରମେ ଚୂଡ଼ାନ୍ତ ରିପୋର୍ଟ ଦେବେ। ଏହି ଚିଠିଟି ଜାଣିଶୁଣି ସେ ଖୋଲା ରଖିଲେ ଯେପରି ତାଙ୍କ ଜମାଦାର ଛୋଟୁରାମ ଏହା ଦେଖି ପଢ଼ି ପାରିବ ଓ ବିଷୟବସ୍ତୁ ମହାରାଜାଙ୍କୁ ଜଣାଇବ। ୨୪ ଘଣ୍ଟା ମଧ୍ୟରେ ମହାରାଜାଙ୍କର ମନୋଭାବ ପରିବର୍ତ୍ତିତ ହେଲା । ସେ ସସ୍ତ୍ରୀକ ଦେୱାନଙ୍କୁ ଚା' ଭୋଜିକୁ ନିଜ ଦୁର୍ଗକୁ ଡାକିଲେ ଓ ତାଙ୍କୁ ବାଘ ଶିକାରରେ ସାଙ୍ଗରେ ନେବାକୁ ବ୍ୟବସ୍ଥା କଲେ। କାଳେ ଏହି ସମୟରେ ତାଙ୍କୁ ହତ୍ୟା କରାଯିବ ଏହି ଆଶଙ୍କାରେ ଦେୱାନ ତାଙ୍କ ମଞ୍ଚା ଓ ମହାରାଜାଙ୍କ ମଞ୍ଚା ମଧ୍ୟରେ ମଞ୍ଚାରେ ଯେପରି ଅନ୍ୟ ଜଣେ ବସି ରହେ ଏହିପରି ବ୍ୟବସ୍ଥା ରଖିଲେ।

ଏହାପରେ ବଡ଼ଦିନ ଆସିଲା। ଖ୍ରୀଷ୍ଟମାସ ପୂର୍ବଦିନ ଦୁଇଗୋଟି କାରରେ ଖେଳଣା ବୋଝେଇ କରାଯାଇ ଦେୱାନଙ୍କ ଘରକୁ ପଠାଇ ଦିଆଗଲା। ତାଙ୍କ ପିଲାମାନଙ୍କର ଆଗ୍ରହ ସତ୍ତ୍ୱେ ଏସବୁ ସେ ଫେରାଇ ଦେଲେ। ବଡ଼ଦିନ ଖ୍ରୀଷ୍ଟମାସ ଦିନ ସସ୍ତ୍ରୀକ ଦେୱାନ ମହାରାଜାଙ୍କୁ ତାଙ୍କ ଦୁର୍ଗରେ ଶୁଭେଚ୍ଛା ଜଣାଇବାକୁ ପହଞ୍ଚିଲେ। ସେମାନେ ଅନ୍ୟ କଥା ହେବା ପରେ କିଛି ଘରୋଇ କଥା ଆଲୋଚନା ପାଇଁ ମହାରାଜା କହିଲେ। ଦେୱାନଙ୍କ ସ୍ତ୍ରୀ ଲାଲଜେ ଅନ୍ୟତ୍ର ଚାଲିଗଲେ। ମହାରାଜା କହିଲେ ଖ୍ରୀଷ୍ଟମାସ ଶୁଭେଚ୍ଛାର ମାସ। ତାଙ୍କର ଶୁଭେଚ୍ଛା ଜଣାଇବାକୁ ସେ ଦେୱାନଙ୍କୁ ଏହି ଅବସରରେ ଏକ ଉପହାର ଦେବାକୁ ଚାହୁଁଛନ୍ତି। ଖଣ୍ଡେ ଲଫାପାରେ ଗୋଟିଏ ଚେକ୍ ଥାଇ ସେ ଦେୱାନଙ୍କୁ ଦେବାକୁ ବସିଲେ । ତାଙ୍କ ଆଶାନୁରୂପେ ଏହା ପ୍ରତ୍ୟାଖାତ ହେଲା । ସେ କହିଲେ "ତମର ଅସୁବିଧା ମୁଁ ବୁଝିପାରୁଛି। ମାତ୍ର ତୁମ୍ଭର ପିତା ଅଛନ୍ତି। ସେ କିମ୍ବା ଅନ୍ୟ କୌଣସି ବ୍ୟକ୍ତିଙ୍କ ନାମରେ ତୁମ୍ଭ କହିବା ଅନୁସାରେ ମୁଁ ଏକ ଚେକ୍ ଲେଖିଦେବି।" ଚେକ୍ ୭୫ ହଜାର ପାଉଣ୍ଡର ଥିଲା ଯାହାର ମୂଲ୍ୟ ଭାରତୀୟ ମୁଦ୍ରାର ୧୦ ଲକ୍ଷ ଟଙ୍କା ଥିଲା। ନିଜର ଅର୍ଥ ଗୃଧ୍ନତା ସତ୍ତ୍ୱେ ପ୍ରାୟ ୩କୋଟି ଟଙ୍କା ଲାଭର ଆଶା ରଖି ୧୦ଲକ୍ଷ ଟଙ୍କାର ଚେକ୍ ଏ ଦିଗରେ ସହାୟକ ହେବାରେ ଖର୍ଚ୍ଚ କରିବା ମହାରାଜାଙ୍କର ବେପାରୀ ମନୋବୃତ୍ତିର ନମୁନା ଥିଲା। ନାନା ପ୍ରକାର ଯୁକ୍ତି ଦେଖାଇ ବଡ଼ଦିନର ଏହି ଉପହାର ନେବାକୁ ସେ ଦେୱାନଙ୍କୁ ପ୍ରବର୍ତ୍ତାଇଲେ। ବହୁଦିନ ପର୍ଯ୍ୟନ୍ତ ସେ ତାଙ୍କୁ କହୁଥିଲେ ତାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ନ ହେଉ। ଯାହାହେଉ ୱେକଫିଲ୍ଡ ଏହି ଲୋଭ ସମ୍ବରଣ କରି ନିଜ ଚରିତ୍ରବତ୍ତାର ପ୍ରମାଣ କଲେ।

୧୯୪୫ ଜାନୁୟାରୀ ମାସରେ ମହାରାଜା ଅସୁସ୍ଥ ହେଲେ। ତାଙ୍କ ଚିକିତ୍ସକ ଏହା ଗୁରୁତର ଓ ହୁଏତ ତାଙ୍କର ଶେଷ ସମୟ ବୋଲି କହିଲେ। ସେ ଦେୱାନଙ୍କୁ ଡାକି ନିଜ ଉଇଲନାମା ଲେଖିବାକୁ କହିଲେ ଯେଉଁଥିରେ ସେ ବଡ଼ ମହାରାଣୀଙ୍କୁ ସମସ୍ତ ସମ୍ପତ୍ତିରୁ

ବଞ୍ଚିତ କଲେ । ଏକମାତ୍ର ପୁତ୍ର ମାର୍ତ୍ତଣ୍ଡ ସିଂହ ତାଙ୍କର ସଂପତ୍ତିର ମାଲିକ ହେବେ। ତାଙ୍କୁ ସେ ନିର୍ଦ୍ଦେଶ ଦେଲେ ଯେ କେବେହେଲେ ସେ ବ୍ରିଟିଶ ଦେୱାନ ରଖିବେ ନାହିଁ। ଅଧା ହିନ୍ଦୀ ଅଧା ଇଂରାଜୀରେ ସେ ଏହା କହିଲେ । କଣ ଲେଖାଗଲା ପଢ଼ି ଜଣାଇ ଦେବାକୁ ଦେୱାନଙ୍କୁ ସେ କହିଲେ । ବ୍ରିଟିଶ ଅଫିସରଙ୍କ ହାତରେ ଲେଖାଇବାର ଉଦ୍ଦେଶ୍ୟ ସେ ଇମାନଦାର ଭାବରେ ଏହା କାର୍ଯ୍ୟକାରୀ କରିବେ। ଶେଷରେ ତାଙ୍କର ସ୍ୱାସ୍ଥ୍ୟରେ ଉନ୍ନତି ହେଲା ଓ ସେ ଗୁରୁତର ଅବସ୍ଥାରୁ ମୁକ୍ତି ପାଇଲେ। ୧୯୪୫ ଫେବୃୟାରୀ ପ୍ରଥମ ସପ୍ତାହରେ ୱେକଫିଲ୍ଡ ଶେଷଥର ପାଇଁ ମହାରାଜାଙ୍କୁ ସାକ୍ଷାତ କଲେ। ନିଜେ ଅସୁସ୍ଥ ଥାଇ ଡାକ୍ତରଙ୍କ ଦ୍ୱାରା ବିଶ୍ରାମ ନିମିତ୍ତ ପରାମର୍ଶ ହେତୁ ୧୪ ମାସ କାର୍ଯ୍ୟ କରିବାପରେ ଦେୱାନ ପଦବୀରୁ ଅବ୍ୟାହତି ନେଇ ୱେକଫିଲ୍ଡ ରେବା ଛାଡ଼ିଲେ। ତାଙ୍କର ଏକଦା ପରାମର୍ଶଦାତା ଥିବା କୋରଫିଲ୍ଡ ସେତେବେଳକୁ ଭାଇସରୟଙ୍କ ପରାମର୍ଶଦାତା। ମହାରାଜା ରାଜ୍ୟରେ ରହିବା ପ୍ରଜାମାନଙ୍କର ହିତକର ନୁହେଁ ଏହା ସେମାନେ ଉପଲବ୍ଧି କଲେ। ପରବର୍ଷ ୧୯୪୬ରେ ମହାରାଜାଙ୍କୁ ରାଜ୍ୟଚ୍ୟୁତି କରାଗଲା। ତାଙ୍କ ପୁତ୍ର ମାର୍ତ୍ତଣ୍ଡ ସିଂହ ନୂଆ ମହାରାଜା ହେଲେ। କିଛିଦିନ ପରେ ବିଦେଶରେ ଥିବା ସମୟରେ ଏକ ଦୁର୍ଘଟଣାରେ ପୂର୍ବତନ ମହାରାଜା ପ୍ରାଣ ହରାଇଲେ। ତାଙ୍କର ଶତ୍ରୁସଂଖ୍ୟା ଏତେ ବେଶି ଥିଲା ଯେ ଖବର କାଗଜରେ କୁହାଯାଉଥିବା ଏହି ଦୁର୍ଘଟଣା ସେମାନଙ୍କ ମଧ୍ୟରୁ ଯେ ଜଣଙ୍କର କାର୍ଯ୍ୟ ଥିଲା ଏହା ବିଶ୍ୱାସ ଯୋଗ୍ୟ ଥିଲା।





ମହାରାଜା ସାର ହରି ସିଂହ
(୧୯୦୫-୧୯୬୧)

# ଜାମ୍ମୁ ଓ କାଶ୍ମୀରର ଶେଷ ମହାରାଜା
# ଲେଫ୍ଟନାଣ୍ଟ ଜେନେରାଲ
## ସାର ହରିସିଂହ
## (ଏକ ସଂଘର୍ଷମୟ ଓ ଘଟଣାବହୁଳ ଜୀବନୀ)

ଇଂରେଜ ଶାସନ ଅମଳରେ ମର୍ଯ୍ୟାଦାରେ ୨୧ ତୋପ ସଲାମି ପାଉଥିବା ୮୫୮୮୫ ବର୍ଗ ମାଇଲ ଆୟତନ, ୩୬ ଲକ୍ଷ ୪୬ ହଜାର ଲୋକସଂଖ୍ୟା ବିଶିଷ୍ଟ ଜାମ୍ମୁ କାଶ୍ମୀର ଏକ ପୁରାଜନ ରାଜ୍ୟ । ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧ ଓ ହିନ୍ଦୁ ରାଜବଂଶ କାଶ୍ମୀରରେ ରାଜୁତୀ କରୁଥିଲେ । ପ୍ରସିଦ୍ଧ ସଂସ୍କୃତ କାବ୍ୟ 'ରାଜତରଙ୍ଗିଣୀ'ରେ ଏହି ରାଜାମାନଙ୍କର ଇତିହାସ ବର୍ଣ୍ଣନା କରାଯାଇଛି । ସେହି ସମୟର କିଛି ଐତିହାସିକ କୀର୍ତ୍ତି ବର୍ତ୍ତମାନ ଅନନ୍ତନାଗ, ମାର୍ତ୍ତଣ୍ଡ ବିଜବେହେରା, ପଟ୍ଟନ ଆଦି ସ୍ଥାନମାନଙ୍କରେ ଦେଖିବାକୁ



ଯୁବରାଜ କରଣ ସିଂହ
(୧୯୩୧) ସରଦାର-ଇ-ରିୟାସତ୍

ମିଳେ । ଖ୍ରୀ ୧୮୧୯ ମସିହାରେ ମହାରାଜା ରଣଜିତ ସିଂହ ଏହି ରାଜ୍ୟ ପଠାଣ ମାନଙ୍କଠାରୁ ଜୟ କରି ନେଇଥିଲେ ଓ ଖ୍ରୀ ୧୮୪୭ ପର୍ଯ୍ୟନ୍ତ ଏହା ଶିଖମାନଙ୍କର ଅଧିନରେ ଥିଲା । ମହାରାଜା ରଣଜିତ ସିଂହ ଖ୍ରୀ ୧୮୩୯ରେ ପ୍ରାଣତ୍ୟାଗ କଲେ । ଦୁର୍ବଳ ଶିଖମାନେ ପ୍ରଥମ ଶିଖଯୁଦ୍ଧରେ ଇଂରେଜମାନଙ୍କ ହାତରେ ହାରିଗଲେ । ଶିଖମାନେ ଇଷ୍ଟଇଣ୍ଡିଆ କମ୍ପାନିକୁ ଯୁଦ୍ଧରେ କ୍ଷତିପୂରଣ ବାବଦ କୋଟିଏ ଟଙ୍କା ଦେବାକୁ କୁହାଗଲା । ଏହା ଦେଇ ନ ପାରିବାରୁ ଇଂରେଜ ଓ ଲାହୋର ଶିଖ ସରକାର ମଧ୍ୟରେ ମଧ୍ୟସ୍ଥତା କରୁଥିବା ଏକ ଆଞ୍ଚଳିକ ରାଜା ଗୁଲାବ ସିଂହଙ୍କ ସହିତ ଖ୍ରୀ ୧୮୪୬ ମାର୍ଚ୍ଚ ୧୬ ତାରିଖରେ ଅମୃତସର ସନ୍ଧି କରାଗଲା । ସେ ଇଂରେଜମାନଙ୍କର ବଶତା ସ୍ୱୀକାର କଲେ । ଏହାର ନିଦର୍ଶନ ସ୍ୱରୂପ ପ୍ରତିବର୍ଷ ସେ ଇଂରେଜମାନଙ୍କୁ ଗୋଟିଏ ଘୋଡ଼ା, ଶାଲ ତିଆରି ପାଇଁ ଜାତିଆ ପଶମ ଦେଉଥିବା ବାରଗୋଟି ଛେଳି ଓ ୩ ହଳ କାଶ୍ମୀର ଶାଲ ଦେବେ । ପରେ ଏହାକୁ ଦୁଇଟି କାଶ୍ମୀର ଶାଲ ଓ ତିନିଗୋଟି ରୁମାଲରେ ସୀମିତ କରାଗଲା । ଅମୃତସର ସନ୍ଧି ଫଳରେ ଗୁଲାବ ସିଂହଙ୍କୁ କୋଟିଏ ଟଙ୍କା ବଦଳରେ ତାଙ୍କୁ ଦେବା ରାଜ୍ୟରୁ କିଛି ଅଂଶ କମାଇ ଦିଆଗଲା ଓ ତାଙ୍କୁ ୭୫ ଲକ୍ଷ ଟଙ୍କା ଦେବାକୁ ପଡ଼ିଲା । ଇଂରେଜ ସୈନ୍ୟମାନଙ୍କ ସାହାଯ୍ୟରେ ଗୁଲାବ ସିଂହ ନିଜ ଆଧିପତ୍ୟ ପ୍ରତିଷ୍ଠା କଲେ । ତାଙ୍କ ପୁତ୍ର ରଣବୀର ସିଂହ ରାଜା ହେଲେ । ଖ୍ରୀ.୧୮୮୫ରେ

ରଣବୀର ସିଂହଙ୍କର ମୃତ୍ୟୁପରେ ମହାରାଜା ପ୍ରତାପସିଂହ ଗାଦି ପାଇଲେ । ଶ୍ରୀନଗରରରେ ଜଣେ ଇଂରେଜ ଯୋଗସୂତ୍ରକାରୀ ଅଫିସର ରହୁଥିଲେ । ତାଙ୍କ ପଦବୀ ବଦଳାଇ କାଶ୍ମୀରର ରେସିଡେଣ୍ଟ ବୋଲି କୁହାଗଲା । ସେ ସ୍ଥାୟୀ ଭାବରେ ଶ୍ରୀନଗରରେ ରହିଲେ । ପ୍ରତାପ ସିଂହଙ୍କର କୌଣସି ଉତ୍ତରାଧିକାରୀ ନଥିଲେ । ତାଙ୍କ ପରେ ତାଙ୍କ ଭାଇ ଅମର ସିଂହଙ୍କର ପୁତ୍ର ହରିସିଂହ ସିଂହାସନରେ ବସିଲେ ।

ଲେଫ୍ଟନାଣ୍ଟ ଜେନେରାଲ ମହାରାଜା ସାର୍ ହରିସିଂହ ଖ୍ରୀ. ୧୯୨୫ର ସେପ୍ଟେମ୍ବର ୨୩ ତାରିଖରେ ସିଂହାସନ ଆରୋହଣ କଲେ । ଇଂରେଜମାନେ ସ୍ୱାଧୀନ ଭାରତକୁ କ୍ଷମତା ହସ୍ତାନ୍ତର କରିବା ସମୟରେ ସେ ଜାମ୍ମୁ କାଶ୍ମୀରର ମହାରାଜା ଥିଲେ । ଭାରତ ବିଭାଜନ ହୋଇ ପାକିସ୍ଥାନ ସୃଷ୍ଟି ହେବା ସମୟରେ କାଶ୍ମୀରର ସୀମା ଆର୍ନ୍ତଦେଶୀୟ ଥିଲା । ଏହାର ପୂର୍ବରେ ତିବତ୍, ଉତ୍ତର-ପୂର୍ବରେ ଚୀନର ସିଙ୍ଗକିୟାଙ୍ଗ ପ୍ରଦେଶ ଓ ଆଫଗାନିସ୍ଥାନ ଥିଲା । ଆଫଗାନ ରାଜ୍ୟର ଏକ ନାଶି ରାଜ୍ୟ ମଧ୍ୟକୁ ପଶି ଆସିଥିଲା । ୱାଖନ ନାମକ ଏହି ଅଞ୍ଚଳ ଗିଲଗିଟର ଉତ୍ତରରେ ଥିଲା । ଅଳ୍ପ କେତେ ମାଇଲ ଦୂରରେ ଋଷିଆର ତୁର୍କିସ୍ଥାନ ପ୍ରଦେଶ ଥିଲା ।

ଭୌଗୋଳିକ ଦୃଷ୍ଟିରୁ ରାଜ୍ୟଟି ୩ ଗୋଟି ପ୍ରାକୃତିକ ବିଭାଗରେ ବିଭକ୍ତ ଥିଲା । ୧) ଦକ୍ଷିଣରେ ଜାମ୍ମୁ, ୨) ମଧ୍ୟଭାଗରେ କାଶ୍ମୀର ଯେଉଁଠି ଗ୍ରୀଷ୍ମକାଳୀନ ରାଜଧାନୀ ଶ୍ରୀନଗର ଅବସ୍ଥିତ, ୩) ଉତ୍ତରରେ ଗିଲଗିଟ ଅଞ୍ଚଳ ଏବଂ ୪) କାଶ୍ମୀର ଉପତ୍ୟାକା ତିବତ ମଧ୍ୟରେ ଲାଡାଖ ଅବସ୍ଥିତ ଥିଲା । ଜାମ୍ମୁକାଶ୍ମୀରର ରାଜ୍ୟରେ ମୁସଲମାନ ମାନେ ସଂଖ୍ୟା ଗରିଷ୍ଠ ମାତ୍ର ସରକାର ଓ ସୈନ୍ୟ ବାହିନୀରେ ହିନ୍ଦୁମାନେ ସଂଖ୍ୟାଧିକ ପଦ ଦଖଲ କରିଥିଲେ । ମୁସଲମାନଙ୍କର ଦାବୀ ସାବ୍ୟସ୍ତ ପାଇ ସଂଗ୍ରାମ କରିବାକୁ ୧୯୩୨ ମସିହାରେ ଶେଖ ଅବଦୁଲାଙ୍କ ନେତୃତ୍ୱରେ ନିଖିଳ ଜାମ୍ମୁ କାଶ୍ମୀର ମୁସଲମାନ ସମ୍ମିଳନୀ ଗଢ଼ା ହେଲା । ୧୯୩୯ ମସିହାରେ ଏହାର ସାଂପ୍ରଦାୟିକ ନାମ ପରିବର୍ତ୍ତନ କରାଯାଇ ଜାତୀୟ ସମ୍ମିଳନୀ ରଖାଗଲା । ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ ସହିତ ଏହାର ଅନୁବନ୍ଧନ ରହିଲା । ମହାରାଜାଙ୍କ ବିରୁଦ୍ଧରେ ଅଧିକାର ସାବ୍ୟସ୍ତ କରିବାକୁ ଆନ୍ଦୋଳନ କରାଗଲା । ଶେଖ ଅବଦୁଲା ଅନେକଥର ଜେଲଦଣ୍ଡ ଭୋଗିଲେ । ୧୯୪୬ ମସିହାରେ ମହାରାଜାଙ୍କ ବିରୁଦ୍ଧରେ 'କାଶ୍ମୀର ଛାଡ଼' ଆନ୍ଦୋଳନ ଆରମ୍ଭ କରାଗଲା । ଫଳରେ ଶେଖ ଅବଦୁଲା ଦୀର୍ଘ ଜେଲଦଣ୍ଡରେ ଦଣ୍ଡିତ ହେଲେ । ମାତ୍ର ସମଗ୍ର ରାଜ୍ୟରେ ଏହି ଆନ୍ଦୋଳନକାରୀ ଶେଖ ଅବଦୁଲା ଅପ୍ରତିଦ୍ୱନ୍ଦୀ ଜନନେତା ହେଲେ ।

ଜାମ୍ମୁ କାଶ୍ମୀରର ଗିଲଗିଟ ଅଞ୍ଚଳ ସାମରିକ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ୧୯୩୫ ମସିହାରେ ସୋଭିଏଟ ଋଷ ଚୀନର ସିଙ୍ଗକିଅାନ ପ୍ରାୟ ଦଖଲ କରି ନେଇଥିଲା । ଫଳରେ ଇଂରେଜମାନେ ଗିଲଗିଟ ସବଡିଭିଜନକୁ ଷାଠିଏ ବରଷ ପଟ୍ଟସୂତ୍ରେ କାଶ୍ମୀର ସରକାରଠାରୁ ନେଲେ । ଏହାର ଶାସନ ୧୯୩୫ ମସିହା ପରେ (ଯୁଦ୍ଧ ସମୟ ଖ୍ରୀ ୧୯୪୨-୪୬ ଛାଡ଼ି) ଜଣେ ବିଶ୍ୱସ୍ତ ଇଂରେଜ ପଲିଟିକାଲ ଅଫିସରଙ୍କ ନ୍ୟସ୍ତ ଥିଲା । ଗିଲଗିଟ ସ୍କାଉଟ ଇଂରେଜ ଅଫିସରମାନଙ୍କ ଦ୍ୱାରା ଗଠିତ ଥାଇ ଶାସନ କାର୍ଯ୍ୟ ଶୃଙ୍ଖଳିତ କରୁଥିଲେ । କ୍ଷମତା ହସ୍ତାନ୍ତର ହେବା ପୂର୍ବରୁ ଇଂରେଜମାନେ ଗିଲଗିଟ ଅଞ୍ଚଳ ସହିତ ଗିଲଗିଟ ସ୍କାଉଟ ସଂଗଠନକୁ ମହାରାଜାଙ୍କ ହାତରେ ଛାଡ଼ିଦେଲେ ।

ଗାଦି ପାଇବାର ଅଳ୍ପଦିନ ଆଗରୁ ହରିସିଂହ ଇଂଲଣ୍ଡ ଯାତ୍ରା କଲେ। ସାଙ୍ଗରେ ଅନ୍ୟମାନଙ୍କ ସହିତ ତାଙ୍କ ଅଙ୍ଗରକ୍ଷୀ ଏ.ଡ଼ି.ସି.(A.D.C) ଇଂଲଣ୍ଡର କାପଟେନ ଆର୍ଥର ଯାତ୍ରା କରୁଥିଲେ। ଲଣ୍ଡନର ଏକ ଠକ ଦଳ ଦ୍ୱାରା ମହାରାଜାଙ୍କୁ ଠକି ଅର୍ଥ ଉର୍ପାଜନ କରିବାକୁ ଏକ ଷଡ଼ଯନ୍ତ୍ର କରାଯାଇଥିଲା। କାପଟେନ ଆର୍ଥର ଏଥିରେ ଭାଗୀ ଥିଲେ।। ଠକ ଦଳର ନେତା ଥିଲେ ହବ୍ସ ନାମକ ଜଣେ ଲଣ୍ଡନର ଓକିଲ। ସେମାନଙ୍କ ଷଡ଼ଯନ୍ତ୍ର ଫଳରେ ଜଣେ ମହିଳାଙ୍କୁ ମହାରାଜାଙ୍କ ସହିତ ଅତି ଅନ୍ତରଙ୍ଗ ଭାବରେ ଥିବାବେଳେ ଧରାଯାଇଥିଲା। ସେ ମହିଳା ଜଣକ ନିଜକୁ ମିସେସ୍ ରୋବିନସନ ବୋଲି ପରିଚୟ ଦେଇଥିଲେ। କାପଟେନ ଆର୍ଥର ତାଙ୍କୁ ଜଣେ ଅତି ଧନଶାଳୀ ବିଧବା ଭାବେ ମହାରାଜାଙ୍କୁ ଚିହ୍ନାଇ ଦେଇଥିଲେ। ତାଙ୍କର ଅସଲ ମତଲବର ପରିଚୟ ମହାରାଜା ଜାଣିପାରି ନଥିଲେ । ସେ ତାଙ୍କ ସହିତ ପ୍ୟାରିସ୍ ଯାତ୍ରା କଲେ। ସେଠାରେ ସେମାନେ ଏକତ୍ର ଏକ ହୋଟେଲରେ ଥିବା ସମୟରେ ମିସେସ୍ ରବିନସନଙ୍କର ସ୍ୱାମୀ ବୋଲି ପରିଚୟ ଦେଇ ମିଷ୍ଟେଗୁ ନିଉଟନ ନାମକ ଜଣେ ଇଂରେଜ ତାଙ୍କୁ କୁତ୍ସା କରି ନିନ୍ଦିତ କରିବାକୁ ଧମକ ଦେଲେ। ମଣ୍ଟେଗୁ ପ୍ରକୃତରେ ଏହି ଠକଦଳର ଜଣେ ସଭ୍ୟ ଥିଲେ। ସେମାନେ ୪୫ଲକ୍ଷ ଟଙ୍କା ପାଇଲେ ଏସବୁ କୁତ୍ସା ପ୍ରକାଶ କରିବେ ନାହିଁ ବୋଲି କହି ରାଜାଙ୍କୁ ଡରାଇ ତାଙ୍କ ଠାରୁ ଏହି ତଣ୍ଡ ଦାବୀ କଲେ ଓ ନେଲେ। ଦଣ୍ଡଟଙ୍କା ବଣ୍ଟୁଆରା ବେଳେ ସେହି ଠକଦଳ ମଧ୍ୟରେ ବିବାଦ ସୃଷ୍ଟି ହେଲାରୁ ଏହି ଘଟଣା ଲୋକ ଲୋଚନକୁ ଆସିଲା ଓ ଏହା ଇଂଲଣ୍ଡରେ ଗୋଟିଏ ମକଦ୍ଦମା ଏହି ସଂପର୍କରେ ଚାଲିଲା । ମକଦ୍ଦମାର ଦୈନିକ ବିବରଣୀ ସବୁ ଖବର କାଗଜରେ ଚାଞ୍ଚଲ୍ୟକର ଭାବେ ପ୍ରକାଶିତ ହେଉଥିବା ବେଳେ ଠକାମୀରେ ଶିକାର ବ୍ୟକ୍ତିଙ୍କର ଅସଲ ନାମ ନ ଜଣାଇ ଜନୈକ ବ୍ୟକ୍ତି 'ମିଷ୍ଟର ଏ' ବୋଲି ପ୍ରକାଶ

କରିବାକୁ ସରକାର ଆଦେଶ ଦେଲେ। ଇଂଲଣ୍ଡର ବାହାରେ ଫ୍ରାନ୍ସ, ଆମେରିକା ଆଦି ଦେଶରେ ମଧ୍ୟ ଠକାମୀ ଅର୍ଥର ବିପୁଳତା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଏହି ମକଦ୍ଦମାର ବିବରଣୀ ବାହାରୁଥିଲା। ମାତ୍ର ସେମାନେ ଇଂରେଜ ସରକାରଙ୍କର ଆଦେଶକୁ ଅବଜ୍ଞା କରି ପ୍ରକୃତ ଆସାମୀର ନାମ ପ୍ରକାଶ କଲେ। ଫଳରେ ସର୍ବତ୍ର ଠକାମୀ ଆସାମୀର ପ୍ରକୃତ ନାମ ପ୍ରଚାରିତ ହୋଇଗଲା। ଅନନ୍ୟୋପାୟ ସରକାର ଏହି ଜନୈକ ବ୍ୟକ୍ତି କାଶ୍ମୀରର ଭାବି ମହାରାଜା ବୋଲି ଶେଷରେ ପ୍ରକାଶ କଲେ। ଏହି ଅପ୍ରତ୍ୟାଶିତ ଘଟଣା ଫଳରେ ମହାରାଜା ହରିସିଂହଙ୍କର ଭବିଷ୍ୟତ ଆଚରଣରେ ଆଉ କାହା ପ୍ରତି ବିଶ୍ୱାସ ରହିଲାନାହିଁ। କାଶ୍ମୀରର ଶେଷ ମହାରାଜା ଭାବରେ ତାଙ୍କ କାର୍ଯ୍ୟପ୍ରଣାଳୀ ଓ କର୍ମକୁଶଳତା ଏହାଦ୍ୱାରା ପ୍ରଭାବିତ ହୋଇଥିଲା ।

ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍‌କାଳରେ ସର୍ଦ୍ଦାର ପଟେଲ କେନ୍ଦ୍ରରେ ଦେଶୀୟ ରାଜ୍ୟ ବିଭାଗ ସୃଷ୍ଟିକରି ବିଭିନ୍ନ ରାଜ୍ୟର ନରପତି ସେମାନଙ୍କୁ ସେମାନଙ୍କର ଭାରତ ବା ପାକିସ୍ଥାନ କୌଣସି ଗୋଟିଏ ଉପନିବେଶ ସହିତ ସମ୍ମିଶ୍ରଣ ନିମିତ୍ତ କଥାବାର୍ତ୍ତା ଆରମ୍ଭ କରିଥିଲେ । କାଶ୍ମୀରର ପ୍ରଧାନମନ୍ତ୍ରୀ ଥିଲେ ରାମଚନ୍ଦ୍ର କାକ । ସଚିବ ଭି.ପି. ମେନନ ତାଙ୍କ ସହିତ ଦିଲ୍ଲୀରେ କଥାବାର୍ତ୍ତା ହେଲେ । ତାଙ୍କୁ ସେ ମହାରାଜାଙ୍କ ମତିଗତି ବିଷୟରେ କୌଣସି ଉତ୍ତର ଦେଲେ ନାହିଁ । ଲର୍ଡ ମାଉଣ୍ଟବେଟେନ ଏ ସଂକ୍ରାନ୍ତରେ ମହାରାଜା ହରିସିଂହଙ୍କ ସହିତ ଶ୍ରୀନଗରରେ କଥାବାର୍ତ୍ତା କଲେ । ଉଭୟଙ୍କ ମଧ୍ୟରେ ସଂପର୍କ ପୁରାତନ ଥିଲା । ୧୯୨୨ ମସିହାରେ ଇଂଲଣ୍ଡର ଯୁବରାଜଙ୍କ ଭାରତ ଭ୍ରମଣ ସମୟରେ ଉଭୟ ତାଙ୍କ ବ୍ୟକ୍ତିଗତ ସହାୟକ ଥିଲେ । ମହାରାଜା ଆଗରୁ ମଧ୍ୟ ତାଙ୍କୁ କାଶ୍ମୀର ଯିବାକୁ ନିମନ୍ତ୍ରଣ କରିଥିଲେ । ଲର୍ଡ ମାଉଣ୍ଟବେଟେନ ଚାରିଦିନ ରହିଲେ । ସେ ତାଙ୍କୁ ବୁଝାଇଲେ କାଶ୍ମୀର ଦୁଇ ଉପନିବେଶ ମଧ୍ୟରୁ ଗୋଟିକରେ ମିଶିବା ଦରକାର ମାତ୍ର ଏକ ସ୍ୱାଧିନ ରାଜ୍ୟ ହିସାବରେ ଏହାର ଅବସ୍ଥିତିର ପରିକଳ୍ପନା ମହାରାଜା ମନରେ ଆଣନ୍ତୁ ନାହିଁ । ତାଙ୍କ ପ୍ରଜାମାନେ ବେଶି ମୁସଲମାନ । ସେ ପାକିସ୍ଥାନ ସହିତ ମିଶ୍ରଣ ଚୁକ୍ତି କଲେ ଭାରତ ଏଥିରେ ଆପତ୍ତି କରିବ ନାହିଁ ବୋଲି ତାଙ୍କୁ ମଧ୍ୟ ଶୁଣାଇଲେ । ନିଷ୍ପତ୍ତି ବଡ଼ କଠୋର ଥିଲା, ପାକିସ୍ଥାନ ସହିତ ମିଶିଲେ ଜାମ୍ମୁ ଓ ଲାଡାକର ଅଣମୁସଲମାନ ମାନେ ଓ ଜାତୀୟ ସମ୍ମିଳନୀର ଅନୁଗତ ମୁସଲମାନ ମାନେ ଅସନ୍ତୁଷ୍ଟ ହେବେ । ପକ୍ଷାନ୍ତରେ ଭାରତ ସହିତ ମିଶ୍ରଣ ଫଳରେ ଗିଲଗିଟ ଓ ପାକିସ୍ଥାନକୁ ଲାଗିଥିବା ଅଞ୍ଚଳମାନଙ୍କରେ ତୀବ୍ର ବିରୋଧ ଦେଖାଯିବ । ସେ କୌଣସି ନିଷ୍ପତ୍ତି ନେବାକୁ ଅକ୍ଷମ ଥାଇ ପାକିସ୍ଥାନ ସହିତ ଏକ କାମଚଳା

ଚୁକ୍ତି କଲେ । ଫଳରେ ପୂର୍ବାବସ୍ଥା କାଏମ ରଖିବାର କଥାଥିଲା । ମାତ୍ର ପାକିସ୍ଥାନ ଏହା ଅମାନ୍ୟ କରି ରାଜ୍ୟକୁ ପେଟ୍ରୋଲ ଖାଦ୍ୟଦ୍ରବ୍ୟ ଓ ଅନ୍ୟାନ୍ୟ ଆବଶ୍ୟକୀୟ ଦ୍ରବ୍ୟର ଆମଦାନି ବନ୍ଦ କରିଦେଲା । ଭାରତଠାରୁ ମହାରାଜା ୫୦୦୦ ଗାଲନ ପେଟ୍ରୋଲ ମାଗିଲେ ମାତ୍ର ପାଞ୍ଚଶହ ଗାଲନ ସରକାର ଦେଇ ପାରିଲେ । କାଶ୍ମୀର ପାକିସ୍ଥାନ ମଧ୍ୟରେ ୪୫୦ ମାଇଲ ସୀମା ଥିଲା । ସବୁଠାରେ ସୈନ୍ୟ ଜଗାଇବା ରାଜ୍ୟପକ୍ଷରେ ସମ୍ଭବ ନଥିଲା । ପାକିସ୍ଥାନ ସୈନିକମାନେ ରାଜ୍ୟକୁ ହଠାତ୍ ଆକ୍ରମଣ କରି ଲୁଟି ଖସିଯାଉଥିଲେ । ଇଂରେଜମାନେ କ୍ଷମତା ହସ୍ତାନ୍ତର କରିବାର ଅଳ୍ପଦିନ ଆଗରୁ ମହାରାଜା ମେଜର ଜେନେରାଲ ଜନକ ସିଂହଙ୍କୁ ରାମଚନ୍ଦ୍ରଙ୍କ ସ୍ଥାନରେ ପ୍ରଧାନମନ୍ତ୍ରୀ କଲେ । ପୂର୍ବରୁ ଭାରତ ସହିତ କାମଚଳା ଚୁକ୍ତି ନିମିତ୍ତ ପ୍ରସ୍ତାବ ଭାରତ କାଳକ୍ରମେ ବିଚାର କରିବ ବୋଲି ଜଣାଇଲେ । ମାତ୍ର ଭାରତ ସରକାର ମହାରାଜାଙ୍କ ଉପରେ ଭାରତ ସହିତ ମିଶ୍ରଣ ନିମିତ୍ତ କୌଣସି ଚାପ ପକାଇ ନଥିଲେ । ରାଡକ୍ଲିଫ ନିଷ୍ପତ୍ତି ଅନୁସାରେ ଭାରତ ପାକିସ୍ଥାନ ମଧ୍ୟରେ ଯେଉଁ ସୀମା ଧାର୍ଯ୍ୟହେଲା ତାହା ଫଳରେ କାଶ୍ମୀରର ଭାରତ ସହିତ ଯୋଗାଯୋଗ ସହଜ ହୋଇଯାଇଥିଲା । ୧୯୪୭ ଅକ୍ଟୋବର ମାସରେ ଜନକ ସିଂହଙ୍କୁ ଅବ୍ୟାହତି ଦେଇ ମହାରାଜା ମେହେରଚାନ୍ଦ ମହାଜନଙ୍କୁ ପ୍ରଧାନମନ୍ତ୍ରୀ କଲେ । ସେ ଅବିଭକ୍ତ ପଞ୍ଜାବରେ ହାଇକୋର୍ଟ ଜଜ ଥିଲେ । ଜଣେ ଓକଲଭାବରେ ତାଙ୍କର ମଧ୍ୟ ଖ୍ୟାତି ଥିଲା । ପରବର୍ତ୍ତୀ କାଳରେ ସେ ଭାରତର ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ହୋଇଥିଲେ । ପ୍ରଧାନମନ୍ତ୍ରୀ ମେହେରଚାନ୍ଦ ଇଂଲଣ୍ଡର ପ୍ରଧାନମନ୍ତ୍ରୀଙ୍କୁ ପାକିସ୍ଥାନ କାମଚଳା ଚୁକ୍ତି ଲଙ୍ଘନ କରୁଛି ଓ ପାକିସ୍ଥାନ ରାଜ୍ୟ ଗୋଷ୍ଠୀର ସଦସ୍ୟ ଥିବାରୁ ରାଜ୍ୟଗୋଷ୍ଠିର ସୁନାମ ରକ୍ଷାପାଇଁ ପଦକ୍ଷେପ ନେବାକୁ ଅନୁରୋଧ କଲେ । ସେ କିଛି ଉତ୍ତରଦେଲେ ନାହିଁ । ପାକିସ୍ଥାନର ଗଭର୍ଣ୍ଣର ଜେନେରାଲ ମହମଦ ଅଲିଜିନ୍ନା ଓ ପ୍ରଧାନମନ୍ତ୍ରୀଙ୍କୁ ପ୍ରତିବାଦ ମଧ୍ୟ ପଠାଗଲା । ଜିନ୍ନା ଉତ୍ତରରେ ଜିନିଷପତ୍ରର ଅଭାବ ଓ ପରିବହନର ଅସୁବିଧା ଯୋଗୁ ଏହା ହେଉଥିବା ଜଣାଇଲେ । ମାତ୍ର କାଶ୍ମୀର ଉପରେ ପାକିସ୍ଥାନର ଜୋରଦାର ଆକ୍ରମଣ ୧୯୪୭ ମସିହା ଅକ୍ଟୋବର ୨୨ ତାରିଖରେ ଆରମ୍ଭ ହେଲା । ପ୍ରାୟ ଦୁଇ ତିନିଶ ଲରିରେ ସୀମାନ୍ତ ଅଞ୍ଚଳର ଆଫ୍ରିଡ଼ି, ଓ୍ୱାଜିର, ମହସୁଦ ସ୍ୱାତୀ ଆଦି ହିଂସ୍ର ବନ୍ୟ ଜନଜାତି ପ୍ରାୟ ପାଞ୍ଚହଜାର ହେବେ ଓ ସେମାନଙ୍କ ସହିତ ଛୁଟିରେ ଥିବା ପାକିସ୍ଥାନର ସୈନିକ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ଆବାଟବାଦ ସହରରୁ କାଶ୍ମୀରକୁ ମାଡି ଆସିଲେ । ସେମାନଙ୍କ ସହିତ କାଶ୍ମୀର ଅଞ୍ଚଳ ଭଲ ଭାବରେ ଜାଣିଥିବା କେତେକ କର୍ମନିଯୁକ୍ତ ପାକିସ୍ଥାନୀ ଅଫିସର ମଧ୍ୟ ମିଶିଗଲେ ।

କାଶ୍ମୀର ସୈନ୍ୟବାହିନୀ ଆକ୍ରମଣର ପ୍ରତିରୋଧ କଲେ ମାତ୍ର ସେମାନଙ୍କର ମୁସଲମାନ ସୈନ୍ୟମାନେ ପକ୍ଷ ତ୍ୟାଗ କରି ଆକ୍ରମଣକାରୀଙ୍କୁ ସାହାଯ୍ୟ କଲେ । ବାଟ କଢ଼ାଇଲେ । କାଶ୍ମୀର ବାହିନୀର ସେନାପତି ଲେଫ୍ଟନାଣ୍ଟ କର୍ଣ୍ଣେଲ ନାରାୟଣ ସିଂହ ତଥାପି ସେମାନଙ୍କର ମୁଜାଫରବାଦ ସହରରେ ପ୍ରବେଶରେ ବାଧା ଦେଲେ । କାଶ୍ମୀର ସୈନ୍ୟବାହିନୀର ମୁଖ୍ୟ ସେନାପତି ବ୍ରିଗେଡିଅର ରାଜିନ୍ଦର ସିଂହ ଏ ଖବର ପାଇ ମାତ୍ର ୧୫୦ ସୈନ୍ୟ ଧରି ଦୁଇ ଦିନ ସେମାନଙ୍କର ପ୍ରତିରୋଧ ଜାରି ରଖିଲେ । ଶେଷରେ ସେ ଓ ତାଙ୍କର ସୈନ୍ୟମାନଙ୍କୁ ହିଂସ୍ର ଆକ୍ରମଣକାରୀମାନେ ହତ୍ୟାକରି ଖଣ୍ଡଖଣ୍ଡ କଲେ । ସେମାନେ ୨୪ ଅକ୍ଟୋବରରେ ମହୁଆ ପାୱାର ହାଉସ ଦଖଲ କରିନେଲେ । ଏହା ଫଳରେ ସମଗ୍ର ଶ୍ରୀନଗର ଅନ୍ଧକାରଛନ୍ନ ହୋଇଗଲା। ହିଂସ୍ର ରକ୍ତମୁଖା ଜନଜାତିମାନେ ଘୋଷଣା କଲେ ଯେ ସେମାନେ ୨୬ ଅକ୍ଟୋବରରେ ଶ୍ରୀନଗର ଦଖଲ କରି ସେଠାରେ ଇଦପର୍ବ ପାଳନ କରିବେ । ଏମିତି ପରିସ୍ଥିତିରେ ମହାରାଜା ଅକ୍ଟୋବର ୨୪ ତାରିଖ ସନ୍ଧ୍ୟାରେ ଅତି ବିକଳରେ ଭାରତ ସରକାରଙ୍କ ଠାରୁ ସାହାଯ୍ୟ ପ୍ରାର୍ଥନା କଲେ । ଭାରତ ପାକିସ୍ଥାନ ମଧ୍ୟରେ ସେନା ବଣ୍ଟୁଆର ଚୂଡାନ୍ତ ହୋଇ ନଥାଏ । ଦୁଇ ରାଜ୍ୟର ସର୍ବୋଚ୍ଚ ସେନାପତି ଫିଲ୍ଡ ମାର୍ଶାଲ ଅରଚିନଲେକ (ଅବିଭକ୍ତ ଭାରତରେ ମୁଖ୍ୟ) ମଧ ଭାରତ ସରକାରଙ୍କୁ ଏହି ଆକ୍ରମଣକାରୀ ଓ ସେମାନଙ୍କ ଉଦ୍ଦେଶ୍ୟ ନେଇ ଅବଗତ କରାଇଲେ । ୨୫ ତାରିଖ ସକାଳେ ଭାରତର ପ୍ରତିରକ୍ଷା କମିଟିର ବୈଠକରେ ମାଉଣ୍ଟବେଟେନ କୌଣସି ତରବରିଆ ପଦକ୍ଷେପର ବିରୋଧ କଲେ । ମହାରାଜାଙ୍କୁ ସାହାଯ୍ୟ ଦେବାକୁ ତାଙ୍କର ଭାରତବର୍ଷରେ ଯୋଗଦାନ ଆବଶ୍ୟକ ଥିଲା । ନଚେତ ଏହା ଏକ ମିତ୍ର ରାଜ୍ୟ ପାକିସ୍ଥାନର ବିରୁଦ୍ଧାଚରଣ ହେବ । ଶ୍ରୀନଗରକୁ ଯିବା କଷ୍ଟକର ଥିଲା । ବ୍ରିଟିଶ ସୈନ୍ୟମାନଙ୍କୁ ପ୍ରତ୍ୟାର୍ପିତ ନିମିତ୍ତଥିବା ଏକ ବିଓଏସି ଉଡାଜାହାଜ ଭଡାରେ ନିଆଯାଇ ସେଥିରେ ସଚିବ ଭି.ପି.ମେନନ ଶ୍ରୀନଗର ଗଲେ । ମହାରାଜା ଓ ରାଜ୍ୟର ପ୍ରଧାନମନ୍ତ୍ରୀ ମେହେରଚାନ୍ଦ ମହାରାଜ ଅତି ଛାନିଆ ହୋଇଥିଲେ । ପ୍ରତିରୋଧ ନିମିତ୍ତ ରାଜ୍ୟ ସୈନ୍ୟବାହିନୀ ଅକ୍ଷମ ଥିଲା। ଆକ୍ରମଣକାରୀମାନେ ବରମୁଲ୍ଲା ଉଡାରେ ଦିନେ ଦିଦନ ମଧ୍ୟରେ ଶ୍ରୀନଗର ଦଖଲ କରିବା ଜଣାପଡୁଥିଲା । ଅତ୍ୟନ୍ତ ବିବ୍ରତ ମହାରାଜା ନିଜ ସୁରକ୍ଷା ଚାହୁଁଥିଲେ । ମାତ୍ର ଏଥିପାଇଁ ତାଙ୍କୁ ଭାରତ ସହିତ ମିଶ୍ରଣ ଚୁକ୍ତି (instrument of accession) ସ୍ୱାକ୍ଷର କରିବାକୁ ହେବ ତାହାହେଲେ କେବଳ ଭାରତ ତାଙ୍କ ରାଜ୍ୟ ଉପରେ ଆକ୍ରମଣ ଭାରତର ଏକ ଅଂଶ ଉପରେ ଆକ୍ରମଣ ବୋଲି ବିବେଚନା କରି ତାଙ୍କୁ ସାମରିକ ସାହାଯ୍ୟ କରିବ । ଲର୍ଡ ମାଉଣ୍ଟବେଟେନ ସ୍ପଷ୍ଟ କରିଦେଲେ

ଯେ ମିଶ୍ରଣ ଚୁକ୍ତିର ସର୍ତ୍ତ ରାଜ୍ୟର ପ୍ରଜାମାନଙ୍କର ସମ୍ମତି ଲାଭ ପାଇ ଗଣଭୋଟ ଉପରେ ପ୍ରତିଷ୍ଠିତ ହେବ ଓ କେବଳ ଏହି ସର୍ତ୍ତରେ ଭାରତ ତାଙ୍କ ଆବେଦନ ଗ୍ରହଣ କରିବ । ଏହା ଜାଣିବା ପରେ ମହାରାଜା ବଡଲାଟ ଲର୍ଡ ମାଉଣ୍ଟବେଟେନଙ୍କୁ ନିଜର ଦୟନୀୟ ଅବସ୍ଥା ଜଣାଇଲେ ଓ ଦ୍ରୁତ ସାମରିକ ସାହାଯ୍ୟ ପ୍ରାର୍ଥନା କଲେ । ରାଜ୍ୟରେ ଜାତୀୟ ପ୍ରଜା ସମ୍ମିଳନୀର ମୁଖ୍ୟ ଶେଖ ଅବଦୁଲ୍ଲାଙ୍କୁ କାରାମୁକ୍ତ କରି ତାଙ୍କ ନେତୃତ୍ୱରେ ମେହେରଚାନ୍ଦ ମହାଜନ ପ୍ରଧାନମନ୍ତ୍ରୀ ଥାଇ ଏକ ଅସ୍ଥାୟୀ ଶାସନ ପ୍ରତିଷ୍ଠା ତାଙ୍କ ଲକ୍ଷ୍ୟ ବୋଲି ସେ ମଧ୍ୟ ବଡଲାଟଙ୍କୁ ଜଣାଇଲେ । ଶେଖ ଅବଦୁଲ୍ଲା ଖଲାସ ହୋଇ ଦିଲ୍ଲୀ ଆସିଲେ । ଭାରତ ସରକାରଙ୍କ ନିଷ୍ପତ୍ତି ଓ ରାଜ୍ୟରେ ପ୍ରତିନିଧିମୂଳକ ଶାସନର ସେ ସମର୍ଥନ କଲେ । ସେ ମଧ୍ୟ ଆକ୍ରମଣକାରୀଙ୍କ କବଳରୁ ରକ୍ଷା ପାଇଁ ଶୀଘ୍ର ସେନାବାହିନୀ ପଠାଇବାକୁ ପ୍ରାର୍ଥନା କଲେ । ଲର୍ଡ ମାଉଣ୍ଟବେଟେନଙ୍କ ସହିତ ଭାରତୀୟ ସୈନ୍ୟବିଭାଗ, ନୌସେନା ଓ ବାୟୁସେନାର ତିନିମୁଖ୍ୟ ମଧ୍ୟ କାଶ୍ମୀର ସହିତ ଗମନାଗମନର ଅସୁବିଧା ଦୃଷ୍ଟିରୁ ସୈନ୍ୟପଠାଇବାରେ ଏକମତ ହୋଇ ପାରୁନଥିଲେ । ମାତ୍ର ପ୍ରଧାନ ମନ୍ତ୍ରୀ ନେହେରୁ ସେମାନଙ୍କୁ ବୁଝାଇଦେଲେ ଯେ ଆକ୍ରମଣକାରୀମାନେ ଶ୍ରୀନଗରରେ ପହଞ୍ଚିଲେ ଖାଲି ମହାରାଜା ଓ ତାଙ୍କ ପରିବାର ନୁହେଁ ଶ୍ରୀନଗରରେ ଥିବା ବ୍ରିଟିଶ ରେସିଡେଣ୍ଟ ଓ ଅନ୍ୟ ଇଂରେଜ ନାଗରୀକମାନଙ୍କୁ ହତ୍ୟା କରିବେ । ସେମାନେ ବ୍ୟାପକ ଅଗ୍ନିକାଣ୍ଡ ଲୁଟତରାଜ ନରସଂହାର ଓ ନାରୀ ଧର୍ଷଣ କରିବେ । ଏହାର ପ୍ରତିକ୍ରିୟା ସ୍ୱରୂପ ସମଗ୍ର ଭାରତବର୍ଷରେ ସାମ୍ପ୍ରଦାୟିକ ଦଙ୍ଗା ସୃଷ୍ଟି ହେବ । ଶେଷରେ ୨୭ ଅକ୍ଟୋବର ୧୯୪୭ ଦିନ ଶ୍ରୀନଗରକୁ ସୈନ୍ୟବୁହା ଆରମ୍ଭ ହେଲା । ଏଥିପାଇଁ କୌଣସି ପ୍ରାକ ଯୋଜନା ପ୍ରସ୍ତୁତ କରିବାକୁ ସମୟ ନଥିଲା । ପ୍ରତିରକ୍ଷା ବିଭାଗର ମୁଖ୍ୟ ଦପ୍ତରର ବ୍ରିଟିଶ ଓ ଭାରତୀୟ ଅଫିସରମାନେ ୨୬ ଅକ୍ଟୋବରଠାରୁ ଦିନରାତି ଅବିଶ୍ରାନ୍ତ ଭାବରେ ଏହି କାମରେ ଲାଗିଲେ । ଭାରତୀୟ ସୈନ୍ୟବାହିନୀ ଓ ଷ୍ଟାଫ ଅଫିସର ଉଡାଜାହଜ ଯୋଗେ ଶ୍ରୀନଗରରେ ପହଞ୍ଚିଲେ । କାଶ୍ମୀର ରାଜ୍ୟ ସେନାବାହିନୀଙ୍କୁ ସେମାନେ ସୁରକ୍ଷା ଓ ଦମ୍ଭ ଦେଲେ । ୨୭ ତାରିଖ ସକାଳେ ଶତାଧିକ ବେସାମରିକ ଉଡାଜାହଜ ଓ ବ୍ରିଟିଶ ଉପଜାହାଜ ବାହିନୀର ଜାହାଜରେ ଭାରତୀୟ ସୈନ୍ୟ ଯୁଦ୍ଧ ସରଞ୍ଜାମ ସୈନ୍ୟମାନଙ୍କର ଆବଶ୍ୟକତା ଖାଦ୍ୟ ଓ ଅନ୍ୟ ସାମଗ୍ରୀ ଶ୍ରୀନଗରରେ ପହଞ୍ଚିଲା ।

ବଡଲାଟ ଲର୍ଡ ମାଉଣ୍ଟବେଟେନ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଦକ୍ଷିଣ ପୂର୍ବ ଏସିଆ ସେନାନୀର ମିତ୍ରଶକ୍ତିର ସର୍ବୋଚ୍ଚ ସେନାଧକ୍ଷ ଥିଲେ । ସେ ମଧ୍ୟ କହିଲେ ଯେ ତାଙ୍କର

ବିପୁଳ ସୈନ୍ୟ ପରିଚାଳନାର ଅଭିଜ୍ଞତାରେ ସେ ଏହି ପ୍ରକାର ଉଡାଜାହାଜ ଦ୍ୱାରା ପରିବହନ କେବେ ଶୁଣି ନଥିଲେ । ଶତ୍ରୁସୈନ୍ୟଙ୍କର ସଂଖ୍ୟା, ଅସ୍ତ୍ରଶସ୍ତ୍ର ପରିବହନ ସମ୍ବନ୍ଧରେ ଗୁପ୍ତ ତଥ୍ୟର ଅଭାବ ଥିଲା । ମାତ୍ର ଆଶା କରାଯାଉଥିଲା ପାର୍ବତୀୟ ଜନଜାତିମାନେ ଅସଂଗଠିତ ଥିବେ । କିନ୍ତୁ ଦେଖାଗଲା ସେମାନେ ହାଲୁକା ଓ ମଧ୍ୟମ ଧରଣର ମେସିନ ଗନ ଗୋଳାବାରୁଦ ବ୍ୟବହାର କରୁଥିଲେ । ସେମାନଙ୍କର ସେନାପତି ଆଧୁନିକ ଯୁଦ୍ଧ କୌଶଳ ଓ କ୍ଷେତ୍ର ପରିଚାଳନାରେ ଦକ୍ଷ ଥିଲେ । ସେମାନଙ୍କର ଗତି ପ୍ରତିରୋଧ କରି କାଶ୍ମୀର ବାହୀନୀର ଲେଫ୍ଟନାଣ୍ଟ କର୍ଣ୍ଣେଲ ଦେୱାନ ରଣଜିତ ରାୟ ବରମୁଲ୍ଲାଠାରୁ ପଛେଇ ଆସି ଶ୍ରୀନଗରଠାରୁ ୧୭ ମାଇଲ ଦୂରରେ ପାଟଣଠାରେ ନିହତ ହେଲେ । ଅବଶ୍ୟ ପରେ ଅସାଧାରଣ ଧୈର୍ଯ୍ୟ ନିମିତ୍ତ ତାଙ୍କୁ ଓ ଆଉ କେତେକଙ୍କୁ ମହାବୀରଚକ୍ର ଦିଆଯାଇଥିଲା । ତାଙ୍କ ଅସାଧାରଣ ବୀରତ୍ୱ ଓ ସୈନ୍ୟପରିଚାଳନାଦ୍ୱାରା ସେ ଆକ୍ରମଣକାରୀଙ୍କୁ ଶ୍ରୀନଗର ଯିବା ପ୍ରତିରୋଧ କରି ପାରିଥିଲେ ।

ଲାହୋରରେ ଥାଇ ପାକିସ୍ତାନର ବଡଲାଟ ଜିନ୍ନା ଅସ୍ଥିର ହୋଇପଡୁଥାନ୍ତି । ତାଙ୍କ ବ୍ୟକ୍ତିଗତ ସଚିବଙ୍କୁ ସେ ଗୁପ୍ତରେ ଶ୍ରୀନଗର ପଠାଇଥିଲେ । ଭାରତୀୟ ସୈନ୍ୟମାନେ ପହଞ୍ଚି ତାଙ୍କୁ ଗିରଫ କଲେ । ଭାରତୀୟ ସୈନ୍ୟମାନେ ଶ୍ରୀନଗର ଆସିଥିବା ଜାଣି ଜିନ୍ନା ପାକିସ୍ତାନର ଅସ୍ଥାୟୀ ସେନାମୁଖ୍ୟ ଜେନେରାଲ ଗ୍ରାସିଙ୍କୁ ପାକିସ୍ତାନୀ ସୈନ୍ୟ ବାହିନୀ ତୁରନ୍ତ କାଶ୍ମୀର ପଠାଇବାକୁ ନିର୍ଦ୍ଦେଶ ଦେଲେ । ଗ୍ରାସି ସର୍ବୋଚ ସେନାଧକ୍ଷଙ୍କ ବିନା ଅନୁମତିରେ ଏହା କରିବାକୁ ଅସମ୍ମତ ହେଲେ । ୨୮ ତାରିଖରେ ଫିଲ୍ଡମାର୍ଶାଲ ଆଚିନଲେକ ଲାହୋର ଆସିଲେ । ସେ ଜିନ୍ନାଙ୍କୁ ବୁଝାଇଦେଲେ ମିଶ୍ରଣଚୁକ୍ତି ଫଳରେ କାଶ୍ମୀର ବର୍ତ୍ତମାନ ଭାରତରେ ଏକ ଅଂଶ । ପାକିସ୍ତାନ ସୈନ୍ୟ ଭାରତ ଆକ୍ରମଣ କଲେ ଦୁଇ ଉପନିବେଶ ମଧ୍ୟରେ ସଂଘର୍ଷ ଦୃଷ୍ଟିରୁ ସେ ପାକିସ୍ତାନ ସୈନବାହିନୀରୁ ସମସ୍ତ ବ୍ରିଟିଶ ସୈନ୍ୟ ଅପସରଣ କରିନେବେ । ଜିନ୍ନା ଏହା ଜାଣି ନିଜ ଆଦେଶ ଖାରଜ କଲେ । ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ସେ ଲାହୋର ଆସି କାଶ୍ମୀର ସମସ୍ୟା ସମାଧାନ ନିମିତ୍ତ ନିମନ୍ତ୍ରଣ କଲେ ।

ସର୍ଦ୍ଦାର ପଟେଲ ତାଙ୍କ ଯାତ୍ରାର ବିରୋଧୀ ଥିଲେ । ମହାତ୍ମାଗାନ୍ଧିଙ୍କ ସହିତ ପରାମର୍ଶ ପରେ ଲର୍ଡ ମାଉଣ୍ଟବେଟେନ ଲାହୋର ଯିବା ନିଷ୍ପତ୍ତି ନିଆଗଲା । ଏହି ସମୟରେ ପାକିସ୍ତାନ ପ୍ରଧାନମନ୍ତ୍ରୀ ଭାରତ ହିଂସା ଓ ପ୍ରତାରଣାରେ କାଶ୍ମୀରର ମିଶ୍ରଣ କରାଇଥିବାରୁ ଏହା ଗ୍ରହଣଯୋଗ୍ୟ ନୁହେଁ ବୋଲି ବିବୃତ୍ତି ଦେଲେ । ଏହି ମନୋବୃତ୍ତି ସମାଧାନର ପ୍ରତିକୂଳ ମନୋବୃତ୍ତି ଥିଲା । ଏହା ମଧ୍ୟରେ ମହାରାଜାଙ୍କ ନିମନ୍ତ୍ରଣ ପାଇ

ଶେଖ ଅବଦୁଲା ରାଜ୍ୟରେ ଲୋକପ୍ରତିନିଧି ଶାସନର ମୁଖ୍ୟ ଭାବରେ କାର୍ଯ୍ୟଭାର ଗ୍ରହଣ କଲେ । ଶ୍ରୀନଗରରେ ଭାରତୀୟ ସୈନ୍ୟସଂଖ୍ୟା ମଧ୍ୟ ବୃଦ୍ଧି ପାଇଲା । ସ୍ଥଳ ଓ ଆକାଶ ପଥରେ ୩ ଗୋଟି ବାଟେଲିଅନ ପହଞ୍ଚିଗଲେ । ବରମୁଲ୍ଲା ମୁକ୍ତ କରାଗଲା । ମେର୍ଜର ଜେନେରାଲ ଥିମାୟା ଓ ମେଜର ଜେନେରାଲ ଆତ୍ମାସିଂହ ଦୁଇଗୋଟି କମାଣ୍ଡର ମୁଖ୍ୟ ଥାଇ ଆକ୍ରମଣକାରୀଙ୍କ କବଳରୁ ଜବରଦଖଲ ରାଜ୍ୟ ଉଦ୍ଧାରକଲେ । ଥିମାୟା ଲେହ ଓ ଲଦାଖ ଉପତ୍ୟକା ଓ ଆତ୍ମା ସିଂହ ପୁଞ୍ଛ ଅଞ୍ଚଳକୁ ବୀରତ୍ୱର ସହିତ ମୁକ୍ତ କରି ପାରିଲେ ଗିଲଗିଟ ଏକ ସୀମାନ୍ତ ଘାଟି ଥିଲା । ଏହାକୁ ଇଂରେଜମାନେ ଆଗରୁ ମହାରାଜାଙ୍କୁ ଛାଡ଼ି ଦେଇଥିଲେ । ଗଭର୍ଣ୍ଣର ଗିଲଗିଟ ସ୍କାଉଟ ବ୍ୟତୀତ ଅଧା ମୁସଲମାନ ଓ ଅଧା ଶିଖ ସଂଖ୍ୟା ଥାଇ ଜାମୁ କାଶ୍ମୀର ପଦାତିକ ବାହିନୀ ଏଠାରେ ରହିଥିଲା  ସେମାନେ ସମସ୍ତେ ବିଦ୍ରୋହ ଘୋଷଣା କଲେ । ମହାରାଜାଙ୍କ ନିଯୁକ୍ତ ଗଭର୍ଣ୍ଣରଙ୍କୁ ବନ୍ଦୀ କଲେ । ପାକିସ୍ଥାନର ପତାକା ସେଠାରେ ୧ ୯ ୪ ୭ ନଭେମ୍ବରରେ ଗିଲଗିଟ ସ୍କାଉଟର ବ୍ରିଟିଶ ଅଧକ୍ଷ ଉତ୍ତୋଳନ କଲେ । ଏହା କାଶ୍ମୀରରୁ ବାଦ ପଡିଗଲା ।

ଲର୍ଡ ମାଉଣ୍ଟବେଟେନ ଓ ତାଙ୍କର ସହକାରୀ ଲର୍ଡ ଇସମେ ଲାହୋର ଗଲେ । ମାଉଣ୍ଟବେଟେନଙ୍କ ଗଣଭୋଟ ନେବା ପ୍ରସ୍ତାବକୁ ଭାରତୀୟମାନେ କାଶ୍ମୀରରେ ଥିବାଯାଏ ଏହା ନିରପେକ୍ଷ ହେବ ନାହିଁ ବୋଲି ଜିନ୍ନା ଦାବିକଲେ । ମାଉଣ୍ଟବେଟେନ ସଂଯୁକ୍ତ ରାଷ୍ଟ୍ର ଆନୁକୂଲ୍ୟରେ ଏହା କରାଇବାକୁ ଦେବା ପ୍ରସ୍ତାବ ଜିନ୍ନା ଗ୍ରହଣ କଲେ ନାହିଁ । ଦୁଇ ଉପନିବେଶର ବଡଲାଟ ଜିନ୍ନା ଓ ମାଉଣ୍ଟବେଟେନଙ୍କ ଦାୟିତ୍ୱରେ ଏହା କରିବାକୁ ଜିନ୍ନାଙ୍କର ପ୍ରସ୍ତାବ ମଧ୍ୟ ମାଉଣ୍ଟବେଟେନ ରକ୍ଷା କରି ପାରିଲେ ନାହିଁ । କାରଣ ବଡଲାଟ ଥିବା ବ୍ୟତୀତ ଜିନ୍ନା ପାକିସ୍ଥାନ ମୁସଲିମ ଲିଗ୍‌ର ସଭାପତି ଥିଲେ ଓ ଏହା ତାଙ୍କୁ ନିରପେକ୍ଷ କରି ନଥିଲା । ଦୁଇ ରାଜ୍ୟ ମଧ୍ୟରେ ବହୁ ଆଲୋଚନା ନିଷ୍ଫଳ ହେଲା । ଜନଜାତି ଆକ୍ରମଣ ସମୟରେ ପାକିସ୍ଥାନ ରେଡ଼ିଓ ସେମାନେ ଦଖଲ କରୁଥିବା ଅଞ୍ଚଳରେ ଆଜାଦ କାଶ୍ମୀର ସରକାର ଗଠିତ ହୋଇଥିବା ଘୋଷଣା କରିଥିଲା । ପାକିସ୍ଥାନ ଜବରଦଖଲ ଅଞ୍ଚଳ ଏହିମାନେ ଶାସନ କରୁଥିଲେ । ନାନା ବାଦ ବିବାଦ ପରେ ଶେଷରେ ୩୧ ଡିସେମ୍ବର ୧ ୯ ୪ ୭ ରେ ଭାରତ ମିଳିତ ଜାତିସଂଘର ନିରାପତା ପରିଷଦ ଆଗରେ ଅଭିଯୋଗ ଦାଖଲ କରି ସମାଧାନ ଲୋଡିଲା । ଭାରତର ସେନାଧକ୍ଷ ଥିଲେ ସାର ରୟବୁଚର ଓ ପାକିସ୍ଥାନର ସାର ଡଗଲାସ ଗ୍ରାସି । ୧ ୯ ୪ ୯ ଜାନୁଆରୀ ପହିଲାରେ ସେମାନେ ଦୁଇ ରାଜ୍ୟର ସୈନ୍ୟମାନଙ୍କ ମଧ୍ୟରେ ଅସ୍ତ୍ରବିରତି ଚୁକ୍ତିନାମା ଘୋଷଣା କଲେ । ପାକିସ୍ଥାନର

ଜେନେରାଲ ଆକବର ଖାଁ ନାମରେ ଜଣେ ସେନାପତି ହିଂସ୍ର ସଂଗଠିତ ଜନଜାତିମାନଙ୍କର ଆକ୍ରମଣ ପରିଚାଳନା କରୁଥିଲେ । ଶେଷରେ ତାଙ୍କୁ ପାକିସ୍ଥାନୀ ସୈନ୍ୟ ବାହିନୀର କର୍ମନିଯୁକ୍ତ ବୋଲି ଠାବ କରାଗଲା । ତାଙ୍କ ପରେ ମଧ୍ୟ ପାକିସ୍ଥାନୀ ବାହିନୀର ସେନାପତି ଓ ଭଙ୍ଗା ଯାଇଥିବା ଆଜାଦ ହିନ୍ଦ ଫଉଜର ପୂର୍ବତନ ଅଫିସରମାନେ ଏହି ଆକ୍ରମଣର ନେତୃତ୍ୱ ନେଉଥିଲେ । ଦୀର୍ଘଦିନ ପରେ ମିଳିତ ଜାତିସଂଘ କୌଣସି ସମାଧାନ ବାହାର କରିପାରି ନାହିଁ । ହିଂସ୍ର ଜନଜାତିମାନେ ସ୍ୱତଃ ଏହି ଆକ୍ରମଣ କରିଥିବା ଯୁକ୍ତି ଏହା ମଧ୍ୟରେ ପାରିପାର୍ଶ୍ୱିକ ପ୍ରମାଣରୁ ମିଥ୍ୟା ଓ ଏହା ସଂପୂର୍ଣ୍ଣ ପାକିସ୍ଥାନ ପ୍ରଣୋଦିତ ବୋଲି ସାବ୍ୟସ୍ତ ହୋଇପାରିଛି ।

ମହାରାଜା ସାର ହରିସିଂହ ନିଜ ରାଜ୍ୟର ଅବିସମ୍ବାଦୀ ଜନନାୟକ ପ୍ରଧାନମନ୍ତ୍ରୀ ଶେଖ ଅବଦୁଲା ଓ ତାଙ୍କ ମନ୍ତ୍ରୀମଣ୍ଡଳ ସହିତ ସହଯୋଗ କରି କାର୍ଯ୍ୟ କରି ପାରିଲେ ନାହିଁ । ରାଜ୍ୟର ଜନମତକୁ ସମ୍ମାନ ଦେଇ ସେ ପଦତ୍ୟାଗ କଲେ । ତାଙ୍କ ପୁତ୍ର ଯୁବରାଜ କରଣ ସିଂହ ୧୯୫୦ ମସିହାରେ ଶାସନକାର୍ଯ୍ୟ ପାଇଁ ରିଜେଣ୍ଟ ହେଲେ । ବଂଶଗତ ରାଜପଣ ଶେଷହେଲା । ୧୭ ଅକ୍ଟୋବର ୧୯୫୨ରେ ଯୁବରାଜ କରଣ ସିଂହ ସଦର-ଇ-ରିଆସତ ଭାବରେ ଶପଥ ନେଲେ । ମହାରାଜା ସାର ହରିସିଂହଙ୍କର ୧୯୬୧ ମସିହା ୨୬ ଅପ୍ରେଲରେ ମୃତ୍ୟୁ ହେଲା ଏକ ସଂଘର୍ଷମୟ ଘଟଣାବହୁଳ ଯୁଗର ଅବସାନ ହେଲା । ଯୁବରାଜ କରଣ ସିଂହଙ୍କୁ ଭାରତ ସରକାର ମହାରାଜା ଭାବରେ ସ୍ୱୀକୃତି ଦେଲେ ମଧ୍ୟ ସେ ଏହି ପଦବୀ ବ୍ୟବହାର କଲେ ନାହିଁ । କାଶ୍ମୀର ରାଜ୍ୟର ନିର୍ବାଚିତ ସମ୍ବିଧାନ ସଭା ସେମାନଙ୍କର ସମ୍ବିଧାନ ତିଆରି କଲେ । ୧୭ ଡିସେମ୍ବର ୧୯୫୬ରେ ଆଂଶିକ ଓ ୧୯୫୭ ଜାନୁଆରୀ ୨୬ ତାରିଖରେ ଏହା ସଂପୂର୍ଣ୍ଣ ଭାବରେ କାଶ୍ମୀର ରାଜ୍ୟରେ ଲାଗୁ ହେଲା । ରାଜ୍ୟରେ ସାବାଳକ ଭୋଟରେ ନିର୍ବାଚିତ ବିଧାନ ସଭା ଓ ବିଧାନ ପରିଷଦର ବ୍ୟବସ୍ଥା ରହିଲା । ରାଜ୍ୟ ଆଂଶିକ ପାକିସ୍ଥାନ ମାଡି ବସିଥିଲେ ମଧ୍ୟ ବର୍ତ୍ତମାନ ଚଉଦ ଗୋଟି ଜିଲ୍ଲା ରାଜ୍ୟରେ ଅଛି । ଜାମ୍ମୁ କାଶ୍ମୀରରେ ପ୍ରତ୍ୟେକ ଛଅଛଅ ଗୋଟି ଓ ଲଡାଖରେ ଦୁଇଗୋଟି ।



# କିଛି ମଜାଦାର ଚରିତ୍ର ଓ ଘଟଣା
## (ରେସିଡ଼େଣ୍ଟଙ୍କ କଲମରୁ)

### ଗୋଆଲିଅର ସିନ୍ଧିଆଙ୍କ ହାସ୍ୟକୌତୁକ :

ଗୋଆଲିୟର ମହାରାଜା ଥିଲେ ସାର ଜିଓ୍ଵାଜି ରାଓ ସିନ୍ଧିଆ । ମାତ୍ର ୯ବର୍ଷ ବୟସରେ ୧୯୨୫ ମସିହାରେ ସେ ନିଜ ପିତାଙ୍କୁ ହରାଇଥିଲେ। ୧୯୩୬ ମସିହାରେ ସେ ରାଜଗାଦି ପାଇଲେ। ସର୍ବୋଚ୍ଚ ୨୧ ତୋପ ସଲାମି ଭାରତରେ ପାଞ୍ଚ ଗୋଟି ମହାରାଜାଙ୍କ ମଧ୍ୟରୁ ଗୋଆଲିୟର ଜଣେ। ତାଙ୍କର ସମ୍ପୂର୍ଣ୍ଣ ଉପାଧି ସହିତ ନାମ ଥିଲା ଲେଫ୍ଟନାଣ୍ଟ ଜେନେରାଲ ମୁଖତାର ଉଲ ମୁଲ୍କ ଆଜିମଉଲ ଇକତିଦାର-ରଫି-ଉସମାନ, ଓ୍ଵାଲା ସିଖୋ, ମୋହତା-ସମ-ଇ ଦୌରାନ, ଉମଦାଟ-ଉଲ-ଉମରା, ମହାରାଜା-ରାଜାଧିରାଜ, ଅଲିଝା ହି-ସାମ-ଉସ-ସଲତାନାଟ, ସାର ଜର୍ଜ ଜିଓ୍ଵାଜି ସିନ୍ଧିଆ ବାହାଦୁର, ଶ୍ରୀନାଥ, ମନସୁର-ଇ-ଜମାନ, ଫିଦଓ୍ଵି-ଇ-ହଜରତ-ଇ-ମାଲିକ-ଇ-ମୁଆଝାମ-ଇ-ରପିଉଦ-ଦରଜାତ-ଇ-ଇଂଲିଶ ସ୍ଥାନ।

ନିଜ ରାଜ୍ୟରେ ସେ କାର୍ପାସ, ଚମଡ଼ା ମୃଣ୍ମୟ ଓ ଇଞ୍ଜିନିୟରିଂ ଶିଳ୍ପ ପ୍ରତିଷ୍ଠା କରିଥିଲେ । ତାଙ୍କର ଏକ ଜାହାଜ କମ୍ପାନୀ ମଧ୍ୟ ଥିଲା। ଏସବୁ ସତ୍ତ୍ୱେ ସେ ଜଣେ ସାଧାରଣ ଭାରତୀୟଙ୍କ ଭଳି ବେଶପୋଷାକ ପିନ୍ଧୁଥିଲେ। ଖଣ୍ଡେ ଧୋତି ଓ କାମିଜ ପିନ୍ଧି ସେ ରାଜ୍ୟର ବିଭିନ୍ନ ସ୍ଥାନ ବୁଲି ଦେଖୁଥିଲେ। ପ୍ରଜାମାନଙ୍କ ସମସ୍ୟା ବୁଝୁଥିଲେ ଯେପରି ମନ୍ତ୍ରୀମାନେ ତାଙ୍କୁ ଭୁଲ ପରାମର୍ଶ ଦେଇପାରିବେ ନାହିଁ। ଥରେ ସେ ବମ୍ବେରୁ ନିଜ ରାଜ୍ୟକୁ ନିଜ ଡବାରେ ଏଭଳି ସାଧାରଣ ପୋଷାକ ପିନ୍ଧି ଫେରୁଥାଆନ୍ତି। ଜଣେ ସୈନ୍ୟ ବିଭାଗର ନିମ୍ନ ସ୍ତରର ଅଫିସର ଡବା ଭିତରେ ପଶିଲେ। ସେ ଅଳ୍ପଦିନ ହେଲା ଭାରତକୁ ଆସିଥାଆନ୍ତି। ଲୋକାଚାର ଜାଣି ନଥା'ନ୍ତି ଓ ନିଜେ ଖୁବ ବାହାପିଆ ଥିଲେ। ଡବାରେ ବସିଥିବା ଏକମାତ୍ର ଯାତ୍ରୀ ଭାରତୀୟଙ୍କୁ ସେ ଡବା ଖାଲି କରି ଚାଲି ଯିବାକୁ କହିଲେ। ମହାରାଜା ତାଙ୍କ ନିର୍ଦ୍ଦେଶ ମୁଣ୍ଡପାତି ମାନି ନେଇ ଡବା ଖାଲି କଲେ। ପରବର୍ତ୍ତୀ ଷ୍ଟେସନରେ

ଗାଡ଼ି ଅଟକିଲା। ଯାତ୍ରୀମାନଙ୍କ ଭୋଜନ ନିମିତ୍ତ ଗାଡ଼ି ରହିଲା। ମହାରାଜା ରେଲ ଭୋଜନାଳୟରେ ଥାଇ ତାଙ୍କର ଜଣେ ଅଙ୍ଗରକ୍ଷୀ ଏଡ଼ିସିଙ୍କୁ ଏହି ସାହେବଙ୍କ ପାଖକୁ ତାଙ୍କ ସହିତ ଭୋଜନ ନିମିତ୍ତ ନିମନ୍ତ୍ରଣ ପଠାଇଲେ। ସେ ମହାରାଜାଙ୍କର ସମ୍ପୂର୍ଣ୍ଣ ନାମ ଓ ଉପାଧି ମାନ ଜଣାଇ ତାଙ୍କୁ ଭୋଜନ ନିମନ୍ତ୍ରଣ ଦେଲେ। ଏଡ଼େ ବଡ଼ ଜଣେ ଲୋକର ନିମନ୍ତ୍ରଣ ତାଙ୍କ ପକ୍ଷରେ ଗୌରବର ବିଷୟ ଥିଲା। ତେଣୁ ବାହାପିଆ ସାହେବ ଜଣକ ଖୁବ୍ ଖୁସିରେ ରେଲୱେ ରେଷ୍ଟୁରାଣ୍ଟରେ ପହଞ୍ଚିଲେ। ସେଠାରେ ତବାରୁ ତଡିଦେଇଥିବା ଭାରତୀୟ ଜଣକ ତାଙ୍କର ଅତିଥି ସତ୍‌କାରକ ମହାରାଜା ସିନ୍ଧିଆ ବୋଲି ଜାଣିଲାପରେ ତାଙ୍କ ପାଟି ଖୋଲିଲା ନାହିଁ। ଜୀବନରେ ସେ ଏକ ବଡ଼ ଶିକ୍ଷା ପାଇଲେ। ଭାରତରେ ଥିବା ପର୍ଯ୍ୟନ୍ତ ସେ ମହାରାଜାଙ୍କର ଅନୁଗତ ବନ୍ଧୁ ଭାବରେ ରହିଲେ।

ମହାରାଜା ନିଜ ନଅରରେ ଅତିଥି ଚର୍ଚ୍ଚା କରନ୍ତି। ଅତିଥିମାନଙ୍କ ପାଇଁ ଟେବୁଲ ଉପରେ ଗୋଟିଏ ଖେଳନା ଟ୍ରେନ ଥାଏ। ଭୋଜନ ପର୍ବର ଶେଷ ଆଡ଼କୁ ଏହି ଟ୍ରେନ ଠିପି ମୁଦା ମଦ ବୋତଲ ଧରି ଅତିଥିମାନଙ୍କ ଆଗରେ ଚାଲିଯାଏ। ସେମାନେ ଗୋଟିଏ ବୋତଲ ଉଠାଇଲେ ଅନ୍ୟ ଗୋଟିଏ ବୋତଲ ରଖାଯିବା ପର୍ଯ୍ୟନ୍ତ ଏହା ଅଟକି ରହେ। ଏହି ଟ୍ରେନରେ (ଆକସିଲେଟର) ବେଗ ବୃଦ୍ଧିକାରୀ ଯନ୍ତ୍ର ମହାରାଜାଙ୍କ ହାତରେ ଥାଏ। ଯଦି ଜଣେ ଅତିଥିଙ୍କୁ ସେ ଅତିମାତ୍ରାରେ ପାନୀୟ ଲାଳସୀ ଦେଖନ୍ତି ତାଙ୍କ ଆଗରେ ଟ୍ରେନ ପହଞ୍ଚିଲେ ସେ ହାତ ବଢ଼େଇବା ବେଳକୁ ଏହାକୁ ଦ୍ରୁତ ଗତିରେ ଆଗକୁ ନେଇ ଯାଆନ୍ତି। ତାଙ୍କୁ ଠିପି ମୁଦା ବୋତଲ ମିଳେନାହିଁ। ଟ୍ରେନ ପୁଣି ତାଙ୍କ ପାଖକୁ ଫେରି ଆସେ। ଅନ୍ୟାନ୍ୟ ଅତିଥିମାନେ ଏହି କୌତୁକର ମଜା ଉପଭୋଗ କରନ୍ତି।

ସମୟ ସମୟରେ ଅନ୍ୟମାନଙ୍କୁ ମଜା ଦେଖିବାକୁ ସୁଯୋଗ ଦେବାକୁ ଯାଇ ମହାରାଜା ନିଷ୍ଠୁର ହୋଇଯାଆନ୍ତି। ଭାଇସରୟଙ୍କର ଜଣେ ଅଙ୍ଗରକ୍ଷୀ ଥିଲେ ଯାହାକୁ ସେ ଭଲ ପାଉନଥିଲେ । ସେ ଅତି ଉତ୍ତମ ଭାବରେ ପୋଷାକ ପତ୍ର ପିନ୍ଧୁଥିଲେ। ଦାମିକା ପୋଷାକ ମଧ୍ୟ। ଥରେ ମହାରାଜା ଭାଇସରୟ ଭବନରେ ଗୋଟିଏ ବିଶେଷ କୋଠରୀ ନେଇ ସେଠାରେ ରହିବାର ବ୍ୟବସ୍ଥା କଲେ। ସେଠାରୁ ବାରଣ୍ଡାରୁ ସମଗ୍ର ଭାଇସରୟ ଭବନର ଦୃଶ୍ୟ ରମଣୀୟ ଥିଲା। ବାରଣ୍ଡାରେ ସେ ଗୋଟିଏ ବେଞ୍ଚ ପକାଇଲେ। ତାହା ସେହିଦିନ ସକାଳେ ରଙ୍ଗ କରାଯାଇଥାଏ। ଗୋଟିଏ ନୂଆସୁଟ ପିନ୍ଧି ଭାଇସରୟଙ୍କ ଏଡ଼ିସି ପହଞ୍ଚିଲେ। ମହାରାଜା ତାଙ୍କୁ ସେଠାରୁ ଭାଇସରୟ ଭବନର ଦୃଶ୍ୟ କିପରି ସୁନ୍ଦର ତାହା ବେଞ୍ଚରେ

ବସି ଦେଖିବାକୁ ଅନୁରୋଧ କଲେ। ମହାରାଜଙ୍କ କଥା ରକ୍ଷା କରି ସେ ବସି ପରେ ନିଜେ ଉପହାସର ଶିକାର ବୋଲି ଜାଣି ପାରିଲେ।

ଆଉ ଜଣେ ଚତୁର ମହାରାଜା ଥାଆନ୍ତି । ରେସିଡ଼େଣ୍ଟ ଜାଣିବେ ନାହିଁ, ମାତ୍ର ସେ ଭାଇସରୟଙ୍କୁ ସାକ୍ଷାତ କରିବେ ଏଥିପାଇଁ ସେ ବଡ଼ ଲାଳାୟିତ ଥିଲେ। ଥରେ ତାଙ୍କ ରାଜ୍ୟ ଦେଇ ମହାମାନ୍ୟ ବଡ଼ଲାଟ ଟ୍ରେନରେ ଯାଉଥିବାବେଳେ ସେ ତାଙ୍କୁ ରାଜ୍ୟର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଅଟକି ତାଙ୍କ ଆତିଥେୟତା ଗ୍ରହଣ କରିବାକୁ ଟେଲିଗ୍ରାମ ଯୋଗେ ଅନୁରୋଧ କଲେ। ଏଥିପାଇଁ ଜାଣିଶୁଣି ଅଳ୍ପ ସମୟ ରଖାଯାଇଥିଲା ଯେପରି ରେସିଡେଣ୍ଟଙ୍କୁ ଜଣାଇ ହେବ ନାହିଁ । ଭାଇସରୟ ନିମନ୍ତ୍ରଣ ଗ୍ରହଣ କଲେ। ସେ ରେଲଷ୍ଟେସନରେ ସମ୍ବର୍ଦ୍ଧନାର ବ୍ୟବସ୍ଥା କରାଗଲା। ଗୋଟିଏ ବଡ଼ ତମ୍ବୁ ସଜାଯାଇ ସେଠାରେ 'ରେସିଡ଼େଣ୍ଟ' ବୋଲି ଲେଖାଯାଇଥିଲା। ଭାଇସରୟ ଷ୍ଟେସନରେ ଟ୍ରେନରୁ ଓହ୍ଲାଇ ଭୋଜନସ୍ଥଳୀକୁ ଗଲେ। ତମ୍ବୁ ଦେଖି ରେସିଡ଼େଣ୍ଟଙ୍କ ବିଷୟ ପଚାରିବାରୁ ମହାରାଜା, ସେ ହଠାତ ଅସୁସ୍ଥ ହୋଇ ଆସିପାରିନାହାନ୍ତି ବୋଲି ଜଣାଇଲେ। ଅଭ୍ୟର୍ଥନା ପରେ ବିଶେଷ ଟ୍ରେନ ଚାଲିଗଲା। ସେ ଏକୁଟିଆ ଭାଇସରୟଙ୍କୁ ସାକ୍ଷାତ କଲେ। ରେସିଡ଼େଣ୍ଟ ଏହି ସାକ୍ଷାତ ଅବଗତ ହୋଇ ପ୍ରକୃତରେ ନିଜେ ଅସୁସ୍ଥ ହୋଇ ପଡ଼ିଲେ।

ରାଜପୁତନାରେ ଜଣେ ରାଜା ଥିଲେ। ସୂର୍ଯ୍ୟବଂଶୀ କ୍ଷତ୍ରିୟ ବୋଲି ସେ ଗର୍ବିତ ଥିଲେ। ବପୁକନ୍ତ ଥିବାରୁ ତାଙ୍କୁ ନିଜକୁ ସଜାଇବାକୁ ରତ୍ନ ଆଦି ପିନ୍ଧିବା ଆବଶ୍ୟକ ପଡୁନଥିଲା। ରେସିଡ଼େଣ୍ଟଙ୍କ ତରଫରୁ ଥରେ ତାଙ୍କ ସଚିବ ତାଙ୍କ ରାଜ୍ୟକୁ ଗଲେ। ସଚିବ ନିଜର ସବୁ ମେଡ଼ାଲ ଓ ପୁରସ୍କାର ମାନ ପିନ୍ଧି ଗାଡ଼ିରେ ଚଢ଼ି ମହାରାଜାଙ୍କ ପ୍ରାସାଦରେ ତାଙ୍କୁ ସାକ୍ଷାତ କଲେ। ତାଙ୍କୁ ଗୋଟିଏ ଆଠକୋଣିଆ କକ୍ଷରେ ସମ୍ବର୍ଦ୍ଧନା ଦିଆଗଲା। ଏହି କକ୍ଷରେ ଅନେକ ଗୁଡ଼ିଏ ତୋରଣ ଥିଲା ମାତ୍ର ଦୁଇଗୋଟି ଚଉକି ପଡିଥିଲା । ଗୋଟିକରେ ମହାରାଜା ନିଜେ ବସିଥିଲେ। ତାଙ୍କର ମନ୍ତ୍ରୀ ଓ ଦରବାରୀମାନେ ସମସ୍ତେ ଚଟାଣରେ କକ୍ଷ ମଧ୍ୟରେ ବସିଥିଲେ। ରେସିଡ଼େଣ୍ଟଙ୍କ ସଚିବ, ମହାରାଜାଙ୍କୁ ସମ୍ମାନ ଜଣାଇବାକୁ ତାଙ୍କ ପାଖକୁ ଗଲେ। ନିର୍ଦ୍ଦିଷ୍ଟ ଚୌକିରେ ବସିଲେ। ମହାରାଜା ଦରବାରୀମାନଙ୍କୁ ଚାଲିଯିବାକୁ ନିର୍ଦ୍ଦେଶ ଦେଲେ। ସେମାନେ ସମ୍ମାନ ଜଣାଇ କେତେ ହାତ ଯାଇ ତୋରଣ ପାଖରେ ଅପେକ୍ଷା କଲେ। ଯେଉଁଠାରୁ ସେମାନେ ଦେଖାଯିବେ ନାହିଁ। ମାତ୍ର ସେମାନଙ୍କର ସ୍ୱର ଶୁଣାଯିବ। ସଚିବ ରେସିଡ଼େଣ୍ଟଙ୍କ ଶୁଭେଚ୍ଛା ମହରାଜାଙ୍କୁ ଜଣାଇଲେ। ଏହା ଗୃହୀତ ହେଲା । କିଛି ସମୟ ନୀରବ ରହି ମହାରାଜା ଦରବାରୀମାନଙ୍କୁ ଫେରିଆସିବାକୁ

ହୁକୁମକଲେ । ସେମାନେ ଫେରିଆସି ପୁଣି ଚଟାଣରେ ବସିଲେ । ମହାରାଜା ସେହି ପୁରାତନ ରାଜପୁତ ରାଜବଂଶର ଯେଉଁମାନେ ମୋଗଲ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରି ନଥିଲେ ଓ ସିପାହୀ ବିଦ୍ରୋହ ସମୟରେ ବିଦେଶୀମାନଙ୍କୁ ଦୁର୍ଗର ଏକ ହ୍ରଦରେ ଅବସ୍ଥା ଶାନ୍ତ ହେବା ଯାଏ ନିରାପଦରେ ରଖିଥିଲେ।

ଜଣେ ମହରାଜା ଥିଲେ । ବିନା ପ୍ରସ୍ତୁତିରେ ଭୋଜନ ଶେଷରେ ସେ ହିନ୍ଦୀ ସଂସ୍କୃତ ବା ଇଂରାଜୀରେ ତାଙ୍କ ଚିତ୍ତାକର୍ଷକ ବକ୍ତବ୍ୟ ଦେଇ ଅତିଥିମାନଙ୍କୁ ଆପ୍ୟାୟିତ କରୁଥିଲେ। ଆଉ ଜଣେ ରାଜା ଥିଲେ। ସେ ଚିଠିପତ୍ରର ଉତ୍ତର ଠିଆଠିଆ ବୁଲିବୁଲି ଘର ମଧ୍ୟରେ ସୁନ୍ଦର ଇଂରାଜୀରେ ଡାକି ଦେଉଥିଲେ। ଏହାକୁ ଦ୍ୱିତୀୟବାର ଦେଖୁ ନଥିଲେ ଓ ଏଥିରେ କୌଣସି ପ୍ରକାର ତ୍ରୁଟି ବି ଦେଖାଯାଉ ନଥିଲା।

ପଞ୍ଜାବର ଗୋଟିଏ ରାଜ୍ୟର ମହାରାଜାଙ୍କର ଘରୋଇ ସଚିବ ରେସିଡ଼େଣ୍ଟଙ୍କୁ ରାଜାଙ୍କର ବ୍ୟକ୍ତିଗତ ସମସ୍ୟାର ସମାଧାନ ନିମିତ୍ତ ପରାମର୍ଶ ମାଗିଲେ। ରେସିଡ଼େଣ୍ଟଙ୍କ ସଚିବ ଥିଲେ ୱେକପିଲ୍ଡ। ଦାୟିତ୍ୱ ତାଙ୍କୁ ଦିଆଗଲା। ଏହି ରାଜାଙ୍କର ବ୍ୟକ୍ତିଗତ ଚରିତ୍ର ନିର୍ମଳ ନଥିଲା। ତାଙ୍କ ବ୍ୟକ୍ତିଗତ ସଚିବଙ୍କର ଅଭିଯୋଗ ଜଣେ ଆଙ୍ଗଲୋ ଇଣ୍ଡିଆନ ତାଙ୍କ ସ୍ତ୍ରୀ ଜଣେ ୟୁରୋପୀୟ । ତାଙ୍କ ସ୍ୱାମୀ ରାଜାଙ୍କ ସହିତ ଅବୈଧ ସମ୍ପର୍କର ଅଭିଯୋଗ ଆଣୁଅଛନ୍ତି। ରାଜାଙ୍କୁ ଭୟ ଦେଖାଇ ଅର୍ଥ ଆଦାୟ କରିବାକୁ ବସୁଛନ୍ତି । ସଚିବ ବିଷୟ ଅନୁଧ୍ୟାନ କରିବା ସମୟରେ ସେହି ଆଙ୍ଗଲୋ ଇଣ୍ଡିଆନ ସ୍ୱାମୀ ତାଙ୍କୁ ସାକ୍ଷାତ କଲେ। ତାଙ୍କ ମର୍ଯ୍ୟାଦା ହାନି ହୋଇଛି ଓ ଏହାର ତୁରନ୍ତ ସମାଧାନ ନ କଲେ ସେ ଉତ୍ତରଭାରତର ସବୁ ଖବରକାଗଜରେ ଏହି ରାଜାଙ୍କର ବ୍ୟଭିଚାର ଚିତ୍ର ପ୍ରଦାନ କରିବେ ବୋଲି ଧମକାଇଲେ। ସାଧାରଣତଃ ରାଜାମାନେ ସେମାନଙ୍କର ବ୍ୟଭିଚାର ରେସିଡ଼େଣ୍ଟଙ୍କ ଠାରୁ ଲୁଚାଇ ରଖନ୍ତି କାରଣ ଏହା ଗୁରୁତର ହୋଇ ସେମାନଙ୍କୁ ପଦଚ୍ୟୁତ ହେବାକୁ ପଡ଼ିପାରେ। ଅତୀତରେ ଇନ୍ଦୋରର ମହାରାଜା ଟୁକୋଜି ରାଓ ବମ୍ବେର ଏକ ପ୍ରସିଦ୍ଧ ନୃତ୍ୟ ତାରକା ମମତାଜ ବେଗମଙ୍କ ସହିତ ଅବୈଧ ଅନୈତିକ ସମ୍ପର୍କ ରଖିଥିବା ହେତୁ ପ୍ରଜାମାନଙ୍କର ମତାମତକୁ ସମ୍ମାନ ଦେଖାଇ ତାଙ୍କୁ ଗାଦିଚ୍ୟୁତ କରାଯାଇଥିଲା। ଏହାପରେ ସେ ଭାରତ ଛାଡ଼ି ଫ୍ରାନ୍ସରେ ରହୁଥିଲେ । ମାତ୍ର ଏହି ରାଜା ନିଜର ଆରୋପିତ ବ୍ୟଭିଚାର ରେସିଡ଼େଣ୍ଟଙ୍କୁ ଜଣାଇବା ଦେଖି ୱେକଫିଲ୍ଡ ସତ୍ୟତା ନିର୍ଣ୍ଣୟ ନିମିତ୍ତ କୌତୂହଳୀ ହେଲେ। ଅଭିଯୋଗକାରୀ ସ୍ୱାମୀଙ୍କୁ ସେ ଜଣାଇଲେ ଏହି ସାମାନ୍ୟ ଅପରାଧ ପାଇ ରାଜାଙ୍କୁ ଜୋରିମାନା ବା ଜେଲ୍‌ଦଣ୍ଡ ଦିଆଯିବନାହିଁ। କାର୍ଯ୍ୟାନୁଷ୍ଠାନ ନିମିତ୍ତ ସତ୍ୟତାର ପ୍ରମାଣ ଆବଶ୍ୟକ ପଡ଼ିବ।

ୱେକଫିଲ୍ଡ କହିଲେ ଖବର କାଗଜମାନଙ୍କରେ ତାଙ୍କ ବ୍ୟଭିଚାର ପ୍ରକାଶ କଲେ ତୁମ୍ଭର ସ୍ତ୍ରୀଙ୍କ ଚରିତ୍ର ମଧ୍ୟ ସନ୍ଦେହାଚ୍ଛନ୍ନ ରହିବ। ତାଙ୍କ ସହିତ କଥାବାର୍ତ୍ତା କରି ୱେକଫିଲ୍ଡ ଦେଖିଲେ ସେ ଆଙ୍ଗଲୋ ଇଣ୍ଡିଆନ ଥାଇ ଜଣେ ୟୁରୋପୀୟ ମହିଳାଙ୍କୁ ସ୍ତ୍ରୀରୂପେ ପାଇ ସମାଜରେ ନିଜ ପ୍ରତିଷ୍ଠା ବଢ଼ାଇବାକୁ ଆଶାୟୀ ଅଛନ୍ତି। ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେବାର ପ୍ରସ୍ତାବ ସ୍ୱାମୀ ଗ୍ରହଣ କଲେ ନାହିଁ। କହିଲେ ସେମାନେ କାଥଲିକ ଓ ତାଙ୍କ ସମାଜରେ ଏହା ପ୍ରଚଳିତ ହୁଏନାହିଁ। ୱେର୍କଫିଲ୍ଡଙ୍କର ହୃଦବୋଧ ହେଲା ସେ ନିଜ ଅର୍ଦ୍ଧାଙ୍ଗିନୀଙ୍କୁ ସାମାଜିକ ପ୍ରତିଷ୍ଠା ନିମିତ୍ତ ଏକ ସମ୍ପତ୍ତି ଭାବରେ ଦେଖୁଛନ୍ତି। ଏହି ଅଭିଯୋଗ ରେସିଡ଼େଣ୍ଟଙ୍କୁ ଜଣାଇବାର ମୂଳରେ ଅର୍ଥ ଆଦାୟ ମତଲବ  ଥାଇପାରେ। ମହାରାଜାଙ୍କ ଘରୋଇ ସଚିବଙ୍କୁ  ସେ ତାଙ୍କ ସହିତ ଆପୋଷ ଫଏସଲାରେ କେତେଟଙ୍କା ଦରବାର ଦେଇପାରିବେ। ଏହା ଆଲୋଚନା କଲେ। ରାଜାଙ୍କ ଆର୍ଥିକ ଅବସ୍ଥା ଭଲ ନୁହେଁ ଓ ସେ ଖୁବ୍ ବେଶି ଦଶ ହଜାର ବା କୋଡ଼ିଏ ହଜାର ଏ ବିଷୟ ଚପାଇ ଦେବାକୁ ଦେଇପାରନ୍ତି। ୱେକଫିଲ୍ଡ ଆଙ୍ଗୋଲ ଇଣ୍ଡିଆନ ସ୍ୱାମୀଙ୍କୁ କିଛି ଅର୍ଥ ବିନିମୟରେ ସମ୍ମାନନୀୟ ସମାଧାନ ପ୍ରସ୍ତାବ ଦେଲେ। ମହାରାଜାଙ୍କୁ ନିଜ ଗର୍ହିତ ଆଚରଣ ନିମିତ୍ତ ଜୋରିମାନା କରାଯିବ ଓ କ୍ଷତିଗ୍ରସ୍ତ  ପକ୍ଷ ଭାବରେ ଏହି ଅର୍ଥ ଆଙ୍ଗଲୋ ଇଣ୍ଡିଆନ ସ୍ୱାମୀଙ୍କୁ ମିଳିବ। ସେ ଟଙ୍କା ନେଇ ଖରିଦ ହେଉନାହାନ୍ତି ଓ ସେ ଖଳନାୟକ ନୁହଁନ୍ତି କହି ଶେଷରେ ଦଶହଜାର ଟଙ୍କା ନେଇ ସବୁ ଅଭିଯୋଗ ପ୍ରତ୍ୟାଖାନ ନିମିତ୍ତ ସମ୍ମତି ଦେଲେ। ସଚିବଙ୍କର ସମାଧାନ ରେସିଡ଼େଣ୍ଟ ଗ୍ରହଣ କଲେ ଓ ଏକ ବ୍ୟଭିଚାର କୁତ୍ସାର ସମାଧାନ ହେଲା।

## ନାଭା ମହାରାଜା କେଶ କର୍ତ୍ତନ ଓ ଦେଶ ରାଜନୀତି

ପଞ୍ଜାବରେ ଚୌଧୁରୀ ଫୁଲ ସିଂହ ନାମରେ ମୋଗଲ ରାଜତ୍ୱରେ ଜଣେ ରାଜସ୍ୱ କର୍ମଚାରୀ ଥିଲେ। ତାଙ୍କ ଉତ୍ତରାଧିକାରୀ ପରବର୍ତ୍ତୀ କାଳରେ ପାତିଆଲା ଝିନ୍ଦ ଓ ନଭା ରାଜ୍ୟର ମହାରାଜା ହେଲେ। ନଭା ରାଜ୍ୟରେ ୧୮୭୧ ଠାରୁ ୧୯୧୧ ମସିହା ପର୍ଯ୍ୟନ୍ତ ଚାଳିଶ ବର୍ଷ ମହାରାଜା ସାର ହୀରାସିଂହ ନରପତି ଥିଲେ। ଏହା ରାଜ୍ୟର ସୁବର୍ଣ୍ଣଯୁଗ ଥିଲା । ସର୍ବବିଧ ଉନ୍ନତିରେ ରାଜ୍ୟ ଆଗେଇଥିଲା। ତାଙ୍କ ପରେ ତାଙ୍କ ପୁତ୍ର ରିପୁଦମନ ସିଂହ ମହାରାଜା ଅତ୍ୟନ୍ତ ଅତ୍ୟାଚାରୀ ହେବାରୁ ପ୍ରଜାମାନଙ୍କ ଅଭିଯୋଗରେ ୧୯୨୩ ମସିହାରେ ତାଙ୍କୁ ରାଜ୍ୟରୁ ବାହର କରାଗଲା। ତାଙ୍କୁ ଡେରାଡୁନରେ ରହିବାକୁ କୁହାଗଲା। ମାତ୍ର ସେଠାରେ ସେ ରାଜ୍ୟ ଶାସନ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବାରୁ ଶେଷରେ ୧୯୨୮ ମସିହାରେ ତାଙ୍କୁ ରାଜଗାଦିରୁ କାଢ଼ି ଦିଆଗଲା। ସେତେବେଳକୁ ତାଙ୍କ ପୁତ୍ର ପ୍ରତାପ

ସିଂହଙ୍କ ବୟସ ମାତ୍ର ଆଠ ବର୍ଷ ଥିଲା । ତେଣୁ ଗୋଟିଏ ରାଜପ୍ରତିନିଧିତ୍ୱ ସଭା ନାବାଳକ ରାଜାଙ୍କ ତରଫରୁ ଶାସନ ଦେଖାରଖା କଲା । ବ୍ରିଟିଶ ସରକାର ୱେକଫିଲ୍ଡଙ୍କୁ ଏହାର ଅଧ୍ୟକ୍ଷ ଭାରେ ୧୯୩୦ ମସିହାରେ ପଠାଇଲେ । ତାଙ୍କ ପୂର୍ବରୁ ସଭାର ଅଧ୍ୟକ୍ଷ ଜ୍ଞାନନାଥ ରାଜ୍ୟର ବିକାଶ ପ୍ରତି ଦୃଷ୍ଟି ଦେଇଥିଲେ । ନାନା ପ୍ରକାର ଉନ୍ନତିମୂଳକ କାର୍ଯ୍ୟ କରି ସେ ରାଜ୍ୟରେ ୫୦ଲକ୍ଷ ଟଙ୍କା ରିଜର୍ଭ ପାଣ୍ଠି ଜମା ରଖିଥିଲେ । ନୂଆ ଅଧ୍ୟକ୍ଷ ରାଜ୍ୟରେ ପ୍ରଜାମାନଙ୍କର ଉନ୍ନତି ପ୍ରତି ଦୃଷ୍ଟି ଦେବା ସହିତ ନାବାଳକ ଯୁବରାଜ ଗାଦି ପାଇବାର ବ୍ୟବସ୍ଥା କରିବାକୁ ଲାଗିଲେ । ୧୯୩୪ ମସିହାରେ ଯୁବରାଜ ପ୍ରତାପ ସିଂହ ତାଙ୍କ ମାଆଙ୍କ ସହିତ ଇଂଲଣ୍ଡ ଯାଇ ସେଠାରେ ବିଦ୍ୟାଶିକ୍ଷା କରୁଥିଲେ । ତାଙ୍କର କୋଡ଼ିଏ ବର୍ଷ ପୂର୍ଣ୍ଣ ହେବା ପାଖେଇ ଆସୁଥିଲା । ତାପରେ ସେ ନିଜ ଶାସନ ଗାଦି ପାଇବାର କଥା । ଇଂଲଣ୍ଡରେ ଥିବା ସମୟରେ ପ୍ରତାପ ସିଂହ ସେଠାରେ ଲେଦର ହେଡ଼ର ବ୍ୟାଡମିଙ୍ଗଲ୍ହାମ କଲେଜର ସ୍କୁଲରେ ପଢ଼ିଲେ । ଏହାପରେ ସେ ସ୍ୟାଣ୍ଡହର୍ଷ୍ଟର ରୟଲ ମିଲିଟାରୀ କଲେଜରେ ଏକ ବର୍ଷ ସାମରିକ ଶିକ୍ଷା ପାଇଥିଲେ । ସାଧାରଣତଃ ସ୍କୁଲ ଛାତ୍ରମାନେ ନିଜକୁ ଅନ୍ୟଛାତ୍ରମାନଙ୍କ ଠାରୁ ବିଭିନ୍ନ ହେବା ଚାହାଁନ୍ତି ନାହିଁ । ପ୍ରତାପସିଂହ ସବୁ ଛାତ୍ରଙ୍କ ପରି ନିଜ କେଶ କାଟିଲେ ଓ ଏହାକୁ ଛୋଟ କରି ରଖିଲେ । ବଡ଼ ହେଲେ ଶିଖ ଧର୍ମ ନିୟମ ଅନୁସାରେ ତାଙ୍କର କ୍ଷୌର ନ ହୋଇ କେଶ ଓ ଦାଢ଼ି ଛାଡ଼ି ଦେବାର କଥା ମାତ୍ର ସେ ତାହା ପାଳନ କଲେନାହିଁ । ଦେଶରେ ଏ ଖବର ପହଞ୍ଚିଲା । ରେସିଡ଼େଣ୍ଟ ତାଙ୍କ ମାତାଙ୍କୁ ନିଜ ପୁତ୍ରକୁ ବୁଝାଇ କେଶ ଓ ଦାଢ଼ି ରଖିବା ସୁନିଶ୍ଚିତ କରିବାକୁ ଚିଠି ଦେଲେ । ମାତ୍ର ରାଜମାତା ଉତ୍ତରରେ ସ୍ୱାସ୍ଥ୍ୟଗତ କାରଣରୁ ତାଙ୍କର ଦାଢ଼ି ଓ ଲମ୍ବ କେଶ ରଖିବା ହାନିକର ବୋଲି ବିଶେଷଜ୍ଞ ଡାକ୍ତରଙ୍କ ସାର୍ଟିଫିକେଟ୍ ସହିତ ଜଣାଇଦେଲେ । ଏହି ଅବସ୍ଥାରେ ୧୯୪୦ ଫେବୃୟାରୀ ମାସରେ ନିଜ ମାଆଙ୍କ ସହିତ ପ୍ରତାପସିଂହ ଦେଶକୁ ଫେରିଲେ । ଯୁଦ୍ଧ ଲାଗିଯାଇଥାଏ । ଜାତୀୟ କଂଗ୍ରେସ ଯୁଦ୍ଧ ବିରୋଧି ଆନ୍ଦୋଳନ ଆରମ୍ଭ କରିଥାଆନ୍ତି କାରଣ ଭାରତକୁ ସ୍ୱାଧିନତା ଦିଆଯିବାକୁ ପ୍ରତିଶ୍ରୁତି ଦିଆଯାଇନଥାଏ । ଏହି ସମୟରେ ଭାରତୀୟ ସୈନ୍ୟ ବାହିନୀର ଶିଖ ଶାଖାରେ ଅସନ୍ତୋଷ ଦେଖାଗଲା । ସେମାନଙ୍କୁ ଯୁଦ୍ଧରେ ହେଲମେଟ୍ ପିନ୍ଧିବାକୁ ବାଧ କରାଯାଉଥିଲା । ଏହା ଏକ ଖଣ୍ଡ ଶିରସ୍ତ୍ରାଣ ମାତ୍ର ଥିବାରୁ ଧର୍ମଗତ ବିରୋଧି ବୋଲି ସେମାନେ ମନେ କରୁଥିଲେ । ସୈନ୍ୟବିଭାଗ ଓ ସାଧାରଣ ଶିଖ ନାଗରିକ ସମସ୍ତେ ବ୍ରିଟିଶ ସରକାର ଜଣେ ଶିଖ ରାଜାଙ୍କୁ କେଶ କର୍ତ୍ତନ କରିବାକୁ ବାଧ କରିଛନ୍ତି ବୋଲି ବିରକ୍ତ ହେଉଥାଆନ୍ତି । ସମଗ୍ର ପଞ୍ଜାବରେ ଶିଖମାନେ ଧମକାଇଲେ

ମହାରାଜା ପ୍ରତାପସିଂହ ଶିଖ ଧର୍ମର ନିୟମମାନ ପାଳନ ନକଲେ ଓ ତାଙ୍କୁ ବ୍ରିଟିଶ ସରକାର ଗାଦିରେ ବସାଇଲେ ସେମାନେ ଆନ୍ଦୋଳନ ଆରମ୍ଭ କରିବେ। ମାତ୍ର ନାଭା ରାଜ୍ୟରେ ପ୍ରଜାମାନେ ଅତ୍ୟନ୍ତ ରାଜଭକ୍ତ ଥିଲେ । ଶିଖ ଓ ଅଣହିନ୍ଦୁ ସମସ୍ତେ ୧୯୪୦ ମାର୍ଚ୍ଚ ମାସରେ ସେ ରାଜ୍ୟ ଗସ୍ତ କରିବା ସମୟରେ ତାଙ୍କୁ ଦେବତା ପରି ମାନ୍ୟତା ଦେଲେ। ଯୁଦ୍ଧ ବିଭାଗରେ କାର୍ଯ୍ୟ କରିବାକୁ ନାଭା ଅକାଳି ପଦାତିକ ବାହିନୀକୁ ନିଯୁକ୍ତ କରାଗଲା। ସେମାନଙ୍କର ସଂଖ୍ୟା ବୃଦ୍ଧି ନିମିତ୍ତ ଉଦ୍ୟମ ହେଲା ମାତ୍ର ଉପଯୁକ୍ତ ସୈନିକ ବା ଅଫିସର ବଛାଯାଇପାରିଲେ ନାହିଁ। ଗ୍ରୀଷ୍ମଋତୁ ଆରମ୍ଭ ହେଲା। ମହାରାଜା ପ୍ରତାପସିଂହ ପ୍ରଶାସନିକ ତାଲିମ ପାଉଥାଆନ୍ତି। ଏଥି ନିମିତ୍ତ ତାଙ୍କୁ କାଶ୍ମୀରର ଶ୍ରୀନଗରକୁ ପଠାଗଲା। ପଞ୍ଜାବ ସରକାର ଜଣେ ଆଇସିଏସ ଅଫିସର ତାଙ୍କର ପ୍ରଶାସନିକ ଶିକ୍ଷା ଦାୟିତ୍ୱରେ ରଖାଯିବାକୁ ପଠାଇଥିଲେ। ରିଜେନ୍ସି କାଉନସିଲର ଅଧ୍ୟକ୍ଷ ୱେକଫିଲ୍ଡ ନିଜ ପରିବାରର ଖରାଦିନ ସିମଲାରେ ନାଭା ଦରବାରର ଦୁର୍ଗ, ଷ୍ଟର୍ଲିଂରେ ଆନନ୍ଦରେ କଟାଇଲେ। ଏହି ସମୟରେ ପଞ୍ଜାବ ସରକାର ନିଜ ଆଇସିଏସ ଅଫିସରଙ୍କୁ ଅତି ଆବଶ୍ୟକ ଥିବାରୁ ଫେରାଇ ନେଇଗଲେ । ଉପଯୁକ୍ତ ଶିକ୍ଷକ ରେସିଡ଼େଣ୍ଟ ଯୋଗାଡ଼ କରିବାକୁ ଅସମର୍ଥ ହେଲେ। ଶେଷରେ ୱେକଫିଲ୍ଡ ନିଜ ଦାୟିତ୍ୱ ସହିତ ଏହା ସମ୍ପାଦନ କରିବାକୁ ରାଜି ହେଲେ। ସେ ମହରାଜାଙ୍କୁ ସେପ୍ଟେମ୍ବର ମାସରେ ଶ୍ରୀନଗର ଯାଇ ସାକ୍ଷାତ କଲେ। 'ଟ୍ୟୁଟର ମିଷ୍ଟର ୱେସ (Wace) ମତେ ମାସେ ଛୁଟି ଦେଇଛନ୍ତି' କହି ସେ ଶିକ୍ଷାରେ ନିଜକୁ ନିଯୁକ୍ତ କଲେନାହିଁ। (Adminstrative Tutor and Guardian H. H. Maharaja of Nabha) କୌଣସି ଅଧିକ ପାରିଶ୍ରମିକ ଗ୍ରହଣ କରିବାକୁ ସେ ମନାକଲେ । ରେସିଡ଼େଣ୍ଟ ଓ ବଡ଼ଲାଟ ଉଭୟ ଉଦ୍ୟମ କରି ମହାରାଜାଙ୍କୁ କେଶ ରଖିବାକୁ ରାଜି କରାଇପାରିନଥାନ୍ତି। ଦେଶରେ ନାଭା ମହାରାଜାଙ୍କର କେଶ ନେଇ ଆନ୍ଦୋଳନ ଦିନକୁ ଦିନ ତୀବ୍ରତର ହେବାକୁ ଲାଗିଲା ତାଙ୍କୁ ରାଜ୍ୟ ନଦେଲେ ନଭା ରାଜ୍ୟରେ ଆନ୍ଦୋଳନ ହେବ। ତାଙ୍କୁ ଶିଖ ନିୟମ ପାଳନ ନକରୁଥିବା ଅବସ୍ଥାରେ ରାଜ୍ୟଦେଲେ ସମଗ୍ର ପଞ୍ଜାବରେ ସୈନ୍ୟ ବିଭାଗ ଓ ଅନ୍ୟତ୍ର ଗୁରୁତର ପ୍ରତିକ୍ରିୟା ଦେଖାଯିବ। ୱେକଫିଲ୍ଡ ମାସେ ଛୁଟି ନେଇ ମହାରଜାଙ୍କ ସହିତ ସମୟ କଟାଇବାରେ ଲାଗିଲେ। ନିଜକୁ ସେମାନେ କାଶ୍ମୀରରେ କଳାଭାଲୁ ଶିକାର, ହ୍ରଦରେ ଟ୍ରାଉଟ ମାଛ ଧରିବା, ହଂସ ଶିକାର କରିବା ଓ ଅନ୍ୟାନ୍ୟ ମନୋରଞ୍ଜନ କାର୍ଯ୍ୟରେ ଲଗାଇଲେ। ମାସ ଶେଷକୁ ସେପ୍ଟେମ୍ବର ୧୯ ତାରିଖ ଦିନ ୱେକଫିଲ୍ଡ ମହରାଜାଙ୍କୁ ସାକ୍ଷାତ କଲେ। ପରଦିନ ତାଙ୍କର ୨୧ବର୍ଷ ପୂର୍ଣ୍ଣ ହେବାର ଥିଲା

ମହାରାଜାଙ୍କୁ ସେ ଘରୋଇ ବିଷୟରେ ପଦେ କହିବାକୁ ଅନୁମତି ମାଗିଲେ । ମହାରାଜା ହୁଏତ କଣ କଥା ହେବେ ତାହା ଅନୁମାନ କରିପାରିଲେ । ସେ ସାଙ୍ଗେ ସାଙ୍ଗେ କିଛି ଉତ୍ତର ଦେଲେନାହିଁ । ଏହା ପରେ ମହାରାଜା ୱେକଫିଲ୍ଡଙ୍କ ହାଉସବୋଟରେ ତାଙ୍କ ସହିତ କଥାବାର୍ତ୍ତା ହେଲେ । ସେଠାରେ ସେମାନଙ୍କର ଆଲୋଚନା ଅନ୍ୟ କେହି ଶୁଣିବାର ସମ୍ଭାବନା ନଥିଲା । ୱେକଫିଲ୍ଡ ତାଙ୍କୁ ନିଜର ଶିଖସୈନ୍ୟ ବାହିନୀର ଓ ଇଂରେଜ ସରକାରଙ୍କ ଯୁଦ୍ଧ ଉଦ୍ୟମର ସଫଳତା ଦୃଷ୍ଟିରୁ ଧର୍ମଗତ ନିଷ୍ପତ୍ତି ନେବାକୁ ଅନୁରୋଧ କଲେ । ମହାରାଜା ଉତ୍ତର ଦେଲେ "ତୁମ କଥା ମୁଁ ରକ୍ଷା କରିପାରନ୍ତି, ମାତ୍ର ମୁଁ ତାହା କରିବି ନାହିଁ ।" ସେ କହିଲେ ଯଦି ବ୍ରିଟିଶ ସରାକରଙ୍କ ଯୁଦ୍ଧ ଉଦ୍ୟମରେ ଏହା ଆବଶ୍ୟକ ପଡ଼େ ତାହାହେଲେ ସେ ନିଜର ରାଜଗାଦିର ଅଧିକାର ସବୁଦିନ ପରିତ୍ୟାଗ କରିବାକୁ ପ୍ରସ୍ତୁତ ଅଛନ୍ତି । ସମୂହ ସ୍ୱାର୍ଥ ପାଇ ନିଜ ଗାଦି ତ୍ୟାଗ ମୂଳରେ ତାଙ୍କର ମନର ଦୃଢ଼ତା ଓ ମନୋବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ଥିଲା । ୱେକଫିଲ୍ଡ କହିଲେ ନାଁ ନାଁ ତାହା କରନାହିଁ । ଆମେ ଏହାର ସମାଧାନ ବାହାର କରିବା । ଯଦି ଆବଶ୍ୟକ ପଡ଼େ ଆମେ ଯାଇ ଭାଇସରୟଙ୍କୁ ସାକ୍ଷାତ କରିବା ଓ ଆମ ଦୃଷ୍ଟିଭଙ୍ଗୀ ବୁଝାଇଦେବା । ଉତ୍ତରରେ ପ୍ରତାପସିଂହ କହିଲେ "ତାହାହେଲେ ତମେ କଣ ମୋର ସପକ୍ଷରେ ଅଛ ?" ତାକୁ ଉତ୍ତର ମିଳିଲା ନିଶ୍ଚୟ ତମକୁ ସାହାଯ୍ୟ କରିବାକୁ ଯାହା କିଛି ଦରକାର ପଡ଼ିବ ସେ ସମସ୍ତ ମୁଁ କରିବାକୁ ତୁମ୍ଭଙ୍କୁ ପ୍ରତିଶ୍ରୁତି ଦେଉଛି ? ଏହା କୁହୁକ ପରି କାର୍ଯ୍ୟ କଲା । ମହାରାଜା ପ୍ରତାପସିଂହ ସାଙ୍ଗେ ସାଙ୍ଗେ କହିଲେ ତାହାହେଲେ ମୁଁ କେଶ ରଖିବି । ୱେକଫିଲ୍ଡ ଏଥିରେ ସ୍ତବ୍ଧ ହୋଇଗଲେ । ସାଙ୍ଗେ ସାଙ୍ଗେ କେଶ ରଖିବାରେ ଅସୁବିଧା ଥିଲା । ଜଣେ ସୈନିକ ଭାବରେ ନିଜକୁ ସବୁବେଳେ ଫିଟ୍‌ଫାଟ (Smart) ଦେଖାଯିବା ସେ ଚାହୁଁଥିଲେ । ରୁଣ୍ଡିଆ କେଶ ଦାଢ଼ି ଧରି ସେ ସର୍ବସାଧାରଣରେ ନିଜକୁ ଦେଖେଇବାକୁ ଚାହୁଁ ନଥିଲେ । ୱେକଫିଲ୍ଡ ତାଙ୍କୁ ରାଜ୍ୟର ଗୋଟିଏ ଅଞ୍ଚଳକୁ ନେଇଗଲେ । ସେଠାରେ କେହି ତାଙ୍କୁ ଚିହ୍ନି ନଥିଲେ । ରାଜ୍ୟ ଭଲ ଭାବରେ ଚିହ୍ନିବାକୁ ମଧ୍ୟ ତାଙ୍କୁ ସୁଯୋଗ ମିଳିଲା । ନଭେମ୍ବର ମାସ ଏହିପରି ଭାବରେ ତାଙ୍କର ଅଜ୍ଞାତବାସରେ କଟିଗଲା । ଫେରିବାବେଳକୁ ତାଙ୍କର କେଶ ଓ ଦାଢ଼ି ବାରି ହେଉଥିଲା । ଏହିପରି ଭାବରେ ନଭା ରାଜ୍ୟ ଓ ସମଗ୍ର ଭାରତବର୍ଷ ଓ ଶିଖ ସୈନ୍ୟ ବାହିନୀର ଏକ ଗୁରୁତର ସମସ୍ୟାର ସମାଧାନ ହୋଇଗଲା । ମହାରାଜା ପ୍ରତାପସିଂହ ବିନା ଆପତ୍ତିରେ ରାଜ୍ୟଭାର ଗ୍ରହଣ କଲାପରେ ୱେକଫିଲ୍ଡ ତାଙ୍କର ଦେୱାନ ହୋଇ ରହିଲେ । ମାତ୍ର ତାଙ୍କ ସ୍ୱାସ୍ଥ୍ୟ ହାନି ହେଲା ସେ ପାଞ୍ଚମାସ ପରେ ନିଜ ଦାୟିତ୍ୱରୁ ଅବ୍ୟାହତି ନେଇ ଭାରତ ସରକାରକୁ ଫେରିଗଲେ ।

## ମହାତ୍ମା ଗାନ୍ଧି ଓ ଲର୍ଡ଼ରିଡ଼ିଂ (୧୯୨୧-୨୬):

ବିଂଶ ଦଶନ୍ଧିରୁ ବିଭିନ୍ନ ବୟସ, ଅଭିଜ୍ଞତା ଓ ରୁଚିର ବଡ଼ଲାଟ ଭାରତବର୍ଷକୁ ଆସୁଥିଲେ। ସେମାନେ ଭାରତରେ ପ୍ରଥମତଃ ହିନ୍ଦୁ ମୁସଲମାନ ସମସ୍ୟା, ଦେଶୀୟ ରାଜାମାନଙ୍କର ରାଷ୍ଟ୍ର ସଂଘରେ ଯୋଗଦାନ ଆଦି ବିଷୟରେ ସମାଧାନ ଉଦ୍ୟମ କରନ୍ତି। ଲର୍ଡ଼ ରିଡ଼ିଂ ଇଂଲଣ୍ଡରେ ମୁଖ୍ୟ ବିଚାରପତି ଓ ପରେ ଖ୍ରୀ. ୧୯୨୧-ରୁ ୧୯୨୬ ପର୍ଯ୍ୟନ୍ତ ଭାଇସରୟ ଥିଲେ। ସେ କଠିନ ପରିଶ୍ରମ କରୁଥିଲେ ମାତ୍ର ଅନ୍ୟମାନଙ୍କର ମନୋଭାବ ପ୍ରତି ତାଙ୍କର ସମ୍ମାନ ନଥିଲା । ବରିଷ୍ଠ ସଚିବମାନଙ୍କୁ ସାକ୍ଷାତକୁ ଡାକି ସେ ଘଣ୍ଟା ଘଣ୍ଟା ଧରି ଅପେକ୍ଷାରତ ରଖୁଥିଲେ। ଜଣେ ଏହାର ପ୍ରତିବାଦ କଲେ । ତାଙ୍କ ପଦୋନ୍ନତି ସମୟରେ ଲର୍ଡ଼ ରିଡ଼ିଂ ବିରୋଧ କଲେ। ବିଭିନ୍ନ ରାଜ୍ୟର ଗଭର୍ଣ୍ଣରମାନଙ୍କୁ ସେ ଖରାଦିନେ ସେମାନଙ୍କ ପରାମର୍ଶ ପାଇଁ ଡକାଉଥିଲେ। ସେ ଯୁଗରେ ଶୀତତାପ ନିୟନ୍ତିତ ଗାଡ଼ି ନଥିଲା। ଗଭର୍ଣ୍ଣରମାନେ ଅତି ଅସୁବିଧା ଭୋଗ କରି ସିମଲାରେ ସାକ୍ଷାତ ପାଇଁ ଆସିଲେ। ଲର୍ଡ଼ ଓ୍ୱେଲିଂଡ଼ନ (ପରବର୍ତ୍ତୀ କାଳରେ ବଡ଼ଲାଟ ହୋଇଥିଲେ) ସେ ସମୟରେ ମାନ୍ଦ୍ରାଜର ଗଭର୍ଣ୍ଣର ଥାଇ ଉଟକାମଣ୍ଡରେ ଖରାଦିନରେ ରହୁଥାଆନ୍ତି। ଡକରା ପାଇ ସାଢ଼େ ପାଞ୍ଚଦିନ ଯାତ୍ରା କରି ସେ ଆସି ସିମଲାରେ ପହଞ୍ଚିଲେ। ନିଜ ଦୁଃଖ ସହକର୍ମୀମାନଙ୍କୁ ଜଣାଇଲେ। କେବଳ ପଞ୍ଜାବ ଗଭର୍ଣ୍ଣରଙ୍କ ବ୍ୟତୀତ (ସେ ଖରାଦିନେ ସିମଲାରେ ଥାଆନ୍ତି) ଅନ୍ୟମାନେ ଏହି ସମାବେଶର ଆବଶ୍ୟକତା ଅନୁଭବ କଲେ ନାହିଁ। ମହାତ୍ମାଗାନ୍ଧିଙ୍କ ସହିତ ଲର୍ଡ଼ ରିଡ଼ିଂ ସାକ୍ଷାତ ଚାହିଁଲେ। ଖଦଡ଼ ଧୋତି କମିଜ ଓ ଗାନ୍ଧି ଟୋପି ପିନ୍ଧି ସେ ତାଙ୍କୁ ସାକ୍ଷାତ କଲେ। ପାକୁଆ ପାଟିରେ ଗାନ୍ଧି ନିଜ ଆନ୍ଦୋଳନ କର୍ମପନ୍ଥା ତାଙ୍କୁ ଜଣାଇଲେ। ଆଉଥରେ ୭ଘଣ୍ଟା ଧରି ଉଭୟଙ୍କ ମଧ୍ୟରେ ବାର୍ତ୍ତାଳାପ ହେଲା। ରିଡ଼ିଂ ତାଙ୍କୁ ପଚାରିଲେ ଯଦି ଭାରତ ସ୍ୱାଧିନ ରାଜ୍ୟ ଭାବରେ ଆଫଗାନିସ୍ଥାନର ଆକ୍ରମଣ ସମ୍ମୁଖୀନ ହୁଏ ତେବେ କଣ କରିବ। ଗାନ୍ଧି ଉତ୍ତର ଦେଲେ ମୁଁ ପ୍ରେମଦ୍ୱାରା ସେମାନଙ୍କର ହୃଦୟ ଜୟ କରିବି। ରିଡ଼ିଂ ନିଜର ଅଭିମତ ପରେ କହିଲେ ଗାନ୍ଧି ଜଣେ ରାଜନୀତିଜ୍ଞ ନୁହଁନ୍ତ ସେ ଜଣେ ଆଦର୍ଶବାଦୀ ବ୍ୟକ୍ତି। ସୋମାନଙ୍କ ମଧ୍ୟରେ ଅନେକବାର ବାର୍ତ୍ତାଳାପ ହେଲା ମାତ୍ର ଦେଶ ସମସ୍ୟା ସମାଧାନରେ ଆଦୌ ଅଗ୍ରଗତି ହୋଇନଥିଲା।

## ଲେଡ଼ି ଲିନଲିଥଗୋଙ୍କ ଗୋମେଦରତ୍ନ ଖରିଦ :

ରାଜାମାନେ ଭାଇସରୟ ଦା ରେସିଡ଼େଣ୍ଟ ସେମାନଙ୍କର ରାଜ୍ୟ ପରିଦର୍ଶନରେ ଗଲେ ସେମାନଙ୍କୁ ଶିକାର ବା ଅନ୍ୟ ଆମୋଦଦାୟକ କାର୍ଯ୍ୟରେ ନିଯୁକ୍ତ ରଖୁଥିଲେ

ଯେପରି ସେମାନେ ରାଜ୍ୟ ମଧ୍ୟରେ ବୁଲି ପ୍ରଜାମାନଙ୍କର ପ୍ରକୃତ ଆର୍ଥିକ ଓ ସାମାଜିକ ଅବସ୍ଥାର ଚିତ୍ର ପାଇପାରିବେ ନାହିଁ। ଲର୍ଡ ଲେଡ଼ି ଲିନିଲିଥଗୋ ଏହିପରି ଥରେ ଜୟପୁର ଯାଇଥିଲେ। ଏହି ଭାଇସରୟ ଭାରତବର୍ଷରେ ୭ବର୍ଷ ୧୯୩୬ ରୁ ୧୯୪୩ ମସିହା ପର୍ଯ୍ୟନ୍ତ ଦୀର୍ଘତମ ରାଜପଣ କରିଥିଲେ। ଲେଡ଼ି ଭାଇସରୟ ରତ୍ନ କିଣିବାରେ ବ୍ୟସ୍ତ ରହିଲେ। ତାଙ୍କର ଅନେକ ଗୁଡ଼ିଏ ବାଇଗଣୀ ରଙ୍ଗର ପଦ୍ମରାଗମଣି Amethyst ଥିଲା ତାହା ସହିତ ସଜେଇ ହେଲା ଭଳି ସେ ନାରଙ୍ଗୀ ରଙ୍ଗର ଏକ ଗୋମେଦ (Zircom) କିଣିବାକୁ ଚାହୁଁଥିଲେ। ବ୍ୟବସାୟୀ ତାଙ୍କୁ ଯେପରି ଠକି ନନିଏ ଏଥିପାଇ ସେ ରେସିଡ଼େଣ୍ଟଙ୍କ ପରାମର୍ଶ ଲୋଡ଼ିଲେ। ରେସିଡ଼େଣ୍ଟ ନିଜର ବିଶ୍ୱସ୍ତ ସୂତ୍ରରୁ ମୂଲ୍ୟ ସାଧାରଣ ଦରଠାରୁ ଦୁଇଗୁଣା ବୋଲି ଜାଣିପାରି, ଏହା ନ କିଣିବାକୁ ପରାମର୍ଶ ଦେଲେ। ସେ ଭାବିଲେ ତାଙ୍କ ପରାମର୍ଶ କାମ କଲା। ମାତ୍ର ଏହାର କିଛିଦିନ ପରେ ସେ ବିକ୍ରେତାଙ୍କୁ ଦେଖିବାକୁ ପାଇଲେ। ତାଙ୍କଠାରୁ ବୁଝିଲେ ଲେଡ଼ି ଭାଇସରୟ ଟ୍ରେନ ଯୋଗେ ଲେଉଟିବାବେଳେ ସେ ତାଙ୍କୁ ରେଲୱେଷ୍ଟେସନରେ ସାକ୍ଷାତ କରି ପୁଣି ସେହି ଗୋମେଦଟି ଦେଖାଇ ପୂର୍ବ ମୂଲ୍ୟ କହିଲେ। ଥରେ ଜଣେ ଭଦ୍ରମହିଳା ନିଜେ ଗୋଟିଏ ରତ୍ନ କିଣିବାକୁ ନିଷ୍ପତ୍ତି ନେଲେ ସେ ବିକ୍ରେତା ଚାହୁଁଥିବା ମୂଲ୍ୟ ନିଶ୍ଚୟ ଦେବେ। ଏହା ପେଷାଗତ ଦୋକାନୀ ଜାଣିଥିଲେ। ଲେଡ଼ି ସେହି ମୂଲ୍ୟ ଦେଇ କିଣିନେଲେ।

**ନୀଳଗାଈ ପ୍ରସଙ୍ଗ:**

ଜୟପୁର ରାଜା ନାବାଳକ ଥିବାରୁ ଜଣେ ବ୍ରିଟିଶ ଦେୱାନ ତାଙ୍କ ତରଫରୁ ଶାସନ ଚଳାଉଥିଲେ। ରାଜ୍ୟ ଅଧିବାସୀ ବେଶୀ ସଂଖ୍ୟାରେ ହିନ୍ଦୁ। ସେମାନଙ୍କ ମଧ୍ୟରେ ଜୈନମାନେ ମଧ୍ୟ ଥିଲେ। ନୀଳଗାଈ ଗୋଟିଏ ହରିଣ ଜାତୀୟ ଜନ୍ତୁ, ମାତ୍ର ଦୁର୍ଭାଗ୍ୟକୁ ଏହା ନାମରେ ଗାଈ ଲାଗିଛି। ହିନ୍ଦୁମାନେ ଗୋମାତାଙ୍କୁ ପୂଜା କରନ୍ତି। ଜୈନମାନେ ମାଂସ ଭକ୍ଷଣ କରନ୍ତି ନାହିଁ। ପୁଣି ସେମାନେ କୌଣସି ଜୀବନ୍ତ ପ୍ରାଣୀର ପ୍ରାଣନାଶ ଧର୍ମ ବିରୋଧି ବୋଲି ମନେ କରନ୍ତି। ରାଜ୍ୟରେ ନୀଳଗାଈ ସଂଖ୍ୟା ବହୁତ ବେଶି ବଢ଼ିଗଲା। ସେମାନେ ଫସଲ ନଷ୍ଟ କଲେ। କୃଷକମାନେ ସେମାନଙ୍କର ଶସ୍ୟରକ୍ଷା ନିମିତ୍ତ ସେମାନଙ୍କର ଶିକାର କଲେ। ରାଜ୍ୟରେ ଏହା ବିରୁଦ୍ଧରେ ଆନ୍ଦୋଳନ ହେଲା। ନୀଳଗାଈ ହତ୍ୟା ଗୋହତ୍ୟା ସାଙ୍ଗେ ସମାନ। ପକ୍ଷାନ୍ତରରେ ଏମାନଙ୍କୁ ଶିକାର କରିବା ଫସଲ ରକ୍ଷା ପାଇ ନିତାନ୍ତ ଆବଶ୍ୟକ ଥିଲା। ଜୈନ ଓ ହିନ୍ଦୁମାନଙ୍କର ଧର୍ମଗତ ଭାବନାକୁ ସମ୍ମାନ ଜଣାଇ ବ୍ରିଟିଶ ଦେୱାନ ରାଜ୍ୟରେ ନୀଳଗାଈ ଶିକାର ଆଇନତଃ ମନା କଲେ । ଜଙ୍ଗଲ ଶିକାର ଆଇନ ଏହି

ଅନୁସାରେ ସଂଶୋଧନ କରାଗଲା । ମାତ୍ର ନୀଳଗାଈକୁ ଗାଁ ଗହଳରେ 'ରୋଝ' ବୋଲି କୁହାଯାଏ । ନୀଳଗାଈ ଓ ରୋଝ ଏକ ଜନ୍ତୁ ଏହା ସମସ୍ତଙ୍କୁ ଜଣାନଥାଏ । ଶିକାର ଆଇନ ଶେଷରେ ଅତି କ୍ଷୁଦ୍ର ଅକ୍ଷରରେ ବିଶେଷ ଦ୍ରଷ୍ଟବ୍ୟରେ ଲେଖାଗଲା । ଏହି ନିୟମ ରୋଝ ପ୍ରତି ପ୍ରଯୁଜ୍ୟ ନୁହେଁ । ଜଣେ ଅଭିଜ୍ଞ ଶାସକଙ୍କର ଏକ ସ୍ପର୍ଶକାତର ସମସ୍ୟାର ସମାଧାନ ଏହିପରି ଥିଲା ।

## ଦୁର୍ନୀତି ଓ ଭ୍ରଷ୍ଟାଚାର :

ଇଷ୍ଟ ଇଣ୍ଡିଆ କମ୍ପାନୀ ଶାସନ ସମୟରେ ଦେଶରେ ଦୁର୍ନୀତି ଭରି ଯାଇଥିଲା । ଶାସନର ସର୍ବୋଚ୍ଚ କର୍ତ୍ତା ଲର୍ଡ଼ କ୍ଲାଇବ ଓ ହେଷ୍ଟିସ ଇଂଲଣ୍ଡକୁ ଫେରିଯିବା ପରେ ସେମାନଙ୍କୁ ଏଥିପାଇଁ ଅଭିଯୋଗର ସମ୍ମୁଖୀନ ହୋଇ ଲାଞ୍ଛିତ ହେବାକୁ ପଡ଼ିଥିଲା । ମହାରାଣୀ ଭିକ୍ଟୋରିଆ ଶାସନ ଗ୍ରହଣ କରି ନିର୍ମଳ ଶାସନର ଉଦ୍ୟମ କଲେ । ଇଂଲଣ୍ଡରେ ଉପରସ୍ତରରେ ଲାଞ୍ଚ ମିଛ ନଥିଲା । ମାତ୍ର ଭାରତରେ କେତେକ ପାରମ୍ପରିକ କାରଣରୁ ଉପର ଅଧିକାରୀଙ୍କୁ ଉପଢ଼ୌକନ ଦେଇ ସନ୍ତୁଷ୍ଟ କରିବା ପ୍ରଥା ପ୍ରଚଳିତ ଥିଲା । କୌଣସି ଅଭିଯୋଗ ଥିଲେ ବା ଭବିଷ୍ୟତରେ ଆସିବାର ଥିଲେ ସେଥିପାଇଁ ରେସିଡ଼େଣ୍ଟମାନଙ୍କୁ ସନ୍ତୁଷ୍ଟ ରଖିବାକୁ ପଡୁଥିଲା । ରାଜଜ୍ୟୋତିଷ ରାଜାଙ୍କର ଦୁଷ୍ଟଗ୍ରହ ଥିବାର ଦେଖିଲେ ତାହାର ପ୍ରଶାସନ ନିମିତ୍ତ ଉପରିସ୍ଥ କର୍ମକର୍ତ୍ତାଙ୍କୁ କରାୟତ୍ତ କରିବା ପରାମର୍ଶ ଦେଉଥିଲେ । ୱେକଫିଲ୍ଡ ପଶ୍ଚିମଭାରତରେ ପଲିଟିକାଲ ଏଜେଣ୍ଟ ଥିଲେ । ଦୁଇଟି ଛୋଟ ରାଜା ୱାଓ ଏବଂ ଥାରଡ଼ ମଧ୍ୟରେ ବିବାଦ ଲାଗିଥାଏ । ବଣୁଆ ଗଧ ଏହି ରାଜ୍ୟରେ ଥିବା ରାନ ଅଫ କଚରେ ଦେଖାଯାଆନ୍ତି । ସସ୍ତ୍ରୀକ ପୋଲିଟିକାଲ ଏଜେଣ୍ଟ ୱାଓରେ ଥିବା ସମୟରେ ତାଙ୍କ ପତ୍ନୀଙ୍କୁ ହୀରା ଓ ମରକତମଣି ଥିବା ଉଜ୍ଜ୍ୱଳ ପ୍ଲାଟିନମ ହାର ଉପହାରସ୍ୱରୂପ ରାଣୀ ପ୍ରଦାନ କଲେ । ତାଙ୍କର ପଡ଼ୋଶୀ ରାଜ୍ୟ ସହିତ ବିବଦାର ନିଷ୍ପତ୍ତି ତାଙ୍କ ସ୍ୱାମୀଙ୍କ ପାଖରେ ଅଛି ଜାଣିଥିବାରୁ ସେ ଏହି ଉପହାର ପ୍ରତ୍ୟାଖାନ କଲେ । ଏମିତି ଅନେକ ଉପହାର ଦିଆନିଆ ହେଉଥିଲା, ଯାହାର ହିସାବ ନଥିଲା । ଦେଶରେ କ୍ଷମତା ହସ୍ତାନ୍ତରର ଅଳ୍ପଦିନ ଆଗରୁ ୧୯୪୩ ମସିହାରେ ମହାତ୍ମାଗାନ୍ଧି ଭାଇସରୟଙ୍କର ସଚିବ ଲର୍ଡ ଇସମେଙ୍କୁ କହିଲେ ଦେଶର ରାଜନୀତିଜ୍ଞ କର୍ମଚାରୀମାନେ ସମସ୍ତେ ଦୁର୍ନୀତିଗ୍ରସ୍ତ । ଏହାର ଅର୍ଥ ହେଲା ସେମାନେ ରାଜାମାନଙ୍କର କରାୟତ୍ତ ଥାଇ ପ୍ରଜାମାନଙ୍କର ସ୍ୱାର୍ଥ ପ୍ରତି ବିରୂପ ଥିଲେ । ଲର୍ଡ଼ ଇସମେ ଏହାର ପ୍ରତିବାଦ କଲେ । ସେ କହିଲେ ଏମିତି ଅନେକ ଅଫିସରଙ୍କୁ ମୁଁ ଭାରତରେ ଜାଣିଥିଲି ଯେଉଁମାନେ ଅବସର ନେଇ ଇଂଲଣ୍ଡରେ ବାସ କରୁଛନ୍ତି । ସେମାନଙ୍କର

ଜୀବନଧରଣମାନ ଦେଖିଲେ କେହି କହିବେ ନାହିଁ ଯେ ସେମାନେ ଅର୍ଜିତ ବେତନ ବ୍ୟତୀତ ଅନ୍ୟ କୌଣସି ସମ୍ପତ୍ତିର ଅଧିକାରୀ ଥିଲେ । ଏହା ସତ୍ତ୍ୱେ ଦେଶରେ ଦୁର୍ନୀତି ଥିବା ଅସ୍ୱୀକାର କରାଯାଇ ପାରିବ ନାହିଁ । ଉଚ୍ଚପଦାଧିକାରୀ ମାନଙ୍କୁ ନାନା ପ୍ରକାରର ଉପଢୌକନ ଶ୍ରଦ୍ଧା ଓ ସମ୍ମାନର ପ୍ରତୀକ ସ୍ୱରୂପ ଦିଆଯାଉଥିଲା । ଏହାର ମୂଲ୍ୟ ବିଭିନ୍ନ ଥିଲା ଓ ତାର କୌଣସି ସୀମା ନଥିଲା । ରାଜ୍ୟମାନଙ୍କରେ ନୈତିକ ବ୍ୟବସ୍ଥାକୁ ମଧ୍ୟ ଏହା ଗ୍ରାସ କରିଥିବା ଜଣେ ରେସିଡେ଼ଣ୍ଟ କହିଛନ୍ତି । ଗୋଟିଏ ରାଜ୍ୟରେ ଜଣେ ବିଚାରପତି ଥିଲେ । ତାଙ୍କ ଅଦାଲତରେ ଦୁଇଟି ମୁଦା ବାକ୍ସ ରହୁଥିଲେ । ଗୋଟିକରେ ବାଦୀ ଓ ଅନ୍ୟଟିରେ ପ୍ରତିବାଦୀ ଲେଖାଯାଇଥିଲା । ନିରପେକ୍ଷ ବିଚାରପତି ମକଦ୍ଦମା ଫଏସଲା କରି ହାରିଯିବା ପକ୍ଷକୁ ତାର ଅର୍ଥ ଫେରାଇ ଦେବା ଓ ଅନ୍ୟ ପକ୍ଷର ଜମା ଅର୍ଥ ବାଜ୍ୟାପ୍ତି ହେବା ଆଦେଶ ଦେଉଥିଲେ । ସ୍ଥାନୀୟ ଓକିଲ ଓ ପକ୍ଷମାନେ ଏହି ବ୍ୟବସ୍ଥାରେ ଅସନ୍ତୁଷ୍ଟ ନଥିଲେ । ବାଜ୍ୟାପ୍ତ ଅର୍ଥ ଏକ ଅଧିକା କୋଟ ଫି ବୋଲି ସେମାନେ ଧରି ନେଉଥିଲେ ।

## ଧୂର୍ତ୍ତପକ୍ଷ ଓ ବିଚାରପତି :

ଆଉ ଜଣେ ବିଚାରପତି ଥିଲେ ତାଙ୍କୁ ଗୋଟିଏ ଚିଠି ମିଳିଲା । ସେ ବିଚାର କରୁଥିବା ଏକ ମକଦ୍ଦମାର ଗୋଟିଏ ପକ୍ଷ ଏହା ପଠାଇଥିଲେ । ସେ ଲେଖିଥିଲେ ତାଙ୍କ ର ନିରପେକ୍ଷତା ଓ ସାଧୁତା ସମ୍ବନ୍ଧରେ ସେ ଅବଗତ ଅଛନ୍ତି । ତାଙ୍କର ସୌଭାଗ୍ୟ ତାଙ୍କର ମକଦ୍ଦମା ଏପରି ଜଣେ ବିଚାରପତିଙ୍କ ପାଖରେ ପଡ଼ିଛି । ତାଙ୍କ ସଚ୍ଚରିତ୍ର ଓ ସ୍ୱଭାବର ସ୍ୱୀକାର ସ୍ୱରୂପ ସେ କିଛି ଅର୍ଥ ଏହା ସହିତ ପଠାଉଅଛନ୍ତି । ବିଚାରପତି ଚିଠି ଉତ୍ତରରେ ତାଙ୍କ ପ୍ରତି ବିଶ୍ୱାସଜ୍ଞାପନ ଓ ପ୍ରଶଂସା ନିମିତ୍ତ ଧନ୍ୟବାଦ ଦେଲେ । ଚିଠି ଲେଖିସାରି ସେ ଲେଖିଲେ ତୁମ ଚିଠିରେ କୌଣସି କରେନ୍ସି ନୋଟ ନଥିଲା । ଏହାପରେ ଧୂର୍ତ୍ତପକ୍ଷମାନେ କରେନ୍ସି ନୋଟର ଅଧାଫାଳ ତାଙ୍କୁ ପଠାଉଥିଲେ ଓ ମକଦ୍ଦମା ସପକ୍ଷରେ ଗଲେ ତାଙ୍କୁ ଅନ୍ୟଫାଳଟି ଦେଉଥିଲେ । ଖ୍ରୀଷ୍ଟମାସ ପର୍ବ ଅବସରରେ ରାଜାମାନେ ରେସିଡେ଼ଣ୍ଟ ଓ ଅନ୍ୟମାନଙ୍କୁ ଉପହାର ଦେଉଥିଲେ । ଖ୍ରୀଷ୍ଟମାସ ଶ୍ରଦ୍ଧା ଓ ପ୍ରେମର ପର୍ବ, ତେଣୁ ଆପତ୍ତିଜନକ ନଥିଲା ।

## ବଡ଼ଦିନରେ ଇନ୍ଦୋର ଦରବାରରେ ଡାଲା

ଇନ୍ଦୋରର ହୋଲକାର ମହାରାଜା ନାବାଳକ ଥିଲେ । ତାଙ୍କ ତରଫରୁ ରାଜାମାତା ଶାସନ ଚଳାଉଥିଲେ । ପରମ୍ପରା ଅନୁସାରେ ରେସିଡେ଼ଣ୍ଟଙ୍କ ପାଖକୁ ଖ୍ରୀଷ୍ଟମାସ ଡ଼ାଲା ପଠାଗଲା । ଏଥିରେ ଦେଶୀ ବିଦେଶୀ ନାନା ପ୍ରକାର ଫଳ ଓ ପରିବା ସଜା ଯାଇଥାଏ ।

ରେସିଡ଼େଣ୍ଟ ନୂଆ ହୋଇ ଆସିଥାଆନ୍ତି । ପୂର୍ବରୁ ସେ ସୀମାନ୍ତ ଅଞ୍ଚଳରେ କାର୍ଯ୍ୟ କରୁଥିଲେ । ପରମ୍ପରା ଅନୁସାରେ ଡ଼ାଲାରୁ ରେସିଡ଼େଣ୍ଟ ଗୋଟିଏ ଦିଓଟି ଫଳ ବା ପରିବା ଉଠାଇ ନିଅନ୍ତି ଯାହା ତାଙ୍କ ବ୍ୟବହାରକୁ ଯାଏ । ଡ଼ାଲାଟିକୁ ସେ ନିଜ କର୍ମଚାରୀଙ୍କୁ ଦେଇ ଦିଅନ୍ତ । ସେମାନେ ସେଥିରେ ଥିବା ଉପହାର ଆପଣା ମଧ୍ୟରେ ବାଣ୍ଟି ନିଅନ୍ତି । ନୂଆ ରେସିଡ଼େଣ୍ଟ କୌତୁହଳବଶତଃ ଡ଼ାଲାଟି ପୁରା ତନ୍ନ ତନ୍ନ କରି ଭିତରେ ଥିବା ଦ୍ରବ୍ୟ ପରୀକ୍ଷା କରି ବସିଲେ ।  ଡ଼ାଲାର ସବାତଳେ ଶହେଗୋଟି ସୁନା ମୋହର ଥିବା ସେ ଦେଖିପାରିଲେ । ଦରବାର ତାଙ୍କୁ ଲାଞ୍ଚଦେଇ ନିନ୍ଦିତ କରିବାକୁ ଚାହୁଁଛି ବୋଲି ସେ କ୍ରୁଦ୍ଧ ହୋଇ ଦରବାରକୁ ଏକ କଡା ଚିଠି ଲେଖିଲେ । ମହାରାଣୀ ଉତ୍ତର ଦେଲେ ସେମାନେ ଗତ ବହୁବର୍ଷର ରାଜ୍ୟ ହିସାବ ଅନୁଧ୍ୟାନ କରିଅଛନ୍ତି । ପ୍ରତିବର୍ଷ ଖ୍ରୀଷ୍ଟମାସ ସମୟରେ ରେସିଡ଼େଣ୍ଟଙ୍କୁ ଏକଶତ ମୋହର ଦିଆଯିବା ଉଲ୍ଲେଖ ଅଛି । ଯଦି ଏହି ସଂଖ୍ୟା ବୃଦ୍ଧି କରାଯିବା ପ୍ରସ୍ତାବ ଉଠେ ଓ ନିର୍ଦ୍ଦିଷ୍ଟ ସଂଖ୍ୟା ଜଣାଇ ଦିଆଯାଏ ତେବେ ଦରବାର ତାହା ଗ୍ରହଣ କରିବାରେ ଆପତ୍ତି କରିବନାହିଁ । ଉତ୍ତର ରେସିଡ଼େଣ୍ଟଙ୍କୁ ସ୍ତବ୍ଧ କଲା । ସେ ଅନୁସନ୍ଧାନ କରି ଜାଣିଲେ ରେସିଡ଼େଣ୍ଟ ଫଳ ଉଠାଇନେବା ପରେ ଡ଼ାଲାକୁ କର୍ମଚାରୀମାନେ ନିର୍ଦ୍ଧାରିତ ହାରରେ ମୋହର ଓ ଅନ୍ୟ ଦ୍ରବ୍ୟ ନିଜ ମଧ୍ୟରେ ବାଣ୍ଟି ନିଅନ୍ତି ।

ଅବଶ୍ୟ ସମସ୍ତ ଭ୍ରଷ୍ଟାଚାର ଅଭିଯୋଗ ମିଥ୍ୟା ନଥିଲା । ରାଜନୀତିଜ୍ଞ କର୍ମଚାରୀମାନେ ଦରବାରରୁ କିଛି କିଛି ସୁବିଧା ଉପଭୋଗ କରୁଥିଲେ । ରେସିଡ଼େଣ୍ଟ ଦରବାର ତାଙ୍କୁ ଦେଇଥିବା ଘରେ ବିନା ଭଡ଼ାରେ ରହୁଥିଲେ । ରାଜଧାନୀଠାରୁ ଦୂରରେ ଭଡ଼ାଘରେ ରହିବା ଦ୍ୱାରା କାର୍ଯ୍ୟ ବ୍ୟାହତ ହୋଇପାରନ୍ତା ଓ ଇଂରେଜ ସରକାର ଅନ୍ୟ ରାଜ୍ୟରେ ବଙ୍ଗଳା ତିଆରି କରି ସମ୍ପତ୍ତି ସୃଷ୍ଟି କରିବାରେ ଆଇନ ଅସୁବିଧା ଥିଲା ।

## ବିବାହରେ ଉପଢ଼ୌକନ

ବିଭାଘର ସମୟରେ ବର ବା କନ୍ୟାଙ୍କୁ ନିମନ୍ତ୍ରିତ ବ୍ୟକ୍ତି ଉପହାର ଦେବା ବିବାଦ ସୃଷ୍ଟି କରୁଥିଲା । ଜଣେ ରାଜନୀତିଜ୍ଞ ଅଫିସରଙ୍କର କନ୍ୟା ପିଲାବେଳେ ଜଣେ ମହାରାଜାଙ୍କ ସନ୍ତାନମାନଙ୍କ ସହିତ ପଢୁଥିଲେ । ସେମାନେ ବାଲ୍ୟବନ୍ଧୁ ଥିଲେ । ଝିଅ ପରେ ଇଂଲଣ୍ଡ ଯାଇ ସେଠାରେ ବିଦ୍ୟାଶିକ୍ଷା କଲେ । ତାଙ୍କର ବିବାହ ଭାରତରେ ଠିକ୍ ହେଲା । ସେ ଭାରତକୁ ଫେରି ଆସିଲେ । ତାଙ୍କ ସହପାଠୀ ଅର୍ଥାତ ସପରିବାର ମହାରାଜାଙ୍କୁ ବିବାହ ନିମନ୍ତ୍ରଣ ପଠାଗଲା । ମହାରାଜା ଉପସ୍ଥିତ ହୋଇ ନିଜ ପଦମର୍ଯ୍ୟାଦାର ଉପଯୁକ୍ତ ଏକ ପ୍ରୀତି ଉପହାର କନ୍ୟାକୁ ପ୍ରଦାନ କଲେ । ମାତ୍ର କନ୍ୟାପିତା ଏହା ପ୍ରତ୍ୟାଖାନ କଲାରୁ ସେ

ଅତିଶୟ କ୍ଷୁବ୍ଧ ହେଲେ। ବିଷୟଟି ବିଭାଗୀୟ ସର୍ବୋଚ୍ଚକର୍ତ୍ତାଙ୍କୁ ନିଷ୍ପତ୍ତି ନିମିତ୍ତ ପଠାଗଲା। ଦୁଇଶହ ଟଙ୍କାରୁ କମ ମୂଲ୍ୟର ଉପହାର କେବଳ ଗ୍ରହଣୀୟ ବୋଲି ଭାରତ ସରକାର ଜଣାଇଲେ। ଅତି ମୂଲ୍ୟବାନ ଉପହାର ଗ୍ରହଣ କଲେ, ତାହା ସରକାରଙ୍କ ତୋଷଖାନାରେ ଜମାଦେବା ବ୍ୟବସ୍ଥା ରହିଲା। ଆଉ ଜଣେ ରାଜନୀତିଜ୍ଞ ଅଫିସରଙ୍କର ଜଣେ ବ୍ରିଟିଶ ଜେନେରାଲଙ୍କ କନ୍ୟା ସହିତ ବିବାହ ହେବାର ଠିକ୍ ହେଲା। ଜେନେରାଲ ଜଣେ ମହାରାଜାଙ୍କୁ ପାରିବାରିକ ସୂତ୍ରରେ ଅନେକ ଦିନରୁ ଜାଣିଥିଲେ। ସେ ମହାରାଜାଙ୍କ ପ୍ରଦତ୍ତ ହୀରା ଓ ରୁବିଯୁକ୍ତ  କର୍ଣ୍ଣ ଦୋଲକ ଉପହାର ଗ୍ରହଣ କରି ଏହାକୁ ମାଲଖାନାକୁ ପଠାଇବାକୁ ବସିଲେ। ମାତ୍ର ଜଣେ ରେସିଡ଼େଣ୍ଟ ତା ପୂର୍ବରୁ ଏହାକୁ ବିଶେଷଜ୍ଞ କମିଟି ପରୀକ୍ଷା କରି ଏହାର ପ୍ରକୃତ ମୂଲ୍ୟ ଜାଣିବାକୁ ଚାହିଁଲେ। ପରୀକ୍ଷାରେ ଏହା ନକଲି ଓ କାଚକୁ ଏପରି ଭାବରେ କଟାଯାଇଛି ଯାହା ହୀରା ଓ ରୁବିର ଭ୍ରମ ସୃଷ୍ଟି କରୁଛି। ପ୍ରକୃତରେ ଏହାର ମୂଲ୍ୟ ୨ଶହ ଟଙ୍କା ମଧ୍ୟରେ ଥିଲା। ମହାରାଜା ଅସଲ ମାଲ ପାଇଁ ଅର୍ଥ ଦେଲେ। ମାତ୍ର ତାଙ୍କ କର୍ମଚାରୀ ୨ଶହ ଟଙ୍କାର ବେଶି ମୂଲ୍ୟର ହେଲେ ଏହା ପ୍ରତ୍ୟାଖାନ ହେବ ଜାଣି ଏହାକୁ ନକଲ କରି ପଠାଇଲେ।

ବହୁତ ସମୟରେ ପାରିପାର୍ଶ୍ୱିକ ପରିବେଶ ସୃଷ୍ଟି କରି ରେସିଡ଼େଣ୍ଟ ବା ତଦୁର୍ଦ୍ଧ୍ୱ କର୍ମଚାରୀ ମାନଙ୍କୁ ଦୁର୍ନୀତିଗ୍ରସ୍ତ ବୋଲି ଚିତ୍ରିତ କରାଯାଇଥାଏ। କୋରଫିଲ୍ଡ ନିଜ ଅଭିଜ୍ଞତା ଲେଖିଛନ୍ତି। ଚାକିରୀ ଆରମ୍ଭରେ ସେ ରେବା ମହାରାଜା ଦେବା ସୁନା ସିଗାରେଟ କେସ ଫେରାଇ ଦେଇଥିଲେ ଓ ଭାଇସରୟ ଲର୍ଡ଼ ୱେଲିଂଡ଼ନ ତାଙ୍କୁ କହିବାରୁ ପରବର୍ତ୍ତୀ ସମୟରେ ସେ ଏହା ଗ୍ରହଣ କରିଥିଲେ। ଏକଥା ଆଗରୁ କୁହାଯାଇଛି। ପଦୋନ୍ନତିରେ ସେ ଶୀର୍ଷ ସ୍ଥାନ ଭାଇସରୟଙ୍କର ପୋଲଟିକାଲ ସେକ୍ରେଟାରୀ ଥିବାବେଳେ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଅନ୍ୟ ଗୋଟିଏ ରାଜ୍ୟର ଦେଓ୍ୱାନ ତାଙ୍କୁ କହିଲେ ଯେ ଏକ ରାଜ୍ୟର ଉତ୍ତରାଧିକାରୀ ନିର୍ଣ୍ଣୟ କରିବା ନିଷ୍ପତ୍ତି ଦେବାକୁ ସେ ତିନିଲକ୍ଷ ଟଙ୍କା ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ଜରିଆରେ ଗ୍ରହଣ କରିଛନ୍ତି। ଘଟଣା ଥିଲା ଦକ୍ଷିଣାତ୍ୟ ରାଜ୍ୟର ଜଣେ ନରପତି ନିଜର ଜଣେ ସନ୍ତାନଙ୍କୁ ତାଙ୍କ ଉତ୍ତରାଧିକାରୀ ଘୋଷଣା କରିବାକୁ ଭାଇସରୟଙ୍କୁ ପ୍ରାର୍ଥନା କରିଥାଆନ୍ତି। ଏହା ବିରୁଦ୍ଧରେ ଅଭିଯୋଗ ନଥିଲେ ମଞ୍ଜୁର ହୋଇଥାଏ। ବମ୍ବେରେ ଜଣେ ନାମଜାଦା ଓକିଲ ଥିଲେ। ସେ ମଧ୍ୟ କିଛିଦିନ ରାଜ୍ୟ ମନ୍ତ୍ରୀମଣ୍ଡଳରେ ଥିଲେ। କେତେକ ରାଜ୍ୟର ପ୍ରଜା ଆନ୍ଦୋଳନ ସହ ସେ ସମ୍ପୃକ୍ତ ଥିଲେ। ସେ ଥରେ ପଲିଟିକାଲ ସେକ୍ରେଟାରୀଙ୍କୁ ଚିଠି ଲେଖିଲେ ଯେ ସେ ଦିଲ୍ଲୀ ଯାଉଛନ୍ତି ଓ ସମ୍ପୃକ୍ତ ରାଜ୍ୟମାନଙ୍କର ପ୍ରଜା ଆନ୍ଦୋଳନ ଓ

ଅନ୍ୟାନ୍ୟ ବିଷୟ ତାଙ୍କ ସହିତ ଆଲୋଚନା କରିବାକୁ ତାଙ୍କ ପାଇ ସମୟ ଧାର୍ଯ୍ୟ କରାଯାଉ। ସମୟ ଠିକ୍ ହେଲା। ଓକିଲ ସାକ୍ଷାତ କଲେ। ସେହି ଦେଶୀୟ ରାଜ୍ୟ ଗୁଡ଼ିକରେ ପ୍ରଜା ଆନ୍ଦୋଳନ ଆଲୋଚନା ହେଲା। ଦରଖାସ୍ତକାରୀ ମହାରାଜା ତାଙ୍କ ରାଜ୍ୟ ଉତ୍ତରାଧିକାରୀ ବା ସେ ରାଜ୍ୟର କୌଣସି ବିଷୟ ଉଠି ନଥିଲା। ମାତ୍ର ଓକିଲ ଜଣକ ମହାରାଜାଙ୍କୁ ପରାମର୍ଶ ଦେଇଥିଲେ ଭାଇସରୟଙ୍କ ପାଖରେ ଦରଖାସ୍ତ ପହଞ୍ଚିଲେ ତାଙ୍କୁ କାର୍ଯ୍ୟାନୁଷ୍ଠାନ କରିବାକୁ ହେବ। ପୋଲିଟିକାଲ ଆଡ଼ଭାଇଜରଙ୍କୁ ଦେବାକୁ ତିନିଲକ୍ଷ ଓ ନିଜ ଫିଜ ବାବଦ ୧ ଲକ୍ଷ ଟଙ୍କା ସେ ମୋଟରେ ୪ଲକ୍ଷ ପାଇବେ। ସାଧାରଣ ଭାବରେ ଉତ୍ତରାଧିକାରୀ ପ୍ରଶ୍ନ ବିଚାର କରାଯାଇ ମହାରାଜାଙ୍କ ପ୍ରାର୍ଥନା ମଞ୍ଜୁର ହେଲା। ତାଙ୍କୁ ଆଦେଶ ମିଳିଲା ପରେ ଓକିଲ ତାଙ୍କର ମୋଟ ୪ଲକ୍ଷ ଟଙ୍କା ମହାରାଜାଙ୍କଠାରୁ ପାଇଲେ।

## ରାଜ୍ୟମାନଙ୍କରେ କ୍ରୀଡ଼ା ଓ ଶିକାର:

କର୍ମକ୍ଳାନ୍ତ ଜୀବନରେ ଅବସର ବିନୋଦନ ନିମିତ୍ତ ରାଜା ମହାରାଜାମାନେ ଭାଇସରୟ ଓ ରେସଡ଼େଣ୍ଟଙ୍କୁ ନିଜ ରାଜ୍ୟକୁ ଶିକାର ଓ କ୍ରୀଡ଼ା ନିମିତ୍ତ ନିମନ୍ତ୍ରଣ କରିଥାଆନ୍ତି। ସାଧାରଣତଃ ଏହି ନିମନ୍ତ୍ରଣ ଗୃହୀତ ହୋଇଥାଏ। ମାତ୍ର ଏଥିପାଇଁ ବହୁତ ପ୍ରସ୍ତୁତି କରାଯାଇଥାଏ । ମୁଖ୍ୟ ଅତିଥିଙ୍କୁ ଅତିଥି ଚର୍ଚ୍ଚା ଓ ପୋଲୋ, ଟେନିସ, କ୍ରିକେଟ, ହକି ଆଦି ନିଜ ରାଜ୍ୟର ବିଶେଷତ୍ୱ ଥିବା ଖେଳରେ ଆପ୍ୟାୟିତ କରାଯାଇଥାଏ। ବିଭିନ୍ନ ରାଜ୍ୟ ଶିକାର ନିମିତ୍ତ ବିଶେଷ ଭାବରେ ବିଖ୍ୟାତ ଥିଲେ। ଜୁନାଗଡ଼ର ଗିର ଜଙ୍ଗଲରେ ସିଂହ କେବଳ ରହୁଥିଲେ। ରେବା ରାଜ୍ୟ ବାଘ ଶିକାର ପାଇ ଖ୍ୟାତି ଅର୍ଜନ କରିଥିଲା। ରେଓ୍ୱାର ରାଜା ଜଣେ ଉଚ୍ଚକୋଟୀର ବାଘ ଶିକାରୀ ଥିଲେ। ବାଘ ଶିକାରକୁ ବାହାରିଲେ ସେ ନିଜ ବନ୍ଧୁକ ଖଣ୍ଡେ କୌତୁହଳପୂର୍ଣ୍ଣ ପୁସ୍ତକ ଓ ଗୋଟିଏ ମାଙ୍କଡ଼ ଧରି ମଞ୍ଚାରେ ବସନ୍ତି। ବାଘକୁ ଘଉଡ଼ାଇବାକୁ ସୈନ୍ୟବଳ ଲାଗିପଡ଼ନ୍ତି। ମହାରାଜା ନିଜ ମଞ୍ଚାରେ ଆରାମରେ ବସି ବହି ପଢ଼ିଥାଆନ୍ତି, ମାଙ୍କଡ଼ ନିକଟରେ ବ୍ୟାଘ୍ର ଦେଖିଲେ ଡିଆଁଡ଼ିଇଁ କରି ସମସ୍ତଙ୍କୁ ସତର୍କ କରି ଦିଏ। ନିଜ ବନ୍ଧୁକ ଧରି ମହାରାଜା ବାଘକୁ ଲକ୍ଷ୍ୟ କରନ୍ତି। ବିଭିନ୍ନ ରାଜ୍ୟରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଅତିଥି ମାନଙ୍କର ଶିକାର ପାଇଁ ମଞ୍ଚା ତିଆରି ସହିତ ଅନ୍ୟ ବ୍ୟବସ୍ଥା କରାଯାଇଥାଏ । ଏହା କେତେ ସମୟ ଓ ଅର୍ଥ ସାପେକ୍ଷ ତାହା ଅତିଥିମାନଙ୍କୁ ଜଣାନଥାଏ। ରାଜ୍ୟ ଜଙ୍ଗଲ ସାଧାରଣତଃ ବିଭିନ୍ନ ଖଣ୍ଡରେ ବିଭକ୍ତ ଥାଏ । ଆଲୱାର ରାଜ୍ୟରେ ସୈନ୍ୟମାନଙ୍କୁ ଲଗାଇ ବାଘ ଏକ ବ୍ଲକରୁ ଅନ୍ୟ ବ୍ଲକକୁ ଘଉଡ଼ାଇ ଦିଆଯାଇ ଶେଷରେ ମଞ୍ଚା ବନ୍ଧା ଯାଇଥିବା ବ୍ଲକରେ ଅତିଥିମାନଙ୍କ ଶିକାର ପାଇ ରଖାଯାଏ। ଜୟପୁର ରାଜ୍ୟରେ

ଦୁଇ ବ୍ଲକ ମଧ୍ୟରେ ବାଲି ପକାଯାଇଥିବା ରାସ୍ତା ଥାଏ। ବାଘ ଚାଲିଲେ ଏହି ବାଲି ଉପରେ ତାର ପାଦଚିହ୍ନ ପଡ଼ିଥାଏ। ଚିହ୍ନ ପରୀକ୍ଷା କରି ଶିକାରୀମାନେ ବ୍ୟାଘ୍ରର ଅବସ୍ଥିତି ଠିକ୍ କରନ୍ତି ଓ ସେହି ଅନୁସାରେ ମଞ୍ଚା ପ୍ରସ୍ତୁତ ହୁଏ। କୋଟା ରାଜ୍ୟରେ ଚମ୍ବଲ ନଦୀ ବହି ଯାଉଛି। ନଦୀର ଅପରପାର୍ଶ୍ୱରେ ଉତ୍ତୁଙ୍ଗ ପାହାଡ଼ ଅଛି। ସ୍ଥାନେ ସ୍ଥାନେ ନଦୀ ଓ ପାହାଡ଼ ମଧ୍ୟରେ ସାମାନ୍ୟ ଜଙ୍ଗଲ ଥାଏ। ପାହାଡ଼ ଉପରେ ଗୋଟିଏ ମଇଁଷି ବାନ୍ଧି ଦିଆଯାଇଥାଏ। ତାକୁ ଦେଖି ପାଖ ଜଙ୍ଗଲରୁ ବାଘ ଖାଇବାକୁ ଆସେ, ମାତ୍ର ତୀଖ ପାହାଡ଼ ଯୋଗୁଁ ଶିକାର ପାଖରେ ପହଞ୍ଚି ପାରେନାହିଁ। ଅତିଥିମାନେ ନଦୀରେ ଡଙ୍ଗାରେ ଥାଇ ବାଘର ଏଦୃଶ୍ୟ ଦେଖି ଶିକାର କରନ୍ତି। ବିକାନୀର ରାଜ୍ୟ ପକ୍ଷୀ ଶିକାର ନିମିତ୍ତ ବିଖ୍ୟାତ ଥିଲା। ଅତିଥିମାନେ ମହାରାଜାଙ୍କର ଗୁଞ୍ଜନ ପାଲେସରେ ରହନ୍ତି। ଏହାକୁ ଲାଗି ଗୋଟିଏ ହ୍ରଦ ଅଛି। ଶିକାରର କିଛିଦିନ ଆଗରୁ ଏହି ପକ୍ଷୀମାନଙ୍କର ଗତିବିଧି ନିରୀକ୍ଷଣ କରି ସେମାନେ ଯେପରି କୌଣସି ଠାରେ ପାଣି ପିଇ ନପାରିବେ ସେମିତି ଜଗାରଖା କରାଯାଇଥାଏ। ହଜାର ହଜାର ସଂଖ୍ୟାରେ ସୂର୍ଯ୍ୟୋଦୟ ସମୟରେ ପକ୍ଷୀମାନେ ଶିକାର ଦିନ ଏହି ହ୍ରଦକୁ ଆସିଲେ ସେମାନଙ୍କୁ ବାଧା ଦିଆଯାଏ ନାହିଁ। ସେମାନଙ୍କୁ ଶିକାର କରାଯାଏ। ଏକାବେଳେକେ ୩୦/୪୦ଜଣ ଶିକାରୀ ଏଥିରେ ଭାଗ ନେଇଥାଆନ୍ତି। ଢୋଲପୁରରେ ମହାରାଜା ଜଣେ ନାମାଜାଦା ଶିକାରୀ ଥିଲେ। ମାତ୍ର ଶିକାରର ଅବସ୍ଥା ଦେଖି ତାଙ୍କ ମନରେ ଭାବାନ୍ତର ଆସିଲା। ସେ ଶିକାର ଛାଡ଼ିଦେଲେ। ନିଜ ଜଙ୍ଗଲକୁ ଅଭୟାରଣ୍ୟ କଲେ। ଜଙ୍ଗଲରେ ଗୋଟିଏ ହ୍ରଦ ଥାଏ।ଏହି ହ୍ରଦରୁ ଅତିଥିମାନଙ୍କୁ ବାଘ ଜଙ୍ଗଲରେ ନିର୍ଭୟରେ ବୁଲିବା ଦେଖାଯାଏ। ହରିଣମାନେ ଅତିଥିମାନଙ୍କ ହାତରୁ ଆସି ନିର୍ଭୟରେ ଖାଦ୍ୟ ଗ୍ରହଣ କରୁଥିଲେ।

ଏହି ଶିକାର ସବୁ ଭାଇସରୟଙ୍କର ଚିତ୍ତ ବିନୋଦନରେ ସହାୟକ ଥିଲା। ମାତ୍ର ଏହାର ରାଜନୈତିକ ଉଦ୍ଦେଶ୍ୟ ଥିଲା ରାଜ୍ୟର ଆଭ୍ୟନ୍ତରୀଣ ଅବସ୍ଥା ଜାଣିବାକୁ ତାଙ୍କୁ ସମୟ ଓ ସୁଯୋଗ ମିଳୁନଥିଲା। ଶିକାର ଓ ଅନ୍ୟ ଉପଚାରରେ ସନ୍ତୁଷ୍ଟ ହୋଇ ଭାଇସରୟ ଲେଉଟି ଗଲେ ରେସିଡ଼େଣ୍ଟଙ୍କ ବିରୂପ ମତର କୌଣସି ମୂଲ୍ୟ ନଥାଏ।



# କୃତଜ୍ଞତା ଜ୍ଞାପନ

- ଡଃ ଗୋବର୍ଦ୍ଧନ ଦୋରା,
  ନୟାପଲ୍ଲୀ, ଭୁବନେଶ୍ୱର
- ଡଃ ଧବଳ ପ୍ରସାଦ ଚୌଧୁରୀ,
  ସହିଦ ନଗର, ଭୁବନେଶ୍ୱର
- ଶ୍ରୀ ଦେବେନ୍ଦ୍ର କୁମାର ମିଶ୍ର,
  ପୂର୍ବତନ ରାଜ୍ୟ ନିର୍ବାଚନ କମିଶନର, ଭୁବନେଶ୍ୱର
- ଶ୍ରୀ ରଞ୍ଜନ କୁମାର ରାଉତରାୟ
  ମୁଖ୍ୟ ଗ୍ରନ୍ଥାଗାରିକ ଗୋପବନ୍ଧୁ ପ୍ରଶାସନିକ ଏକାଡ଼େମୀ,
  ଭୁବନେଶ୍ୱର
- ଶ୍ରୀ କମଳ କୁମାର ସିଂହ
  ଗ୍ରନ୍ଥାଗାରିକ ଆଞ୍ଚଳିକ ଭାଷା ପ୍ରତିଷ୍ଠାନ,
  ଲକ୍ଷ୍ମୀସାଗର, ଭୁବନେଶ୍ୱର
- ବିକ୍ଷିପ୍ତ ଅପଠ୍ୟ ହାତ ଲେଖାକୁ ସଜାଡ଼ି ସରସ ସୁନ୍ଦର ଡ଼ିଟିପି କରି ପୁସ୍ତକ ପ୍ରକାଶନ କରିବାର ଶ୍ରମ ଶ୍ରୀ ଅନନ୍ତ କୁମାର ରଥ ଓ ତାଙ୍କ ସହକର୍ମୀ ଶ୍ରୀମାନ୍ ବିକାଶ ରଞ୍ଜନ ବେହେରା, ପ୍ରକାଶ କୁମାର ସାହୁ ।



# ସହାୟକ ଗ୍ରନ୍ଥ


୧. କୁମ୍ଭାର ଚକ, ଡଃ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

୨. ମୋର ପୂର୍ବ ସ୍ମୃତି କଥା, ଭାରତ ଚନ୍ଦ୍ର ନାୟକ

୩. ଆତ୍ମଚରିତ, ଫକୀର ମୋହନ ସେନାପତି

୪. ଯାହା ଅଙ୍ଗେ ଲିଭାଇଛି, ପଦ୍ମଭୂଷଣ କାଳନ୍ଦୀଚରଣ

୫. ସାଧନା ପଥେ, ଡଃ ହରେକୃଷ୍ଣ ମହତାବ

୬. ରାଧାନାଥ ଜୀବନୀ, ଦୁର୍ଗାଚରଣ ରାୟ (ସମ୍ପାଦିତ)

୭. ଆମେ ଭୁଲିନାହୁଁ, ବ୍ରଜକିଶୋର ଧଳ

୮. ଗୋପାଳଚନ୍ଦ୍ର ପ୍ରହରାଜ, ଗ୍ରନ୍ଥାବଳୀ ୩ୟ ଖଣ୍ଡ

9. Integration of states - V.P Menon

10. An autobiography - K.M. Pannikar

11. The princely India I knew - Sir Conrad Corfield

12. Past Impertative - Edward Wakefield

13. Indomitable Sarder - K.L. Punjabi

14. Partition & Independence- Prof (Dr) M.N. Das

15. Footprints of Eventful days - Basanta Das




# ଭିତରେ ପଢ଼ନ୍ତୁ

- ଆଠଶହ କୁକୁର ପାଳିବା ସଉକୀ-ଜୁନାଗଡ଼ ନବାବ ପ୍ରତି କୁକୁର ପାଇଁ ଜଣେ ଚାକର ଓ ମାସକୁ ଷୋଳହଜାର ଖର୍ଚ୍ଚ ବଜେଟରେ ରଖିଥିଲେ । ଗୋଟିଏ କୁକୁରୀର ବାହାଘରରେ ଅଢ଼େଇଶ ଅଣ୍ଡିରା କୁକୁର ଟ୍ରେନରେ ବରଯାତ୍ରୀ । ରାଜ୍ୟରେ ତିନିଦିନ ଛୁଟି । ପଚାଶ ହଜାର ଲୋକଙ୍କୁ ଭୋଜନ ।

- ନିଜାମ ପୃଥିବୀର ଧନକୁବେର । କୃଷିଜମିରୁ ଚବିଶ କୋଟି, ଭଡା ୫୦ ଲକ୍ଷ ବର୍ଷକୁ ଆୟ, ହୀରାମୋତିର ମୂଲ୍ୟ ଦୁଇଶହ କୋଟି । ପୃଥିବୀର ୨ୟ ହୀରା ଜାକବକୁ ସେ ପେପର ଓ୍ୱେଟ ବ୍ୟବହାର କରୁଥିଲେ । କୃପଣରେ ମଧ୍ୟ ସେ ଶ୍ରେଷ୍ଠ । ପିନ୍ଧା ମଇଳା ପାଇଜାମାରୁ ମୋଜା ଦିଶେ । ଗୋଟିଏ ଟୋପି ତିରିଶ ବର୍ଷ ବ୍ୟବହାର କରୁଥିଲେ । ସବୁଠାରୁ ଶସ୍ତା ସିଗାରେଟ ଖାଉଥିଲେ ।

- ପାଟିଆଲା ମହାରାଜା ଭୂପିନ୍ଦର ସିଂହଙ୍କର ୧୪୦୦ ଖଣ୍ଡର ଏକ ଡିନରସେଟ ଖ୍ରୀ.୨୦୧୩ର ୧୮ କୋଟି ଟଙ୍କାରେ ନିଲାମ ହେଲା । ବଳରେ ସେ ୧୦ ଜଣଙ୍କ ସମାନ, ଖାଦ୍ୟରେ ମଧ୍ୟ ସେମିତି । ନିଜ ଖାଇବା ସାରି ଗୋଟାଏ ପୁରା ଖାସି କେବେ ଖାଉଥିଲେ । ମରିବା ପୂର୍ବରୁ ପଥ୍ୟ କରିଥିଲେ ଦଶଟି ଅଣ୍ଡାର ଆମଲେଟ । କଟଟି କଙ୍କଣ ଅନେକ ପ୍ରକାର ରତ୍ନରେ ଉଜ୍ଜଳ । ଉଆସରେ ଦଶଜଣ ପାଟରାଣୀ ବାଦ ପୃଥିବୀର ଭିନ୍ନ ଦେଶରୁ ତିନିଶହ ରକ୍ଷିତା ଥିଲେ । ଅଶିଜଣ ସନ୍ତାନ ଥିଲେ ।

- ଟିଗିରିଆ ରାଜା ନଅରରୁ ମନ୍ଦିର ଗଲାବେଳେ ମକଦମା ଫଏସଲା କରିଦିଅନ୍ତି । ଜୋରିମାନା ୨୫ ପଇସାରୁ ୧ ଟଙ୍କା ୨୫ ପଇସା ଯାଏ ହୁଏ । ସେ ପଇସା ଦେଉଳ ପାଣ୍ଠିକୁ ଯାଏ । ବିନା କୋଟଫି, କାଗଜପତ୍ର ଓକିଲରେ ମକଦମା ତୁଟେ ।

- ଖାଲି ହାତରେ ରାଜଦର୍ଶନ ଅବିଧି । ଶ୍ରୀ ରାମନବମୀରେ ଜଣେ ଦୁଃସ୍ଥ ବ୍ରାହ୍ମଣ ଗୋଟିଏ ଲମ୍ବା ହଳଦିଆ ଆମ୍ବପତ୍ର ଦେଇ ଦର୍ଶନ କଲେ ବଡ଼ମ୍ବା ରାଜାଙ୍କୁ । ସେ ଏହାର ତାରିଫ କଲେ ସେ ତାଙ୍କୁ ପଚାଶଟଙ୍କା ବିଦାକି ସହିତ ବଡ଼ ଭୋଗଥାଳିଟିଏ ଦେଲେ ।

- ଦଶପଲା ରାଜା ଅବଧାନଙ୍କ ପାଖରେ ଦଶ ପନ୍ଦର ବରଷରେ ନାଁ ଲେଖି ଶିଖିଲେ । କଟକରେ କଲେଜ ଦେଖିଲେ । ପରିଦର୍ଶନ ବହିରେ ପୃଷ୍ଠା ପୃଷ୍ଠା ଧରି ନିଜ ନାଁମ ଲେଖି କରି ଫେରାଇ ଦେଲେ ।

- ଜଣେ ରାଜା ତାଙ୍କ ପ୍ରଧାନ ବିଚାରପତିଙ୍କୁ ରଥ ଡାହୁକ ଗୀତ ଗାଇବାକୁ କହିଲେ । ଆଉ ଜଣେ ତାଙ୍କ ବିଚାରପତିଙ୍କୁ ଭୋଜନ ପରେ ମାଙ୍କଡ଼ ପରି ନାଚିବାକୁ କହିଲେ । ମଣିମାଙ୍କ ଆଦେଶ ସେମାନେ ମାନିଲେ ।

- ରଣପୁରରେ କାନ୍ଦବୋବାଳି ଓ ହୁଳହୁଳି ଜାଗିର ଥିଲା । ମାଘମାସିଆ ରକ୍ତପାଟ ଜାଗିରି ଭୋଗୀ ପୁଷମାସରେ ରାଜାଘରୁ ମଣ୍ଡା ଖାଇ ମଣିଷ ମାରି ରକ୍ତ ନେଇ ମଣିନାଗଙ୍କୁ ଦେଉଥିଲେ ।

*ଏମିତି ଅନେକ ଘଟଣା...*



## ବିଷ୍ଣୁଚରଣ ମହାନ୍ତି

ପି-କାଙ୍ଗାଳିଚରଣ ମହାନ୍ତି
ମାତା-କୋକିଳ ଦେବୀ

ଜନ୍ମ - ଓଢ଼ଣଷଷ୍ଠୀ ୧୯୨୨
ଗ୍ରାମ-କଣିଆ, ପୋ/ଥାନା-ବାଲିକୁଦା
ଜିଲ୍ଲା-ଅବିଭକ୍ତ କଟକ

ଲେଖକଙ୍କର କୃତି ଗୁଡିକ ହେଲା- ରୋମନ୍ଥନ ଏକ ବ୍ୟର୍ଥ ଅତୀତର (୧୯୮୯), (୨୦୦୯), ପାରଳା ପ୍ରତିଭା (୧୯୯୧), A Magistratic Speaks Nothing But the Truth (୨୦୦୦), ପାରଳାର ଗଜପତି (୨୦୦୨), ଉତ୍କଳ ମିଳନର ବିସ୍ମୃତ ନବରତ୍ନ (୨୦୦୭), ସେକାଳ ଓ ତା'ପରେ (୨୦୦୧), ହନୁମାନ ସହସ୍ରନାମର ଟୀକା (୧୯୯୩), ମହାଭାରତର ଷୋଳଟି ଗୀତାର ସାର (୨୦୦୩), ସ୍ମୃତିବାସୀ ପଶ୍ଚିମ ଓଡ଼ିଶାର ୧୮୩ଜଣ କୃତୀ ସନ୍ତାନଙ୍କର ସଂକ୍ଷିପ୍ତ ଜୀବନୀ ପଶ୍ଚିମ ଓଡ଼ିଶା ବିକାଶ ପରିଷଦପ୍ରକାଶିତ (୨୦୦୬), ସ୍ମୃତିରେଖା (୨୦୦୮), ଆମ ପାଠପଢ଼ା ସମୟ (୨୦୧୦), ପାଣ୍ଡବ ଗୀତା (୨୦୧୨) ଏବଂ ତ୍ୟାଗବୀର ବାଞ୍ଛାନିଧି (୨୦୧୨) ।

ଲେଖକ ଶ୍ରୀ ମହାନ୍ତି ତାଙ୍କ ସାରସ୍ୱତ ସାଧନା ପାଇଁ ହୀରାଖଣ୍ଡ ନାଗରିକ ପରିଷଦ ସମ୍ବଲପୁର, ଭାଗବତ ଟୁଙ୍ଗି ପ୍ରଚାର ସମିତି ଭୁବନେଶ୍ୱର, ଅଙ୍କୁର ସାହିତ୍ୟ ସଂସ୍କୃତି ସଂସଦ ବାଲିକୁଦା, ଜଗତସିଂହପୁର, ଓଡ଼ିଶା ସାଂସ୍କୃତିକ ସମାଜ ସମ୍ବଲପୁର ଓ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

***ପଛପଟେ ପଢ଼ନ୍ତୁ...***